ପାଶ୍ଚାତ୍ୟ ସଭ୍ୟତା ସଂସ୍କୃତି

ଶ୍ରୀ ପଠାଣି ପଟ୍ଟନାୟକ

ପ୍ରକାଶକ :
ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦବିହାରୀ
କଟକ-୨

ମୁଦ୍ରାକର :
ଶ୍ରୀ ରବୀନ୍ଦ୍ରନାଥ କର
ଶ୍ରୀ ନୀଳକଣ୍ଠ ପ୍ରେସ
କଟକ-୨
୧୯୭୨

# ସୂଚୀପତ୍ର





## ଉପନ୍ୟାସ

# ବାସ୍ତବତା ଓ ଗଣଚେତନାର ଧାରା

ଉପନ୍ୟାସ ଶବ୍ଦର ଅଭିଧାନଗତ ପ୍ରକୃତି ପ୍ରତ୍ୟୟ ହେଲା ଉପ–ନି+ଅସ୍ । ଏହାର କେତୋଟି ଅର୍ଥ ମଧ୍ୟରୁ "କଳ୍ପିତ କଥା" ଏବଂ "କଥାରମ୍ଭ" ଏହି ଦୁଇଟି ଅର୍ଥ ଏଠାରେ ପ୍ରଣିଧାନଯୋଗ୍ୟ । ହିନ୍ଦୀ ସାହିତ୍ୟ କୋଷରେ (ପ୍ର-ସଂ) ଏହି ଶବ୍ଦର ଆଲୋଚନା ପ୍ରସଙ୍ଗରେ କୁହାଯାଇଛି, ଉପନ୍ୟାସର ବିଶ୍ଳେଷଣାତ୍ମକ ଅର୍ଥ ହୋଇପାରେ ମନୁଷ୍ୟର ନିକଟରେ ରଖିବାର ବସ୍ତୁ । ଅର୍ଥାତ୍ ଏହା ମନୁଷ୍ୟ ଜୀବନର ପ୍ରତିବିମ୍ବ । ମଣିଷ ଜୀବନର ସୁଖ ଦୁଃଖର କାହାଣୀ ସେହି ମଣିଷର କହିବା ଭାଷାରେ ରୂପାୟିତ ହୁଏ । ହିନ୍ଦୀ ସାହିତ୍ୟର କଥାସମ୍ରାଟ ପ୍ରେମଚନ୍ଦ "ଉପନ୍ୟାସ" ଶୀର୍ଷକ ପ୍ରବନ୍ଧରେ ଉପନ୍ୟାସର ସଂଜ୍ଞା ବିଶ୍ଳେଷଣ କରି କହିଛନ୍ତି—"ମୈଁ ଉପନ୍ୟାସକୋ ମାନବ-ଚରିତ୍ରକା ଚିତ୍ର ମାତ୍ର ସମଝ୍‌ତା ହୁଁ । ମାନବ-ଚରିତ୍ର-ପର ପ୍ରକାଶ ଡାଲନା ଔର ଉସ୍‌କେ ରହସ୍ୟୋଁ କୋ ଖୋଲନା ହୀ ଉପନ୍ୟାସକା ମୂଲ ତତ୍ତ୍ୱ ହୈ" । An Introduction to the Study of Literature ପୁସ୍ତକରେ ପାଶ୍ଚାତ୍ୟ ଆଲୋଚକ ଉଇଲିୟମ୍ ହେନେରୀ ହଡ଼ସନ୍ ଉପନ୍ୟାସର ସଂଜ୍ଞା ସମ୍ପର୍କରେ ମତ ପ୍ରଦାନ କରି ନାଟକ ପରି ଉପନ୍ୟାସ ମଧ୍ୟ ଜୀବନ ସହିତ ଅତ୍ୟନ୍ତ ନିବିଡ଼ ଭାବରେ ସମ୍ପୃକ୍ତ (ପୃ୧୬୩) ବୋଲି ମତବ୍ୟକ୍ତ କରିଛନ୍ତି—ତାହା ହେଲା—Like the Drama, the novel is concerned directly with life—with men and women and their relationship with the thoughts and feelings, the passions and motives by which they are governed and impelled, with their joys and sorrows, their struggles, successes, failures. Since then the novelist's theme is life, in one or

several of its innumerable aspects, it is impossible for him not to give, expressly or by implication, some suggestion, at last, if nothing more than a suggestion, of the impression which life makes upon him.

ଆଉ ଜଣେ ବିଖ୍ୟାତ ଆଲୋଚକ Henery James କହନ୍ତି 'A novel is a personal, a direct impression of life.'

ଅଥଚ ପୃଥିବୀବିଖ୍ୟାତ ଇଂରାଜୀ ବିଶ୍ୱକୋଷ ଉପନ୍ୟାସର ଜନ୍ମ-ଜାତକ ମଧ୍ୟଯୁଗୀୟ ରୋମାନ୍ସ ମଧ୍ୟରେ ଲୁକ୍କାୟିତ ଥିଲା ବୋଲି ସ୍ପଷ୍ଟ ମତବ୍ୟକ୍ତ କରିଅଛନ୍ତି—"Romance lays the foundation of modern prose fiction in such a fashion that the mere working out and building of certain features leads to, and in fact involves the whole structure of the modern novel."

(Encyclopaedia Britanica, 14th Edi, vol 19)

ଜୀବନର ସହଜ ପ୍ରବାହ ଉପନ୍ୟାସର ପ୍ରଧାନ ଧର୍ମ। ମାତ୍ର ରୋମାନସ୍ ମଧ୍ୟରେ ନାନା କୌତୂହଳୋଦ୍ଦୀପକ ଘଟଣାବଳୀ, ବୀରତ୍ୱବ୍ୟଞ୍ଜକ କାହାଣୀ ସ୍ଥାନ ଲାଭ କରିଥାଏ।

ଉପନ୍ୟାସ ସମ୍ପର୍କରେ 'Compton's Pictured Encyclopaedia vol. 1956' ମତ ଦିଅନ୍ତି ଯେ, ଗଳ୍ପ କହିବା ଓ ଗଳ୍ପ ଶୁଣିବା ହେଲା ମଣିଷର ଏକ ଆଦିମତମ ପ୍ରବୃତ୍ତି। ଏହି କାହାଣୀ କହିବା ଅଭ୍ୟାସରୁ ପର ଯୁଗରେ କଥକତା ଓ ଭାଟମାନଙ୍କର ଅଭ୍ୟୁଦୟ ହୋଇଥିଲା।

ଏହି ଭାଟ ଓ କଥକମାନେ ସଙ୍ଗୀତ ଜରିଆରେ କାହାଣୀ ପରିବେଷଣ କରୁଥିଲେ। ପଦ୍ୟ ମାଧ୍ୟମରେ ଏହି କାହାଣୀ ଇଟାଲୀ ବାଟେ ଗଦ୍ୟ ରୂପ ଗ୍ରହଣ କରି ଆଧୁନିକ 'ନଭେଲ' ରୂପ ପରିଗ୍ରହଣ କରିଅଛି। ତେଣୁ କୁହାଯାଇଛି-'A verse tale of ordinary life was called

(fabliau) fable. A similar story in prose was called in Italian novella meaning 'new story' from which the English word 'novel' comes' (p. 311)

ଇଟାଲୀରେ Novella ଶବ୍ଦର ଅର୍ଥ ହେଲା ମୋଟାମୋଟି ଭାବରେ 'ସମ୍ବାଦ' । ଏହାର ଅର୍ଥ ଏକ କଳ୍ପନାଧର୍ମୀ କଥା । ମାତ୍ର ସମ୍ବାଦ ଅର୍ଥରେ Novella କୁ ଗ୍ରହଣ କଲେ ତାହା ଅଳ୍ପ ଦିନର ଏବଂ ସତ୍ୟ ହେବା ଆବଶ୍ୟକ । ସମ୍ବାଦ ଅଧିକ ଦିନର ହୋଇଗଲେ ତାହା ସମ୍ବାଦ-ମୂଲ୍ୟ ହରାଇ ଇତିହାସ ହୋଇଯିବ । ସତ୍ୟ ନ ହେଲେ ତାହା ସମ୍ବାଦ ଅଥବା ଇତିହାସ କୌଣସି ଶ୍ରେଣୀରେ ଆସିପାରିବ ନାହିଁ । ତେଣୁ "Novella" ମଧ୍ୟରେ ସାଂପ୍ରତିକ ଘଟଣାବଳୀଠାରୁ ଆରମ୍ଭ କରି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ କାହାଣୀ ମଧ୍ୟ ବୁଝାଗଲା । ମଧ୍ୟଯୁଗୀୟ ସାହିତ୍ୟର ବୋକାସିଓଙ୍କ କାହାଣୀ ଅଥବା ସରଭେଣ୍ଟିସଙ୍କ 'ଡନକୁଇକ୍‌ଜୋଟ୍' ଇଟାଲୀୟ Novellaର ଅନ୍ତର୍ଗତ ହେଲା ।

ବିଖ୍ୟାତ ବଙ୍ଗୀୟ ଆଲୋଚକ ଶ୍ରୀ ଶଚୀନ୍ଦ୍ର ଦାଶ 'ସାହିତ୍ୟ ସନ୍ଦର୍ଶନ' ପୁସ୍ତକରେ (ତୃତୀୟ ସଂସ୍କରଣ ୧୯୧ଖ୍ରୀ) ଉପନ୍ୟାସ ଶବ୍ଦର କୌଣସି ନିର୍ଦ୍ଦିଷ୍ଟ ସଂଜ୍ଞା ନିର୍ଦ୍ଧାରଣ କରି ପାରିନାହାନ୍ତି । ସେ କହିଲେ—ବିଭିନ୍ନ ଦେଶରେ ଏତେ ବିଚିତ୍ର ଭାବରେ ଉପନ୍ୟାସର ପ୍ରକାଶ ହୋଇଅଛି ଯେ, କୌଣସି ନିର୍ଦ୍ଦିଷ୍ଟ ସୀମାରେଖା ମଧ୍ୟରେ ଉପନ୍ୟାସକୁ ବୁଝାଇ ହେବନାହିଁ । "ଏହାର ବାହନ ଗଦ୍ୟ ଓ ପଦ୍ୟ ଉଭୟଇ ହଇତେ ପାରେ, ଯଦିଓ ଗଦ୍ୟଇ ଏହାର ଉତ୍କୃଷ୍ଟ ବାହନ ହିସାବେ ସ୍ୱୀକୃତ ହଇୟାଛେ ; Tennyson ଏର Enoch Ardon, E. B. Browning ଏର Aurora Leigh, ନବୀନ ସେନେର 'ରଙ୍ଗମତୀ', ଈଶାନ ବନ୍ଦୋପାଧ୍ୟାୟେର 'ଯୋଗେଶ', ଅକ୍ଷୟ ଚୌଧୁରୀର 'ଉଦାସିନୀ' ପଦ୍ୟେ ଉପନ୍ୟାସ ମାତ୍ର ; Chaucer ଏର Canterbury Tales କେ କେହ କେହ ଇଂରେଜୀ ସାହିତ୍ୟେ ଉପନ୍ୟାସେର ଜନ୍ମେର ପୂର୍ବେଇ ଜାତ ଉପନ୍ୟାସ ନାମେ ଅଭିହିତ କରେନ । ବାଂଲାର ମୈମନସିଂହ ଗୀତିକାର ମଧ୍ୟେଓ କେହ କେହ ଉପନ୍ୟାସେର ସ୍ପର୍ଶ ଲକ୍ଷ୍ୟ କରିୟାଛେନ ଏବଂ 'ମଙ୍ଗଲ କାବ୍ୟେର'

ଅଧିକାଂଶ ଓ ମୁକୁନ୍ଦରାମର 'ଚଣ୍ଡୀମଙ୍ଗଳ' ଓ ଉପନ୍ୟାସଧର୍ମୀ—ଇହାରାଓ ପଦ୍ୟେ ଲିଖିତ !''

ମୋଟ କଥା ହେଲା, ପ୍ରାଚୀନ ସାହିତ୍ୟରେ ମଧ୍ୟ ଉପନ୍ୟାସର କ୍ଷୀଣ ସଙ୍କେତ ରହିଛି ବୋଲି ଅନେକ ଆଲୋଚକ ବିଶ୍ୱାସ କରନ୍ତି । ଏଣୁ ପ୍ରାଚୀନ କାବ୍ୟ ଗ୍ରନ୍ଥ, ଧର୍ମଗ୍ରନ୍ଥ, ନାଟକ ପ୍ରଭୃତିରେ, ଯେଉଁଠାରେ ସମାଜର ବାସ୍ତବ ଚିତ୍ର ଅଥବା ନାରୀ ପୁରୁଷର ସୁଖ ଦୁଃଖର ଇତିହାସ ଦିଆଯାଇଛି, ଅଥବା ଯେଉଁଠାରେ ସାଧାରଣ ମଣିଷ ସହିତ ସମ୍ପର୍କ ସ୍ଥାପନ କରାଯାଇଛି, ସେଠାରେ ଉପନ୍ୟାସର ଆଭାସ ମିଳେ ବୋଲି ସ୍ୱୀକାର କରିବାକୁ ହେବ । ଉପନ୍ୟାସର ଜନ୍ମ ଆଦୌ ଆକସ୍ମିକ ନୁହେଁ ଏବଂ ଏହାର ଏକ ଦୀର୍ଘ ପରଂପରା ବିଦ୍ୟମାନ ବୋଲି ଏହି ଶ୍ରେଣୀର ଆଲୋଚକଗଣ ବିଶ୍ୱାସ କରି ଥାଆନ୍ତି । ତେଣୁ ପ୍ରାଚୀନ ସାହିତ୍ୟର କ୍ଷୀଣ ବାସ୍ତବଧର୍ମୀ ବର୍ଣ୍ଣନା ମଧ୍ୟରେ ଉପନ୍ୟାସର ପୂର୍ବାନୁରାଗ ନିହିତ ଅଛି । ପ୍ରାଚୀନ ସଂସ୍କୃତ ସାହିତ୍ୟ ମୁଖ୍ୟତଃ କଳ୍ପନାଧର୍ମୀ ଓ ଅଲୌକିକ ହେଲେ ହେଁ ରାମାୟଣ ମହାଭାରତ ପରି ଗ୍ରନ୍ଥରେ ସୁଖ, ଦୁଃଖ, ହର୍ଷବିଷାଦର କାହାଣୀ ଅଳ୍ପ ନାହିଁ । ସଂସ୍କୃତ କଥା-ସରିତ-ସାଗର; ବେତାଳ ପଞ୍ଚବିଂଶତି, ଦଶକୁମାର ଚରିତ, କାଦମ୍ବରୀ ପ୍ରଭୃତିରେ ବର୍ଣ୍ଣନା ବାହୁଲ୍ୟ ଏବଂ ଅଲୌକିକତା ଯେତେ ଥାଉନା କାହିଁକି, ଏଗୁଡ଼ିକରେ ଉପନ୍ୟାସର ମୌଳିକ ଉପାଦାନ ନିହିତ ଅଛି ବୋଲି ବିଚାରିବାକୁ ହେବ । ଏହି ପ୍ରସଙ୍ଗରେ ବୌଦ୍ଧ ସାହିତ୍ୟର ଜାତକ ଗଳ୍ପଗୁଡ଼ିକ ଅଧିକ ପ୍ରଣିଧାନ-ଯୋଗ୍ୟ । ଉପନ୍ୟାସର ଧର୍ମ ଦୃଷ୍ଟିରୁ ଏ ରଚନାଗୁଡ଼ିକ ଅଧିକ ଭାବରେ ଉପନ୍ୟାସର ଅନ୍ତରଙ୍ଗ ହେବେ ବୋଲି ବିଶ୍ୱାସ କରାଯିବ । କାରଣ ଏହି ଜାତକ କଥାଗୁଡ଼ିକରେ ଧର୍ମ ବିଷୟକ ଦ୍ୱନ୍ଦ୍ୱ, ଭିକ୍ଷୁମାନଙ୍କର ଜୀବନ କାହାଣୀ, ଧର୍ମ ଓ ସମାଜରେ ଗ୍ଳାନି ପ୍ରଭୃତି ଅନେକ ବାସ୍ତବ ଚିତ୍ର ଦିଆଯାଇଅଛି । ପ୍ରସଙ୍ଗକ୍ରମେ ଓଡ଼ିଆ ସାହିତ୍ୟ ପ୍ରତି ଦୃଷ୍ଟି ନିକ୍ଷେପ କଲେ ଏକଥା ଗୃହୀତ ହୋଇ ପାରିବ ଯେ, ପ୍ରାଚୀନ ଓଡ଼ିଆ ପୁରାଣ ସାହିତ୍ୟ ଓ କାବ୍ୟ ସାହିତ୍ୟର କଳ୍ପନା ବିକାଶ ମଧ୍ୟରେ ସୁଦ୍ଧା ଉପନ୍ୟାସର ସଙ୍କେତ ବିଦ୍ୟମାନ । ସାରଳାଙ୍କ ମହାଭାରତ, ବଳରାମଙ୍କ ରାମାୟଣ ପ୍ରଭୃତି ଦୁଇଟି ମହାକାବ୍ୟରୁ ତତ୍କାଳୀନ ଓଡ଼ିଆ ସମାଜର ଧର୍ମ ଭାବନା, ଯୁଦ୍ଧ, ବିବାହ, ଯାତ୍ରା, ଆଚାର ବିଚାର ପ୍ରଭୃତିର ବିସ୍ତୃତ ପରିଚୟ ମିଳିଥାଏ । ସେହିପରି ପ୍ରାଚୀନ ଐତିହାସିକ

କୁମାର କଥା, ଶୁକ ବିଳାସ, ରୁଦ୍ର ସୁଧାନିଧି, କାବ୍ୟଯୁଗର ଅସଂଖ୍ୟ କାବ୍ୟ ଅବଶ୍ୟ ରୋମାନ୍ସଧର୍ମୀ । ଜୀବନର ବର୍ଣ୍ଣବହୁଳ ଶୋଭାଯାତ୍ରା ରୋମାନ୍ସର ପ୍ରଧାନ ସାମଗ୍ରୀ । ଏହାର କଳ୍ପନା-ବିକାଶ ବାସ୍ତବତା ସହିତ ଯୋଗସୂତ୍ର ରଖି ପ୍ରଚ୍ଛନ୍ନ ଭାବରେ ଗତି କରିଥାଏ । ତେଣୁ ରୋମାନ୍ସ ମଧ୍ୟରେ ଭବିଷ୍ୟତର ଉପନ୍ୟାସ ଛପି ରହିଥିଲା ବୋଲି କେତେକ ଆଲୋଚକଙ୍କର ଯୁକ୍ତି ସମୀଚୀନ ମନେ ହୋଇଥାଏ ।

ସାହିତ୍ୟରେ ଉପନ୍ୟାସର ଆବିର୍ଭାବ ସମ୍ପର୍କରେ ଏ ପର୍ଯ୍ୟନ୍ତ ଯେଉଁ ଧାରଣା ଦିଆଗଲା, ତାହା ବିଜ୍ଞାନସମ୍ମତ ନୁହେଁ । ଇତିହାସର ଗୌରବ ବୃଦ୍ଧି ପାଇଁ ହୁଏତ ଏ ପ୍ରକାର ଦୀର୍ଘ ସମ୍ପର୍କ ପ୍ରତିଷ୍ଠା କରାଯାଇଛି । ଉପନ୍ୟାସ ଏକ ବାସ୍ତବଧର୍ମୀ କଳା । ଉପନ୍ୟାସ ସର୍ବତୋଭାବରେ ଆଧୁନିକ ଯୁଗର ସୃଷ୍ଟି । ଉପନ୍ୟାସ ସୃଷ୍ଟି ପାଇଁ ଅତୀତ କାଳରେ ଉପଯୁକ୍ତ ବାତାବରଣ ସୃଷ୍ଟି ହୋଇ ନଥିଲା । ଏଥିପାଇଁ ଆଧୁନିକ କାଳର ପରିବେଶ ଅନାଗତ ଉପନ୍ୟାସକୁ ସ୍ୱାଗତ ଜଣାଇଥିଲା ।

ଉପନ୍ୟାସ ଏକ ଗଣତନ୍ତ୍ରଧର୍ମୀ କଳା । ମଧ୍ୟ ଯୁଗୀୟ ସାମନ୍ତବାଦୀ ବେଷ୍ଟନୀରୁ ମୁକ୍ତ ହୋଇ ଆଧୁନିକ ସମାଜ ଯେଉଁ ଦିନ ଗଣତନ୍ତ୍ରର ସ୍ୱାଧୀନତା ଘୋଷଣା କଲା, ସେପରି ସେହିଦିନୁ ଉପନ୍ୟାସ ଅବତରଣ କରି ଆସୁଛି । ଶିଳ୍ପବିପ୍ଳବ ଏବଂ ଗଣତାନ୍ତ୍ରିକ ଆନ୍ଦୋଳନ ଯୋଗୁ ସମାଜରେ ନୂତନ ଆଭିମୁଖ୍ୟ ସୃଷ୍ଟି ହେଲା । ବ୍ୟକ୍ତିନିଷ୍ଠ ଜୀବନର ମୂଲ୍ୟବୋଧ ସ୍ୱୀକୃତ ହେଲା । ଶିଳ୍ପବିପ୍ଳବରୁ ଜନ୍ମ ଗ୍ରହଣ କଲା ଏ ଯୁଗର ସଭ୍ୟତାର ପ୍ରଧାନ ସହଚର ମୁଦ୍ରାଯନ୍ତ୍ର । ମୁଦ୍ରାଯନ୍ତ୍ରର ଗର୍ଭରୁ ଆତ୍ମପ୍ରକାଶ କଲା ସାମୟିକ ସାହିତ୍ୟ ପତ୍ରିକା ଓ ସମ୍ବାଦପତ୍ର । ଏହି ସାମ୍ବାଦିକତାର ବିକାଶ ସଙ୍ଗେ ସଙ୍ଗେ ଉପନ୍ୟାସର ଜନ୍ମ ପାଇଁ ଶଙ୍ଖଧ୍ୱନି ବାଜିଉଠିଲା । ମଧ୍ୟଯୁଗରେ ଇଟାଲୀୟ 'ନଭେଲ୍' ସହିତ ସମ୍ବାଦର ସମ୍ପର୍କ ଥିବା ଆମେ ଜାଣୁ । ଅତି ଆଧୁନିକ ଯୁଗରେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ଭାବରେ ସେହି ସମ୍ବାଦପତ୍ରହିଁ ଉପନ୍ୟାସକୁ ଗର୍ଭରେ ଧାରଣ କରି ଗରୀୟାନ ହେଲା । Ralph Fox ତାଙ୍କର The Novel and the People ପୁସ୍ତକରେ (ପୃ୬୧-୬୨) ଯଥାର୍ଥରେ କହିଛନ୍ତି—But the novel as an art in its own right,

with its own rules, with its universal acceptance and appreciation is a creature of our own civilization, a creature, above all of the printing press".

ସାହିତ୍ୟ ସଂସାରରେ ଉପନ୍ୟାସର ଜନ୍ମ ହେଲା ସବୁଠାରୁ ଅଦ୍ଭୁତ ରୂପରେ । ନାଟକ, କାବ୍ୟ, ପୁରାଣ ଇତ୍ୟାଦିରେ ହଜାରହଜାର ବର୍ଷର ପରଂପରାରେ ମଣିଷର କଥା କୁହାହୋଇଥିଲା ଖୁବ୍ ଅଳ୍ପ । ମଣିଷର ଲେଖମାରୁ ଏହି ବିଶାଳ ସାହିତ୍ୟସୌଧ ନିର୍ମିତ ହୋଇଥିଲେହେଁ ତାର ମଧ୍ୟରେ ଆସନ ଗ୍ରହଣ କରିଥିଲା ମୁଖ୍ୟତଃ ଦେବତା ଅଥବା ଅତିମାନବ । ଆଧୁନିକ ଜଗତରେ ନିଜର ଜୀବନ ସମ୍ପର୍କରେ କୌତୂହଳ ପ୍ରକାଶ କରି ସେ ଯେଉଁ ଜିଜ୍ଞାସାର ଅବତାରଣା କଲା, ତାହାରି ମଧ୍ୟରେ ରୂପ ପରିଗ୍ରହ କଲା ଉପନ୍ୟାସ । ସେଥିପାଇଁ ଆଧୁନିକ ଉପନ୍ୟାସ କେବଳ ରୋମାଞ୍ଚକର ଗଳ୍ପ କହେ ନାହିଁ ; ତାହା ଜୀବନର ପ୍ରତ୍ୟେକ ଛନ୍ଦାୟିତ ଭଙ୍ଗୀ ପାଠକ ପାଖରେ ପହଞ୍ଚାଇ ଦିଏ । ସାହିତ୍ୟ ଓ କଳା ବାକ୍ୟର କୌଣସି ବିଭାଗ ଉପନ୍ୟାସ ପରି ଜୀବନର ସର୍ବତୋମୁଖୀ ବିକାଶ ଦେଖାଇପାରି ନାହାନ୍ତି । ଉପନ୍ୟାସ ସତେ ଯେପରି ସୃଷ୍ଟିର ଅଦ୍ଭୁତ ଅଥଚ ସର୍ବଶ୍ରେଷ୍ଠ ଜୀବ ମଣିଷକୁ ଆବିଷ୍କାର କଲା ତାରି ମଧ୍ୟରେ । ମଣିଷର କଥା ଆଜି ଉପନ୍ୟାସ ଯେତେ କହିପାରୁଛି, ସାହିତ୍ୟର ଆଉ କୌଣସି ବିଭାଗ ସେପରି କହିପାରିବ ନାହିଁ । ସେଥିପାଇଁ ଆଧୁନିକ ଯୁଗରେ ସାହିତ୍ୟରେ ଚାଲିଛି ଉପନ୍ୟାସର ନିରଙ୍କୁଶ ଶାସନ । ଅତୀତରେ କାବ୍ୟ ନାଟକ ଯେଉଁ ସ୍ଥାନ ଗ୍ରହଣ କରିଥିଲେ, ଆଜି ସାହିତ୍ୟରେ ଉପନ୍ୟାସ ସେହି ଆସନ ଗ୍ରହଣ କରିଅଛି; ଅଥଚ ଅଧିକ ପ୍ରଭାବଶାଳୀ ଓ ମର୍ଯ୍ୟାଦାବନ୍ତ ଭାବରେ । ତେଣୁ Ralph Foxଙ୍କ ନିମ୍ନୋକ୍ତ ଉକ୍ତିଟି ଅଧିକ ସଙ୍ଗତ ହୋଇଅଛି ଏହି ପ୍ରସଙ୍ଗରେ—The novel is not merely fictional prose, it is the prose of mans life, the first art to attempt to take the whole man and give him expression. Mr. E. M. Forster has pointed out that the great feature which distinguishes the novel from the other arts is that it has the power to make the secret life visible. It gives therefore a different view of reality from that given by

poetry or the drama or the cinema or painting, or music. (The Novel and People. p. 62.)

ସପ୍ତଦଶ ଅଷ୍ଟାଦଶ ଖ୍ରୀଷ୍ଟାବ୍ଦର ବର୍ଣ୍ଣନାଧର୍ମୀ ଉପନ୍ୟାସକୁ ପଛରେ ପକାଇ ବିଂଶ ଶତାବ୍ଦୀରେ ବାସ୍ତବଧର୍ମୀ ଉପନ୍ୟାସ ଅଧିକ ପ୍ରାଣବନ୍ତ ହୋଇ-ଅଛି । କଥାବସ୍ତୁ ଏବଂ ପରିବେଷଣ ଗତ, ଶୈଳୀ ଏବଂ ଆଙ୍ଗିକ ଦୃଷ୍ଟିରୁ ଆଧୁନିକ ଉପନ୍ୟାସକୁ ନାନା ବିଭାଗରେ ବିଭକ୍ତ କରାଗଲେହେଁ ଉପନ୍ୟାସର କାମ ହେଲା ଜୀବନର ଯାହା କିଛି ସତ୍ୟ ଓ ବାସ୍ତବ, ତାହାକୁ ରସୋତ୍ତୀର୍ଣ୍ଣ ଭାବରେ ପ୍ରକାଶ କରିବା । ଜୀବନର ପରମ ବ୍ୟାଖ୍ୟାକାର ହେଉଛି ଆଧୁନିକ ଯୁଗର ଔପନ୍ୟାସିକ । ସମାଲୋଚକର ଭାଷାରେ ଆଧୁନିକ ଉପନ୍ୟାସ ହେଲା commentories on life. ଉପନ୍ୟାସର ଚରିତ୍ର ବାସ୍ତବିକ ଏକକଧର୍ମୀ ହୋଇ ଯାଉଛି । ଅତୀତରୁ ବ୍ୟକ୍ତିନିଷ୍ଠ ଆଦର୍ଶ ଯୋଗୁ ସାହିତ୍ୟରେ ଏହି ଏକକଧର୍ମୀ ବ୍ୟକ୍ତିତ୍ୱର ବିକାଶ ପାଇଁ ଲେଖକ ଅଧିକ ଧ୍ୟାନ ଦେଉଥିବା ଜଣାଯାଏ । ମାତ୍ର ସାମ୍ୟବାଦୀ ଚିନ୍ତାନାୟକଗଣଙ୍କ ମତରେ ଔପନ୍ୟାସିକ ଏପରି ଚରିତ୍ର ସୃଷ୍ଟି କରିବ, ଯାହା କି ସମଗ୍ର ସମାଜର ନେତୃତ୍ୱ ନେଇପାରିବ । ସମାଜର ସାମଗ୍ରିକ ଆଭିମୁଖ୍ୟ ବହନ କରି ସେ ରୂପାୟିତ ହେବ । ଷ୍ଟାଲିନ୍‌ଙ୍କ ଭାଷାରେ ଔପନ୍ୟାସିକ ହେବ "Engineer of the human soul"; କାରଣ ବିଂଶ ଶତାବ୍ଦୀରେ ଉପନ୍ୟାସର ଅର୍ଥ ହେଲା ନିବିଡ଼ ବସ୍ତୁଧର୍ମର ଗ୍ରାମ ବହନ କରି ଉପନ୍ୟାସ ରଞ୍ଜିତ ହେବ । ଆମେରିକାର ବିଶ୍ୱକୋଷ ଏହି କଥାଟି କହୁଛନ୍ତି—"Which is written as a serious imitation of reality." (The Encyclopaedia Americana. Vol. 20. 1961.)

Compton's Pictured Encyclopaedia Vol. X. 1956-ଉପନ୍ୟାସ ସମ୍ପର୍କରେ ଆଉ କେତେକ ମଜାକଥା କହିଛନ୍ତି । ଗଳ୍ପ ଅବା କାହାକୁ ଆନନ୍ଦ ନଦିଏ । ଗଳ୍ପ ଶୁଣିବା ତ କେଉଁ ଅନାଦି କାଳରୁ ଗଢ଼ି ଆସୁଛି । ମାତ୍ର ଗଳ୍ପ ଚଞ୍ଚଳ ସରିଯାଏ । ସବୁକଥା କଣ ଗଳ୍ପରେ କୁହାଯାଇ ପାରିବ ? ସେହିପରି ନାଟକରେ ଜୀବନର କେତେକ ନାଟକୀୟ ଘଟଣାବଳୀ ରୂପାୟିତ ହୁଏ । ତାହା ମଧ୍ୟ ସମଗ୍ର ଜୀବନର କାହାଣୀ ଶୁଣାଇ ପାରିଲ ନାହିଁ । ଏହି କାରଣରୁ ଉପନ୍ୟାସର ଜନ୍ମ ସାହିତ୍ୟରେ ଆବଶ୍ୟକ ହୋଇ

ପଡ଼ିଲା । ଜୀବନ ସହିତ ଉପନ୍ୟାସର ସମ୍ପର୍କ ଅତ୍ୟନ୍ତ ନିବିଡ଼ । ଲେଖକ ନିଜର ପ୍ରତ୍ୟକ୍ଷ ଅପ୍ରତ୍ୟକ୍ଷ ଅନୁଭୂତି ସକଳ ଜୀବନ୍ୟାସ ଦିଏ ଉପନ୍ୟାସରେ । ଯେକୌଣସି ଚରିତ୍ର, ଘଟଣା ଅଥବା ଅନୁଭୂତି ବର୍ଣ୍ଣନା କରିଦେଲେ ତାହା ଉପନ୍ୟାସ ହେବ ନାହିଁ । ଯାହା ସ୍ୱାଭାବିକ ହେବନାହିଁ, ରସାପ୍ଲୁତ କରିପାରିବ ନାହିଁ, ତାହା ଉପନ୍ୟାସ ରାଜ୍ୟରେ ପ୍ରବେଶ କରିବା ମନା । ସେଥିପାଇଁ କୁହାଯାଇଛି "Believeableness is one test of a good story."

ଏଥିରୁ ପ୍ରମାଣିତ ହେଉଛି ଯେ, କେବଳ ଅଙ୍ଗନିଷ୍ଠ କଥା ଉପନ୍ୟାସକୁ ଜୀବନ୍ତ କରିପାରିବ ନାହିଁ । ତାହା ହେବ ନିତାନ୍ତ ନୀରସ ଇତିହାସ । ଲେଖକର ହୁଏତ ସମାଜର ବିଭିନ୍ନ ସମସ୍ୟା ସମ୍ପର୍କରେ କେତେକ ବାନ୍ଧିବାନ୍ଧି ମନୋଭାବ ଥାଇପାରେ । ସମାଜର ପ୍ରତିଛବି ଭାବରେ ଉପନ୍ୟାସର ଚରିତ୍ର-ଗୁଡ଼ିକୁ ଠିକ କଲାବେଳେ ନିଜର ମତବାଦ ବା ଆଭିମୁଖ୍ୟକୁ ଯଦି ଚରିତ୍ର କରିଆରେ ପ୍ରକାଶ କରି ଦିଆଯାଏ, ତାହା ହେବ ସମ୍ପୂର୍ଣ୍ଣ ଭାବରେ ପ୍ରଚାର-ଧର୍ମୀ ପାଞ୍ଜି । ଏଣୁ ଉପନ୍ୟାସର ସାମାଜିକ ମୂଲ୍ୟ ଅତ୍ୟନ୍ତ ସ୍ୱାଭାବିକ ହେବା ଆବଶ୍ୟକ । ବାସ୍ତବ ଜୀବନର ଯାବତୀୟ ଅନୁଭୂତି ଓ ଘଟଣାବଳୀ ଉପନ୍ୟାସ ପାଠରେ ସତେ ଯେପରି ଘଟି ଯାଉଛି, ଏପରି ଅବସର ନ ମିଳିଲେ ଉପନ୍ୟାସ ସାର୍ଥକ ହୋଇପାରିବ ନାହିଁ ।

ସାହିତ୍ୟରେ ଉପନ୍ୟାସ ସବୁଠାରୁ ଅଧିକ ପ୍ରଭାବଶାଳୀ ବୋଲି ପ୍ରମାଣିତ ହୋଇଅଛି । ଗୋଟିଏ ଗୋଟିଏ ଶକ୍ତିଶାଳୀ ଉପନ୍ୟାସ ଦେଶ ଓ ସମାଜର ଆଭିମୁଖ୍ୟ ବଦଳାଇବାରେ ସାହାଯ୍ୟ କରିଅଛି । ସମାଜ ସଂସ୍କାର କ୍ଷେତ୍ରରେ ମଧ୍ୟ ଉପନ୍ୟାସର ଦାନ କିଛି କମ୍ ନୁହେଁ । ଜୀବନ ସହିତ ଉପନ୍ୟାସର ଏହି ଘନିଷ୍ଠ ସମ୍ପର୍କ ବିଷୟ ଉଲ୍ଲେଖ କରି ହେନେରୀ ଜେମସ୍ ତାଙ୍କର Art of Fiction ପ୍ରବନ୍ଧରେ କହି ଅଛନ୍ତି—'As people feel life, so they will feel the art that is most closely related to it This closeness of relation is what we should never forget in talking of the effort of the novel.'

# ଉପନ୍ୟାସର କଳାଧର୍ମ

ଜୀବନ ସହିତ ଉପନ୍ୟାସର ସମ୍ପର୍କ ଅତ୍ୟନ୍ତ ନିବିଡ଼ । ଉପନ୍ୟାସରେ ଜୀବନର ଚିତ୍ର ଅତ୍ୟନ୍ତ ବିସ୍ତୃତ ଭାବରେ ରୂପାୟିତ ହୋଇଥାଏ । ନାଟକ ଏକ ଜୀବନଧର୍ମୀ କଳା ହେଲେ ହେଁ ଔପନ୍ୟାସିକ ପରି ନାଟ୍ୟକାରର ଲେଖନୀ ତୁଳନାରେ ସ୍ୱାଧୀନତା ନାହିଁ । ନାଟ୍ୟକାର ଆଖ୍ୟାନବସ୍ତୁର ବହୁ ଅଂଶ ଗୋପନ କରି ରଖେ । ମାତ୍ର ଆଖ୍ୟାନ ଭାଗକୁ ଚମତ୍କାର ଭାବରେ ପ୍ରକାଶ କରିବା ଔପନ୍ୟାସିକର ଧର୍ମ । ବିସ୍ତୃତ କାହାଣୀ ସୃଷ୍ଟି କରି ଚରିତ୍ର-ମାନଙ୍କର ଅବତାରଣା କରିବାକୁ ଔପନ୍ୟାସିକ ଅପୂର୍ବ ସୁଯୋଗ ଲାଭ କରି-ଥାଏ । ଉପନ୍ୟାସ ପାଠ୍ୟ । ଏଥିରେ ମାନବ ଜୀବନର କାଳ୍ପନିକ ଚିତ୍ର ପରିବେଷଣ କରାଯାଉ ଥିଲେହେଁ ତାହା ବହୁଳାଂଶରେ ଯଥାର୍ଥ ଏବଂ ସ୍ୱାଭାବିକ । ସାମାଜିକ ଜୀବନର ବାସ୍ତବିକ ବିଶ୍ଳେଷଣ ସଙ୍ଗେ ସଙ୍ଗେ ନାରୀ ଓ ପୁରୁଷର ସୁଖ ଦୁଃଖର ସଂସାରରେ ସଂଘଟିତ ଅତି ସୂକ୍ଷ୍ମ ବିବରଣୀ ଉପନ୍ୟାସରେ ରୂପାୟିତ ହୋଇଥାଏ । ପ୍ରତ୍ୟେକ ଚରିତ୍ରର ମନୋରାଜ୍ୟରେ ଯେଉଁ ଘାତ ପ୍ରତିଘାତ ଏବଂ ସଂଘର୍ଷର ସୂଚନା ମିଳୁଥାଏ, ଔପନ୍ୟାସିକ ଅତ୍ୟନ୍ତ କୁଶଳତାର ସହିତ ସେଗୁଡ଼ିକର ପରିଚୟ ପ୍ରଦାନ କରି ଥାଆନ୍ତି ।

ଅତୀତରେ ପୁରାଣଗୁଡ଼ିକ ସମାଜ ଗଠନରେ ଯେଉଁ ପ୍ରଭାବ ବିସ୍ତାର କରିଥିଲେ, ଆଧୁନିକ ଯୁଗରେ ଉପନ୍ୟାସଗୁଡ଼ିକ ସେହି ଦାୟିତ୍ୱ ବହନ କରିଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ପୁରାଣ ପରି ଉପନ୍ୟାସର ଲକ୍ଷ୍ୟ ମଧ୍ୟ ସତ୍ୟର ପରିପ୍ରକାଶ । ପୁରାଣରେ ଅଲୌକିକ ଜଗତର କାହାଣୀ ମାଧ୍ୟମରେ ପ୍ରତିଷ୍ଠା ପାଇଁ ବର୍ଣ୍ଣିତ ହୋଇଥାଏ । ମାତ୍ର ଉପନ୍ୟାସ ଏହି ମାଟି ଗୋଡ଼ି ସଂସାରର କାହାଣୀକୁ ରୂପାୟିତ କରେ । ସାହିତ୍ୟ ସଂସାରରେ ଉପନ୍ୟାସ ଅତ୍ୟନ୍ତ ଜୀବନଧର୍ମୀ ହୋଇଥିବାରୁ ତାହା ଅତ୍ୟନ୍ତ ଲୋକପ୍ରିୟ ଏବଂ ପ୍ରଭାବଶାଳୀ କଳା ଭାବରେ ଗୃହୀତ ହୋଇଅଛି । ଉପନ୍ୟାସର ଗଳ୍ପାଂଶ ଯଦ୍ୟପି ପାଠକର ମନୋରଞ୍ଜନ ପାଇଁ ଉଦ୍ଦିଷ୍ଟ; ତଥାପି ଏହାର ଚରିତ୍ରଗୁଡ଼ିକ ସ୍ୱାଭାବିକ ନ ହେଲେ ତାହା ଆଦୃତ ହୋଇପାରିବ ନାହିଁ । ସମାଲୋଚକ Ralph Fox ଏଥିପାଇଁ କହିଥିଲେ—"The novel is not merely fictional prose, it is the prose of mens

life, the first art to attempt to take the whole man and give him expression."

ଅନେକଙ୍କର ଧାରଣା ଯେ, ଗଳ୍ପ ଓ ଉପନ୍ୟାସ ମଧ୍ୟରେ ନିବିଡ଼ ସମ୍ପର୍କ ବିଦ୍ୟମାନ । ଉପନ୍ୟାସକୁ ସଙ୍କୁଚିତ କରିଦେଲେ କ୍ଷୁଦ୍ର ଗଳ୍ପ ହୋଇଯାଏ ବୋଲି ସେମାନେ ମନେ କରନ୍ତି ଏବଂ କ୍ଷୁଦ୍ର ଗଳ୍ପର ସ୍ଫୀତିକୃତ ପ୍ରକାଶକୁ ଉପନ୍ୟାସ ବୋଲି ଧାରଣା କରାଯାଏ । ଅତୀତରେ କ୍ଷୁଦ୍ର ଗଳ୍ପ ଆକାରରେ ପ୍ରକାଶିତ ଏକ କଥାବସ୍ତୁ ଓଡ଼ିଆରେ 'ମନେ ମନେ' ଉପନ୍ୟାସ ଭାବରେ ସୁପରିଚିତ । ମାତ୍ର କ୍ଷୁଦ୍ର ଗଳ୍ପ ଏବଂ ଉପନ୍ୟାସ ମଧ୍ୟରେ ମୌଳିକ ପାର୍ଥକ୍ୟ ବିଦ୍ୟମାନ । ଗଳ୍ପ ଉପନ୍ୟାସ ନୁହେଁ କିମ୍ବା ଉପନ୍ୟାସ କେବେହେଲେ ଗଳ୍ପ ହୋଇପାରିବ ନାହିଁ । ଜୀବନର ଏକ ଅପୂର୍ବ ମୂହୂର୍ତ୍ତର ରସାଳ ଅଭିବ୍ୟକ୍ତ ହେଉଛି କ୍ଷୁଦ୍ର ଗଳ୍ପ ; ମାତ୍ର ଉପନ୍ୟାସରେ ଜୀବନର ଦୀର୍ଘ ଘଟଣାବଳୀର କଳାତ୍ମକ ପ୍ରକାଶ ଦେଖାଯାଏ ।

ଉପନ୍ୟାସକୁ ମୁଖ୍ୟତଃ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଏ । ୧-ଚରିତ୍ରମୂଳକ ଉପନ୍ୟାସ, ୨-ଘଟଣାପ୍ରଧାନ ଉପନ୍ୟାସ । ଅଥଚ ଚରିତ୍ର ବ୍ୟତିରେକେ ଉପନ୍ୟାସ ମୂଲ୍ୟହୀନ ହୋଇପଡ଼େ । ଚରିତ୍ର ସାଧାରଣତଃ ଦୁଇ ଶ୍ରେଣୀର । କ-ସମାନ୍ତରାଳ ଓ ଖ-ଗତିଶୀଳ । ସମାନ୍ତରାଳ ଚରିତ୍ର-ଗୁଡ଼ିକ ଅନ୍ୟ ପକ୍ଷରେ ଗତିହୀନ । ଅର୍ଥାତ୍ ସମଗ୍ର ଉପନ୍ୟାସରେ ଏହି ଗତିହୀନ ଚରିତ୍ରଗୁଡ଼ିକ ଏକମୁଖୀ ବ୍ୟବହାରରେ ଅଭ୍ୟସ୍ତ । ପ୍ରାଚୀନ ଉପନ୍ୟାସଗୁଡ଼ିକରେ ଏହି ସମାନ୍ତରାଳ ଚରିତ୍ରର ରୂପାୟନ ଅଧିକ ଦେଖାଯାଏ । ମାତ୍ର ଆଧୁନିକ ଉପନ୍ୟାସ ଚରିତ୍ରଗୁଡ଼ିକର ପରିବର୍ତ୍ତନଧର୍ମୀ । ଓଡ଼ିଆ ସାହିତ୍ୟରେ ଫକୀର ମୋହନଙ୍କ ଉପନ୍ୟାସ ଚରିତ୍ର ଏବଂ ଅତ୍ୟାଧୁନିକ ଉପନ୍ୟାସର ଚରିତ୍ର ମଧ୍ୟରେ ତୁଳନା କଲେ ଏହି ଉକ୍ତିର ସତ୍ୟତା ଉପଲବ୍ଧି କରାଯାଇ ପାରିବ ।

କଥାବସ୍ତୁ ଏବଂ ପ୍ରକାଶ ଭଙ୍ଗୀ ଅନୁସାରେ ଉପନ୍ୟାସକୁ କେତେଗୁଡ଼ିଏ ବିଭାଗରେ ବିଭକ୍ତ କରାଯାଇ ଅଛି । ଯଥା—୧-ଐତିହାସିକ ଉପନ୍ୟାସ, ୨-ସାମାଜିକ ଉପନ୍ୟାସ, ୩-ସମସ୍ୟାମୂଳକ ଉପନ୍ୟାସ, ୪-ରହସ୍ୟ-ରୋମାଞ୍ଚ ଉପନ୍ୟାସ, ୫-ମନସ୍ତାତ୍ତ୍ୱିକ ଉପନ୍ୟାସ ।

ଉପନ୍ୟାସ ଯେଉଁ ଶ୍ରେଣୀର ବା ଯେଉଁ କାଳର ହେଉ, ତାହାର ପ୍ରଧାନ ଆଭିମୁଖ୍ୟ ହେଲା ମଣିଷର କଥା କହିବା ଏବଂ ସମାଜର ମଣିଷକୁ ଆବିଷ୍କାର କରିବା । ସାହିତ୍ୟ ସଂସାରରେ ଉପନ୍ୟାସ ହିଁ ସର୍ବପ୍ରଥମେ ଏହି ଗୌରବର ଅଧିକାରୀ ହୋଇଅଛି । ଉପନ୍ୟାସର ଆବିର୍ଭାବ ପୂର୍ବରୁ ମନୁଷ୍ୟକୁ ଏତେ ଆପଣାର କରି ସାହିତ୍ୟ ସଂସାରରେ ପର୍ଯ୍ୟାଲୋଚନା ଅଥବା ବିଶ୍ଳେଷଣ କରିବାର ଅବକାଶ ଆଦୌ ହୋଇ ନଥିଲା । ଓଡ଼ିଆ ଉପନ୍ୟାସ ସାହିତ୍ୟର କ୍ରମପର୍ଯ୍ୟାୟରେ ଏହି ଧାରାର ବ୍ୟତିକ୍ରମ ହୋଇ ନାହିଁ ।

---

# ଓଡ଼ିଆ ଉପନ୍ୟାସ
## ପ୍ରତିଷ୍ଠାର ତରଙ୍ଗ

ଆଧୁନିକ ଓଡ଼ିଆ ସାହିତ୍ୟରେ ଉପନ୍ୟାସର ଆବିର୍ଭାବ ବେଶିଦିନର କଥା ନୁହେଁ । ଆଧୁନିକ ଯୁଗ ଉପନ୍ୟାସର ଜନ୍ମ ଓ ବିକାଶ ପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି କରିଥିବାରୁ ଆଜିର ସାହିତ୍ୟରେ ଉପନ୍ୟାସ ଏକ ପ୍ରଧାନ ସ୍ଥାନ ଗ୍ରହଣ କରିଅଛି । ମଧ୍ୟଯୁଗରେ ସାହିତ୍ୟ ଥିଲା ସମ୍ପୂର୍ଣ୍ଣଭାବରେ ଦେବଗ୍ରାହୀ ସାହିତ୍ୟ; ଏହି ସାହିତ୍ୟରେ ମଣିଷ ଅପେକ୍ଷା ଦେବତାର କଥା ଅଧିକ କୁହାଯାଇଥିଲା । ଅଲୌକିକ କଥାବସ୍ତୁକୁ ଆଶ୍ରୟ କରି ପ୍ରାଚୀନ ଯୁଗର ଲେଖକମାନେ ଭାବବିହ୍ୱଳ ହୋଇ ଲେଖନୀ ଚାଳନା କରୁଥିଲେ । ଯୁଗର ପରିବର୍ତ୍ତନ-ସ୍ରୋତରେ ସଭ୍ୟ ମନୁଷ୍ୟ ଏକ ଯାନ୍ତ୍ରିକ ଯୁଗରେ ପଦାର୍ପଣ କଲା । ଶିଳ୍ପବିପ୍ଳବର ପ୍ରଭାବରେ ପୃଥିବୀର ସାମାଜିକ ଚେତନାରେ ଅଭୂତପୂର୍ବ ପରିବର୍ତ୍ତନର ସୂତ୍ରପାତ ହେଲା । ବୈଜ୍ଞାନିକ ମନର ଅଧିକାରୀ ତତ୍କାଳୀନ ସମାଜର ମାନବ ଅନୁଭବ କଲା, ସତେ ଯେପରି ସେ ନୂତନ ପୃଥିବୀ ସୃଷ୍ଟି କରିବାକୁ ଯାଉଛି । ତା'ର ମନରେ ଆସିଲା ଗଭୀର ଆଲୋଡ଼ନ ଏବଂ ଆତ୍ମବିଶ୍ୱାସ । କ୍ରମେ କ୍ରମେ ସମାଜର ବ୍ୟକ୍ତିସ୍ୱାତନ୍ତ୍ର୍ୟର ଭାବନା ପ୍ରତିଷ୍ଠିତ ହେଲା । ପ୍ରାଚୀନତାର ରକ୍ଷଣଶୀଳ ପରାଧୀନ ଗଣ୍ଡି ମଧ୍ୟରୁ ନିଜକୁ ମୁକ୍ତ କରି ଆଧୁନିକ ମନୁଷ୍ୟ ଏ ଯୁଗର ସାହିତ୍ୟରେ ନିଜକୁ ଖୋଜି ଖୋଜି ପାଇବାକୁ ବ୍ୟାକୁଳ ହୋଇପଡ଼ିଲା । ତେଣୁ ସୃଷ୍ଟି ହେଲା ଉପନ୍ୟାସର ଅପୂର୍ବ ସଂସାର । ଅତି ଆଧୁନିକ ଓ ଗଣତନ୍ତ୍ର ଅଭିମୁଖୀ ସମାଜରେ ମନର ଖୋରାକ ପାଇଁ ଉପନ୍ୟାସ ହେଲା ଅନ୍ୟତମ ଉତ୍କୃଷ୍ଟ ମାଧ୍ୟମ । ହୁଏତ ମଧ୍ୟ ଯୁଗର ସେହି ସ୍ୱାତନ୍ତ୍ର୍ୟହୀନ ଗତାନୁଗତିକ ସମାଜ ମଧ୍ୟରେ ଏ ଉପନ୍ୟାସର ଜନ୍ମ ଅସମ୍ଭବ ଥିଲା ।

ଏ ଦେଶର ସମାଜରେ ଏହି ଅଭିନବ ମାନସିକ ଅଭ୍ୟୁଦୟ ପାଇଁ ବହୁ ପରିମାଣରେ ପାଶ୍ଚାତ୍ୟ ଶିକ୍ଷା ଏବଂ ସଭ୍ୟତାର ପ୍ରଭାବ ଦାୟୀ । ଇଂରାଜୀ ସାହିତ୍ୟର ପ୍ରଚାର ସଙ୍ଗେ ସଙ୍ଗେ ଜନସମାଜରେ ସ୍ୱାଧୀନ ଚିନ୍ତା, ବ୍ୟକ୍ତି-ସ୍ୱାତନ୍ତ୍ର୍ୟ ଏବଂ ବାସ୍ତବତାବୋଧ ପ୍ରଭୃତି ପ୍ରକାଶ ପାଇଲା । ଇଂରେଜ ମିସନାରୀମାନେ ଧର୍ମପ୍ରଚାର ଉଦ୍ଦେଶ୍ୟରେ ଏ ଦେଶରେ ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା କରି ସାମୟିକ ପତ୍ରପତ୍ରିକା ପ୍ରକାଶ କଲେ । ୧୮୪୯ ଖ୍ରୀଷ୍ଟାବ୍ଦରେ ରେଭରେଣ୍ଡ ଲସୀଙ୍କ ଉଦ୍ୟମରେ "ଜ୍ଞାନାରୁଣ" ନାମରେ ପ୍ରଥମ ଓଡ଼ିଆ ସାମୟିକ ପତ୍ର ଆତ୍ମପ୍ରକାଶ କଲା । ଊନବିଂଶ ଶତାବ୍ଦୀର ଶେଷ ତିନୋଟି ଦଶକ ଏ କ୍ଷେତ୍ରରେ ଅଧିକ ସ୍ମରଣୀୟ । କାରଣ ଏହି ସମୟ ମଧ୍ୟରେ 'ଉତ୍କଳଦୀପିକା', 'ଉତ୍କଳ ହିତୈଷିଣୀ', 'ଉତ୍କଳପ୍ରଭା', 'ଓଡ଼ିଆ', 'ନବ ସମ୍ବାଦ' ଓ 'ଉତ୍କଳମଧୁପ' ପ୍ରଭୃତି ପତ୍ରିକାଗୁଡ଼ିକ ପ୍ରକାଶିତ ହୋଇଥିଲା । ଏଗୁଡ଼ିକ ପ୍ରକାଶିତ ହୋଇ ନ ଥିଲେ ବୋଧହୁଏ ଓଡ଼ିଆ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପର ଅଭ୍ୟୁଦୟପାଇଁ ଆଉ କିଛିକାଳ ଅପେକ୍ଷା କରିବାକୁ ପଡ଼ିଥାଆନ୍ତା । ଆଧୁନିକ ଯୁଗର ଇତିହାସ ଆଲୋଚନା କଲେ ଜଣାଯାଏ ଯେ, ରାମଶଙ୍କର ରାୟ ତାଙ୍କ ରଚିତ ପ୍ରଥମ ଉପନ୍ୟାସ 'ସୌଦାମିନୀ' ୧୮୭୭-୭୮ ମସିହାର 'ଉତ୍କଳମଧୁପ' ମାସିକ ପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶ କରିଥିଲେ । ମାତ୍ର ଗ୍ରାହକ ଅଭାବରୁ ପତ୍ରିକାଟି ଅକାଳରେ ବିଲୟ ଭଜିବାରୁ ଓଡ଼ିଆ ସାହିତ୍ୟର ଏହି ପ୍ରଥମ ଉପନ୍ୟାସ ମଧ୍ୟ ଅପୂର୍ଣ୍ଣାଙ୍ଗ ଅବସ୍ଥାରେ ଇତିହାସଗର୍ଭରେ ଲୁଚିଗଲା । ଏହି ପ୍ରସଙ୍ଗରେ ରାମଶଙ୍କର ନିଜେ ଯାହା ଲେଖିଯାଇଛନ୍ତି, ତାହା ଅତ୍ୟନ୍ତ କୌତୂହଳୋଦ୍ଦୀପକ—"ମୁଁ 'ଉତ୍କଳମଧୁପ' ନାମକ ମାସିକ-ପତ୍ର ବାହାର କଲାବେଳେ 'ସୌଦାମିନୀ' ନାମକ ଉପନ୍ୟାସ ଲେଖୁଥିଲି । ସେ ଉପନ୍ୟାସ ଶେଷ ହେବା ପୂର୍ବେ ଦେଶର ସ୍ୱାଭାବିକ ଗତିରେ ଗ୍ରାହକମାନେ ମୂଲ୍ୟ ନ ଦେବାରୁ କାଗଜଖଣ୍ଡିକ ବନ୍ଦ ହୋଇଗଲା । ମୁଁ କ୍ଷୁବ୍ଧ ହୋଇ ରହିଲି—ସେହି ଉପନ୍ୟାସର ହସ୍ତଲିପି ମୁଁ ତତ୍କାଳୀନ ଶିକ୍ଷାବିଭାଗର ଡେପୋଟି ଇନ୍ସପେକ୍ଟର ଉମାଚରଣ ବାବୁଙ୍କୁ ଦେଖାଇଥିଲି । ସେ ତାହା ପଢ଼ି ତହିଁର ବହୁତ ପ୍ରଶଂସା କଲେ; ମାତ୍ର ଉପନ୍ୟାସ ବିଦ୍ୟାଳୟର ପାଠ୍ୟପୁସ୍ତକର ଅନୁପଯୁକ୍ତ ବୋଲି ମତ ଦେବାରୁ ମୁଁ କ୍ଷାନ୍ତ

ହୋଇ ରହିଲା । ※ ରାମଶଙ୍କର ନାଟକ ରଚନାରେ ଅଧିକ ଆଗ୍ରହୀ ଥିଲେ ଏବଂ ଅନେକ ଗୁଡ଼ିଏ ନାଟକ ଏବଂ ପ୍ରହସନ ଲେଖି ସେ ଓଡ଼ିଆ ନାଟ୍ୟ ସାହିତ୍ୟର ପିତୃଭାବରେ ସମ୍ମାନିତ ହୋଇ ଥାଆନ୍ତି । ତେବେ ତାଙ୍କର ବହୁମୁଖୀ ପ୍ରତିଭା କେବଳ ନାଟକ ରଚନାରେ ସନ୍ତୁଷ୍ଟ ହୋଇ ନ ଥିଲା । ସେ ନିଜର ଗ୍ରନ୍ଥାବଳୀର ମୁଖବନ୍ଧରେ ଜୀବନର ଅନୁଭୂତି ବିଶ୍ଳେଷଣ କରି ଲେଖିଛନ୍ତି—ନାଟକ ରଚନାରେ ଶ୍ରମ କରୁଥିବା ସମୟରେ 'ଉତ୍କଳପ୍ରଭା' ନାମକ ମାସିକ ପତ୍ରର ପରିଚାଳକମାନଙ୍କଦ୍ୱାରା ଅନୁରୁଦ୍ଧ ହୋଇ ମୁଁ 'ବିବାସିନୀ' ଉପନ୍ୟାସ ଲେଖିଲି ଏବଂ ସୌଭାଗ୍ୟକ୍ରମେ ତାହା ଶେଷ ପର୍ଯ୍ୟନ୍ତ ପ୍ରକାଶିତ ହେବାକାଳକୁ ପତ୍ରିକାଟି ବଞ୍ଚିଥିଲା । 'ଇନ୍ଦ୍ରଧନୁ' ନାମକ ମାସିକପତ୍ରିକାର ପରିଚାଳକମାନେ ଅନୁରୋଧ କରିବାରୁ ମୁଁ 'ଉନ୍ମାଦିନୀ' ନାମରେ ଉପନ୍ୟାସ ଲେଖିବାକୁ ଆରମ୍ଭ କଲି । ତାହା କିୟଦଂଶ ଲେଖା ହୋଇ ପ୍ରକାଶିତ ହେଲା ପରେ ପତ୍ରିକାଟି ବିଲୟପ୍ରାପ୍ତ ହେବାରୁ ଉପନ୍ୟାସଟି ଅପୂର୍ଣ୍ଣ ରହିଗଲା । 'ବିବାସିନୀ' ଓଡ଼ିଶାର ପ୍ରଥମ ଉପନ୍ୟାସ—ତାହା ସୁପରିଚିତ ଏବଂ କଲିକତାଠାରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ବିଦ୍ୟାଳୟମାନଙ୍କର ପାଠ୍ୟ ପୁସ୍ତକରୂପେ ନିର୍ବାଚିତ ହୋଇଅଛି । †

ଏହି ଆଲୋଚନାରୁ ସେ କାଳରେ ଶିକ୍ଷିତ ପାଠକକୁଳର ମନୋଭାବ ମଧ୍ୟ ଲକ୍ଷ୍ୟ କରାଯାଇପାରେ । ସାହିତ୍ୟ-ସଂସାରରେ କାବ୍ୟକବିତାର ଥିଲା ଏକଚ୍ଛତ୍ର ରାଜତ୍ୱ । ଏହି ରାଜ୍ୟରେ 'ଉପନ୍ୟାସ' ଭଳି ନୂତନ ଆଗନ୍ତୁକକୁ ସ୍ୱାଗତ କରିବାପାଇଁ ଦେଶରେ ଗ୍ରାହକତାର ଅଭାବ ରାମଶଙ୍କର ଅନୁଭବ କରି ନିରୁତ୍ସାହିତ ହୋଇଥିଲେ । ସେହି କାରଣରୁ ଓଡ଼ିଆ ସାହିତ୍ୟର ପ୍ରଥମ ଉପନ୍ୟାସ ବିକଳାଙ୍ଗଭାବରେ ଜନ୍ମଗ୍ରହଣ କରି ଶେଷ ନିଃଶ୍ୱାସ ତ୍ୟାଗ କଲା । ଶିକ୍ଷାବିଭାଗ ଏହି ପୁସ୍ତକକୁ ପାଠ୍ୟଭାବରେ ଗ୍ରହଣ କରିଥିଲେ 'ସୌଦାମିନୀ' ଓଡ଼ିଆ ଉପନ୍ୟାସ ସାହିତ୍ୟର ପ୍ରଥମ ଆଲୋକ-ବର୍ତ୍ତିକା ହୋଇ ରହିଥାନ୍ତା; ମାତ୍ର ବିଧିର ବିଡ଼ମ୍ବନା ହେତୁ ତାହା ଏ ଯୁଗର ପାଠକ ନିକଟରେ ସ୍ୱପ୍ନ ତୁଲ୍ୟ ପ୍ରତିଭାତ ହେଲା । ବିବାସିନୀ ପାଠ୍ୟପୁସ୍ତକ ଭାବରେ

---

※ ରାମଶଙ୍କରଙ୍କ ଅଭିଭାଷଣ-ମୁକୁର-୯ମଭାଗ ୧୦ମ ସଂଖ୍ୟା

† ରାମଶଙ୍କର ଗ୍ରନ୍ଥାବଳୀ-୧୯୩୦-ଭୂମିକା-ପୃଷ୍ଠ

ପରବର୍ତ୍ତୀକାଳରେ ସୃଷ୍ଟି ହୋଇଥିବାରୁ ସେମାନଙ୍କର ନିଜକୁ କୃତକୃତ୍ୟ ମନେ କରିଅଛନ୍ତି ।

ସେ କାଳର ପାଠକଗୋଷ୍ଠୀ ପ୍ରାୟତଃ ଇଂରେଜୀ ଶିକ୍ଷିତ ଏବଂ ପାଶ୍ଚାତ୍ୟ ସଭ୍ୟତା-ଅଭିମାନୀ ଥିଲେ । ସେମାନଙ୍କ ଦୃଷ୍ଟିରେ ମାତୃଭାଷା ଓ ସାହିତ୍ୟର ମହତ୍ତ୍ୱ ଆଦୌ ସ୍ୱୀକୃତ ହୋଇ ନ ଥିଲା । ସେ କାଳର ସାହିତ୍ୟ ଏବଂ ଶିକ୍ଷିତମାନଙ୍କ ମନୋଭାବ ସମ୍ପର୍କରେ ବଙ୍ଗଳାର ଉପନ୍ୟାସସମ୍ରାଟ ବଙ୍କିମଚନ୍ଦ୍ର ଏକ ଚମତ୍କାର ବିଶ୍ଳେଷଣ କରି ଯାଇଅଛନ୍ତି । ସେ ଲେଖିଥିଲେ—'ଯାଁହାରା ବାଙ୍ଗଲା ଭାଷାୟ ଗ୍ରନ୍ଥ ବା ସାମୟିକ-ପତ୍ର ପ୍ରଚାରେ ପ୍ରବୃତ୍ତ ହୟେନ, ତାଁହା-ଦେର ବିଶେଷ ଦୁରଦୃଷ୍ଟ । ତାହାରା ଯତ ଯତ୍ନ କରୁନ୍ ନା କେନ, ଦେଶୀୟ କୃତବିଦ୍ୟ ସମ୍ପ୍ରଦାୟେର ପ୍ରାୟଇ ତାଁହାଦେର ରଚନା ପାଠେ ବିମୁଖ । ଇଂରେଜୀପ୍ରିୟ କୃତବିଦ୍ୟଗଣେର ପ୍ରାୟ ସ୍ଥିରତା ଆଛେ ଯେ, ତାହାଦେର ପାଠେର ଯୋଗ୍ୟ କିଛୁଇ ବାଙ୍ଗଲା ଭାଷାୟ ଲିଖିତ ହଇତେ ପାରେ ନା । ତାହାଦେର ବିବେଚନାୟ ବାଙ୍ଗଲା ଭାଷାୟ ଲେଖକ ମାତ୍ରେଇ ହୟତ ବିଦ୍ୟାବୁଦ୍ଧିହୀନ, ଲିପିକୌଶଳଶୂନ୍ୟ, ନୟତ ଇଂରେଜୀ ଗ୍ରନ୍ଥେର ଅନୁବାଦକ ।' *

ବହୁକାଳ ପୂର୍ବେ ବଙ୍କିମଚନ୍ଦ୍ର ସେ ଦେଶର ଇଂରେଜୀ ଶିକ୍ଷାପ୍ରାପ୍ତ ପାଠକସମାଜ ସମ୍ପର୍କରେ ଯେଉଁ ମତ ପ୍ରକାଶ କରିଥିଲେ, ତାହା ଏବେ ମଧ୍ୟ ଓଡ଼ିଶାର ବହୁ ପଣ୍ଡିତମ୍ମନ୍ୟ ଉଚ୍ଚଶିକ୍ଷିତ ପାଠକମାନଙ୍କ ପ୍ରତି ପ୍ରଯୁଜ୍ୟ । ସୌଭାଗ୍ୟର କଥା ଯେ, ନିଜେ ବଙ୍କିମଚନ୍ଦ୍ର ଇଂରେଜୀ ଭାଷା ଓ ସାହିତ୍ୟରେ ଥିଲେ ବିଶେଷ ଅବଗାହୀ ଏବଂ ତାଙ୍କର ପ୍ରଥମ ଉପନ୍ୟାସ 'Rajmohan's Wife' ଇଂରେଜୀ ଭାଷାରେ ଲିଖିତ ହୋଇଥିଲା । ତତ୍କାଳୀନ 'Indian Field' ନାମକ ଏକ ପତ୍ରିକାରେ ସେ ଏହି ଉପନ୍ୟାସଟିକୁ ଧାରାବାହିକ ଭାବରେ ପ୍ରକାଶ କରିଥିଲେ । ପରେ ମାତୃଭାଷା ଓ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇ ସେ ବଙ୍ଗଳା ଉପନ୍ୟାସ ସାହିତ୍ୟରେ ଏକ ଯୁଗାନ୍ତକାରୀ ବିପ୍ଳବ ଆନୟନ କରିବାରେ ସକ୍ଷମ ହୋଇ ପାରିଥିଲେ । ପ୍ରଥମ କାଳରେ ନିଜର ସାହିତ୍ୟ ସାଧନା ପ୍ରତି ତାଙ୍କର ବିଶେଷ ଆସ୍ଥା ନ ଥିଲା

* ବଙ୍ଗଦର୍ଶନ-ବୈଶାଖ-୧୨୭୯ ସାଲ

ତେଣୁ ନିଜର ବିଖ୍ୟାତ ଉପନ୍ୟାସ 'ଦୁର୍ଗେଶନନ୍ଦିନୀ'କୁ ପ୍ରକାଶପାଇଁ ଦେବା ପୂର୍ବରୁ ଏକ ସମ୍ଭ୍ରାନ୍ତ ସୁଶିକ୍ଷିତଗୋଷ୍ଠୀକୁ ନିମନ୍ତ୍ରଣ କରି ପାଣ୍ଡୁଲିପିଟି ଶୁଣାଇଥିଲେ ଏବଂ ସେମାନଙ୍କର ଆଶ୍ବାସୂଚକ ମତାମତ ଶୁଣିଲା ପରେ ତାହା ପ୍ରକାଶିତ ହୋଇଥିଲା । ଏହାସତ୍ତ୍ୱେ ବଙ୍କିମ-ଉପନ୍ୟାସ ସେ କାଳର ସମାଜରେ ତା'ର ନୂତନ ଆଭିମୁଖ୍ୟପାଇଁ ଅତି ତୀବ୍ରଭାବରେ ସମାଲୋଚିତ ହୋଇଥିଲା । ଓଡ଼ିଆ ସାହିତ୍ୟର ପ୍ରଥମକାଳର ଔପନ୍ୟାସିକଗଣ ତତ୍‌କାଳୀନ ବଙ୍ଗୀୟ ପାଠକମାନଙ୍କ ପରି ଓଡ଼ିଆ ପାଠକ ସଂସାରର ଗ୍ରାହକତା ଲଭି କରିଥିଲେ ହୁଏତ ଅଧିକ ଉପନ୍ୟାସ ଲେଖି ପାରିଥାନ୍ତେ । ଅବଶ୍ୟ ସେମାନଙ୍କ ମଧ୍ୟରେ ରାମଶଙ୍କର ପ୍ରତିକୂଳ ଆଲୋଚନାରେ ବିଚଳିତ ହେବାର ବ୍ୟକ୍ତି ନ ଥିଲେ । ତାଙ୍କର ପରବର୍ତ୍ତୀ ଉପନ୍ୟାସ 'ବିବାସିନୀ' 'ଉତ୍କଳପ୍ରଭା' ନାମକ ମାସିକ ପତ୍ରରେ ପ୍ରକାଶିତ ହେଲା । ଏହି ସମୟରେ 'ଇନ୍ଦ୍ରଧନୁ' ପତ୍ରିକାର ଆବିର୍ଭାବ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଉପେନ୍ଦ୍ର ଭଞ୍ଜ ଏବଂ ରାଧାନାଥଙ୍କୁ କେନ୍ଦ୍ର କରି ଯେଉଁ ସାହିତ୍ୟିକ ସଂଘର୍ଷ ସଂଗଠିତ ହୋଇଥିଲା, ସେଥିରେ ଇନ୍ଦ୍ରଧନୁ ଉପେନ୍ଦ୍ର ଭଞ୍ଜଙ୍କ ପକ୍ଷରେ ଦଣ୍ଡାୟମାନ ହୋଇଥିଲା । ଏହି ପତ୍ରିକାର ଅନୁରୋଧରେ ରାମଶଙ୍କର 'ଉନ୍ମାଦିନୀ' ନାମକ ଉପନ୍ୟାସ ଧାରାବାହିକଭାବେ ପ୍ରକାଶ କରିବାକୁ ଲାଗିଲେ; ମାତ୍ର ଇନ୍ଦ୍ରଧନୁ ଅଳ୍ପାୟୁ ହୋଇଯିବାରୁ 'ଉନ୍ମାଦିନୀ' ମଧ୍ୟ ଅପୂର୍ଣ୍ଣ ରହିଗଲା । ରାମଶଙ୍କରଙ୍କ ପରେ ପରେ ଓଡ଼ିଆ ଉପନ୍ୟାସ ସାହିତ୍ୟର ମହାରଥୀ ଫକୀରମୋହନ 'ଅପୂର୍ବ ମିଳନ' ଶିରୋନାମାରେ ତାଙ୍କର ଏକ ଉପନ୍ୟାସ ଧାରାବାହିକଭାବରେ 'ଉତ୍କଳସାହିତ୍ୟ' ମାସିକ ପତ୍ରରେ ପ୍ରକାଶ କଲେ । ପରେ ତାହା 'ଲଛମା' ଉପନ୍ୟାସ ନାମରେ ପରିଚିତ ହେଲା ।

ଓଡ଼ିଆ ସାହିତ୍ୟରେ ପ୍ରଥମ ଉପନ୍ୟାସ ଭାବରେ ଗୃହୀତ ଉମେଶଚନ୍ଦ୍ର ସରକାରଙ୍କ ଲିଖିତ ପଦ୍ମମାଳୀ ୧୮୮୮ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୁଏ । ତା'ର ମାତ୍ର ତିନିବର୍ଷ ପୂର୍ବରୁ ୧୮୮୫ ମସିହାରେ ଶରତ୍‌ଚନ୍ଦ୍ର ମୁଖୋପାଧ୍ୟାୟଙ୍କ 'ପ୍ରଦୀପ' ନାମରେ ଏକ ସାମୟିକ ପତ୍ର ପ୍ରକାଶିତ ହେଉଥିଲା । ଏହି ପତ୍ରିକାରେ 'ଶ୍ରୀ' ଛଦ୍ମ ନାମରେ କେହି ଜଣେ ଲେଖକ 'ମଠର ସମ୍ବାଦ' ଓ 'ଅନାଥିନୀ' ନାମକ ଦୁଇଟି ଉପନ୍ୟାସ ଧାରାବାହିକ ଭାବେ

ପ୍ରକାଶ କରୁଥିଲେ । ୧୮୮୫ ଖ୍ରୀଷ୍ଟାବ୍ଦରେ 'ପ୍ରଦୀପ' ପତ୍ରିକାର ଅକାଳମୃତ୍ୟୁ ହୋଇଯିବାରୁ ମଠର ସମ୍ବାଦ ଓ ଅନାଥିନୀ ପୂର୍ଣ୍ଣାଙ୍ଗ ହୋଇ ପାରିଲେ ନାହିଁ । ✻

ଅଧ୍ୟାପକ କୃଷ୍ଣଚରଣ ବେହେରା ତାଙ୍କର ଏକ ଆଲୋଚନା ଗ୍ରନ୍ଥରେ 'ଅନାଥିନୀ'କୁ ଉପନ୍ୟାସ ସୃଷ୍ଟିର ଅନ୍ୟ ଏକ ପ୍ରୟାସ ବୋଲି କହିଥିଲେହେଁ 'ମଠର ସମ୍ବାଦ'କୁ ଏକ ବଡ଼ ଗଳ୍ପ ବା ରମ୍ୟରଚନା ବୋଲି ମତ ବ୍ୟକ୍ତ କରିଛନ୍ତି । ଛଅଗୋଟି ପରିଚ୍ଛେଦରେ ବିଭକ୍ତ ଏହି ଅପୂର୍ଣ୍ଣ ଲେଖାଟିକୁ ସେ ଉପନ୍ୟାସ ବୋଲି ସ୍ୱୀକାର କରି ନାହାନ୍ତି । ତାଙ୍କ ମତରେ ଉପନ୍ୟାସ-ସୁଲଭ ବିସ୍ତୀର୍ଣ୍ଣ ଗଳ୍ପଗୁମ୍ଫନ ବା ଘଟଣା ବର୍ଣ୍ଣନା ଏଥିରେ ନାହିଁ । ଏହି ପୁସ୍ତକରେ ପ୍ରଦତ୍ତ 'ମଠର ସମ୍ବାଦ'ର ଉଦାହରଣ ଏହିପରି—"ପ୍ରକୃତରେ ଗୃହିଣୀକୁ ଅନେକ କାର୍ଯ୍ୟ କରିବାକୁ ହୁଏ । ଭୋର ଆଠଟାବେଳୁ ଉଠି ପେଟଖାନାକୁ ଯିବାକୁ ହୁଏ । ତହିଁଉତ୍ତାରୁ ମୁଖ ହସ୍ତ ପ୍ରକ୍ଷାଳନ କରି କଞ୍ଚିଭ ଜଳଖିଆ ଖାଇବାକୁ ହୁଏ । ପୁଣି ଦଶଟା ନ ବାଜୁଣୁ ସ୍ନାନ କରି ବ୍ରାହ୍ମଣର ପାକ କେବଳ ଅର୍ଦ୍ଧସେର ତଣ୍ଡୁଳ ଅନ୍ନ ଉଦରସ୍ଥ କରିବାକୁ ହୁଏ । ଏଥି ଉତ୍ତାରୁ ବନ୍ଧଣୀକୁ ଯାଇ ପାଏ ଘଣ୍ଟା ଏଗାରଟାରୁ ପାଞ୍ଚଟା ପର୍ଯ୍ୟନ୍ତ ନିଦ୍ରା ଯିବାକୁ ହୁଏ । ବାପ ରେ ବାପ । ଏତେ କାମ କ'ଣ ଜଣେ କରିପାରେ ।" ସେହିପରି 'ଅନାଥିନୀ' ଉପନ୍ୟାସର ମଧ୍ୟ ଏକ ଉଦ୍ଧୃତାଂଶ ପ୍ରଦାନ କରି ଡକ୍ଟର ବେହେରା କହନ୍ତି ଯେ, ଏହି ଦୁଇଟି ଉପନ୍ୟାସର ଲେଖକ ଫକୀରମୋହନ ହୋଇପାରନ୍ତି । ତାଙ୍କର ଅନୁମାନକୁ ବଳିଷ୍ଠ କରିବାକୁ ଯାଇ ସେ ଯେଉଁ ଯୁକ୍ତି ଉପସ୍ଥାପିତ କରିଅଛନ୍ତି, ତାହା ହେଲା— "ଅନାଥିନୀ ଓ 'ମଠର ସମ୍ବାଦର' ଗଦ୍ୟଶୈଳୀ ଫକୀରମୋହନଙ୍କର ଗଦ୍ୟଶୈଳୀକୁ ସ୍ମରଣ କରାଇଦିଏ । ପୁନଶ୍ଚ ଶୁଦ୍ଧ ମାର୍ଜିତ ଭାଷା ସଙ୍ଗେ ସାଧାରଣ ଲୋକକଥିତ ଗ୍ରାମ୍ୟଭାଷାର ସମନ୍ୱୟ ଏକାନ୍ତ ଭାବରେ ଫକୀରମୋହନଙ୍କର । ଆଉ ମଧ୍ୟ ଫକୀରମୋହନ ଛଦ୍ମନାମରେ ଉପନ୍ୟାସ ଲେଖିଥିବାର ପ୍ରମାଣ ରହିଛି । ସେ ତାଙ୍କର 'ମୌନାମୌନ୍ନ' ଗଳ୍ପଟି 'ଶ୍ରୀ' ଛଦ୍ମ ନାମରେ ଲେଖିଥିଲେ । ୪

✻ ଓଡ଼ିଆ ସାହିତ୍ୟର ଇତିହାସ (୧୮୩୦-୧୯୨୦),
ଡକ୍ଟର ନଟବର ସାମନ୍ତରାୟ-ପୃଃ୧୪-୬୧୫

୪ ଓଡ଼ିଆ ଉପନ୍ୟାସ-ଡକ୍ଟର କୃଷ୍ଣଚରଣ ବେହେରା-ପୃ ୧୪୮-୧୪୯

ଏତଗୁଡ଼ିଏ ପ୍ରମାଣ ଥିଲେ ମଧ୍ୟ 'ମଠର ସମ୍ବାଦ' ଏବଂ 'ଅନାଥିନୀ' ଫକୀରମୋହନଙ୍କର ବୋଲି ମନ ମାନୁ ନାହିଁ । 'ଶ୍ରୀ' ଛଦ୍ମନାମ ଏକାଧିକ ଲୋକ ବ୍ୟବହାର କରିବାରେ କୌଣସି କାରଣ ନାହିଁ । କାରଣ 'ଶ୍ରୀ' କୌଣସି ନାମର ସଙ୍କେତ ହୁଏ ନାହିଁ । 'ଅନାଥିନୀ' ଓ 'ମଠର ସମ୍ବାଦ' ପ୍ରକାଶିତ ହେବାର ଅର୍ଦ୍ଧ ସତରବର୍ଷ ପୂର୍ବରୁ ୧୮୬୮ ମସିହାରେ ଫକୀରମୋହନ ତାଙ୍କ ଉଦ୍ୟମରେ ପ୍ରକାଶିତ 'ବୋଧଦାୟିନୀ' ଓ 'ବାଲେଶ୍ୱର-ସମ୍ବାଦବାହିକା'ରେ ତାଙ୍କର ପ୍ରଥମ ଗଳ୍ପ ଲଛମନିଆ ପ୍ରକାଶ କରିଥିଲେ । ତାଙ୍କରି ଭାଷାରେ 'ବୋଧହୁଏ ଉତ୍କଳର ତାହା ହିଁ ପ୍ରଥମ ମୁଦ୍ରିତ ଗଳ୍ପ ।' ✲ ସମଗ୍ର ଭାରତୀୟ ସାହିତ୍ୟରେ 'ଲଛମନିଆ' ହିଁ ଏକ ସର୍ବପ୍ରଥମ ଆଧୁନିକ କ୍ଷୁଦ୍ରଗଳ୍ପ ବୋଲି ସମାଲୋଚକ ସୁରେନ୍ଦ୍ର ମହାନ୍ତି ମତ ପ୍ରକାଶ କରିଅଛନ୍ତି । ୪ ପୁନଶ୍ଚ କଟକ ଅବସ୍ଥାନକାଳରେ 'ଉତ୍କଳ ସାହିତ୍ୟ'ରେ କେବେ ରେବତୀ ଗଳ୍ପ ପ୍ରକାଶ କରିଥିଲେ, ଧୂର୍ଜ୍ଜଟି ଛଦ୍ମ ନାମରେ କପରି ଗଳ୍ପ ଉପନ୍ୟାସମାନ ପ୍ରକାଶପାଇଁ ଦେଉଥିଲେ 'ଅପୂର୍ବ ମିଳନ' ଉପନ୍ୟାସ କପରି ପରେ 'ଲଛମା' ନାମରେ ପୁସ୍ତକାକାରରେ ଆତ୍ମପ୍ରକାଶ କଲା, କାହିଁକି ମହାଭାରତ ଏବଂ ଉପନିଷଦର ଅନୁବାଦ କରିଥିଲେ ଇତ୍ୟାଦି ସାହିତ୍ୟ ସାଧନାର ବହୁ ବିବରଣୀ ତାଙ୍କର ଆତ୍ମଚରିତରେ ୫ ଲିପିବଦ୍ଧ କରିଯାଇଥିଲାବେଳେ ତାଙ୍କ ଲିଖିତ ଦୁଇଟି ଅପୂର୍ଣ୍ଣ ଉପନ୍ୟାସ କଥା ସେ ନିଶ୍ଚୟ ଉଲ୍ଲେଖ କରି ଯାଇଥାଆନ୍ତେ । ଏତଦ୍‌ବ୍ୟତୀତ ସେ ପରିଷ୍କାର ଲେଖିଛନ୍ତି—"କଟକ ବାସ ସମୟରେ ମୋର ଉପନ୍ୟାସ ଲେଖା ଆରମ୍ଭ ହୁଏ । ମୁଁ ପ୍ରଥମେ ରେବତୀନାମକ ଗୋଟିଏ ଗଳ୍ପ ଲେଖିଲି । 'ଉତ୍କଳ ସାହିତ୍ୟ'ରେ ପ୍ରକାଶ କରିବାପାଇଁ ତାହା ସମ୍ପାଦକଙ୍କୁ ଦେଲି । ମୁଁ ଏହି ସମୟରେ ଯେଉଁ ଗଳ୍ପ ଓ ଉପନ୍ୟାସମାନ ଲେଖିଥିଲି ତାହା ମୋ ନାମରେ ପ୍ରକାଶ ନ କରି 'ଧୂର୍ଜ୍ଜଟି' ନାମରେ ପ୍ରକାଶ କରିଥିଲି ।" ୬ ଏହି କଟକ ରହଣିର ସମୟ ହେଉଛି

✲ ଫକୀରମୋହନ ସେନାପତିଙ୍କ ଆତ୍ମଜୀବନ ଚରିତ-୧୯୨୭-ପୃ ୧୬୩-୧୬୪

୪ ଫକୀରମୋହନ ସମୀକ୍ଷା-ସୁରେନ୍ଦ୍ର ମହାନ୍ତି-୨ୟ ସଂସ୍କରଣ-ପୃ ୧୬୧

୫ ଫକୀରମୋହନଙ୍କ ଆତ୍ମଚରିତ ୧୯୨୭-ପୃ ୧୬୩-୧୬୫

୬ ଏକକ...ପୃ ୧୬୪-୧୬୫

୧୯୨୦ ମସିହା । କାରଣ ଫକୀରମୋହନ ୧୮୯୯ ମସିହାରେ କେନ୍ଦ୍ରାପଡ଼ା ଜମିଦାରୀରେ ନଅଟି ମାସ କାର୍ଯ୍ୟ କରି ଅବସର ଗ୍ରହଣ କରିବାପାଇଁ ନିଷ୍ପତ୍ତି ଗ୍ରହଣ କରିଥିବା ବିଷୟ ଆତ୍ମଜୀବନୀରେ ଲୁହାଯାଇଛି । * ଅତଏବ ୧୮୮୫ ମସିହାରେ ପ୍ରକାଶିତ 'ମଠର ସମ୍ବାଦ' ଓ 'ଅନାଥିନୀ' ଫକୀରମୋହନଙ୍କର ବୋଲି କହିବାର କାରଣ ନାହିଁ । ବିଭିନ୍ନ ଗଡ଼ଜାତରେ ରାଜକାର୍ଯ୍ୟର ଅନୁଭୂତ ପ୍ରାଞ୍ଜଳଭାବରେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଫକୀରମୋହନ ସାହିତ୍ୟ-ଚର୍ଚ୍ଚା ସମ୍ପର୍କରେ କେତେକ ସଙ୍କେତ ଆତ୍ମଚରିତରେ ଦେଇଅଛନ୍ତି । ୧୮୭୭-୧୮୮୩ ମସିହା ମଧ୍ୟରେ ଢେଙ୍କାନାଳରେ ଦେବାନ ସମୟରେ ସେ ବାଲ୍ମୀକି ରାମାୟଣର ପଦ୍ୟାନୁବାଦ କରିଥିଲେ । ୧୮୮୬—୧୮୮୭ ମସିହାରେ ପାଲଲହଡ଼ାରେ ଦେବାନୀକାଳରେ କେବଳ ମହାଭାରତ ଅନୁବାଦ କରିଥିବା କଥା ଉଲ୍ଲେଖ କରାଯାଇଛି । ଅଥଚ ୧୮୮୪—୧୮୮୬ ମସିହା ପର୍ଯ୍ୟନ୍ତ ଦଶପଲ୍ଲା ଦେବାନୀ କାଳରେ ତାଙ୍କର କୌଣସିପ୍ରକାର ସାହିତ୍ୟ ସାଧନାର କଥା ଉଲ୍ଲେଖ କରାଯାଇ ନାହିଁ । 'ଲଛମନିଆ' ଗଳ୍ପକଥା ଉଲ୍ଲିଖିତ ଥିବାବେଳେ 'ଅନାଥିନୀ' ଓ 'ମଠର ସମ୍ବାଦ' ଉପନ୍ୟାସ ଲେଖିଥିଲେ ଫକୀରମୋହନ ଅବଶ୍ୟ ଏ କଥା ଲିପିବଦ୍ଧ କରି ଥାଆନ୍ତେ ।

## ପ୍ରଥମ ଓଡ଼ିଆ ଉପନ୍ୟାସ ପଦ୍ମମାଳୀ :

ପଦ୍ମମାଳୀ ଉପନ୍ୟାସ ୧୯ ଅକ୍ଟୋବର ୧୮୮୮ ମସିହାରେ ଢେଙ୍କାନାଳରୁ ପ୍ରକାଶିତ ହୋଇଥିଲା । ଏହି ଉପନ୍ୟାସର ପ୍ରଥମ ସଂସ୍କରଣ ମୁଖବନ୍ଧରେ ଲେଖକ ଉମେଶଚନ୍ଦ୍ର ସରକାର ଲେଖିଥିଲେ —'ଉତ୍କଳ ସାହିତ୍ୟର ବର୍ତ୍ତମାନ ଅବସ୍ଥାରେ ସ୍ୱ-କପୋଳକଳ୍ପିତ ଗ୍ରନ୍ଥ ରଚନା କରିବାର ଉଦ୍ୟମକୁ ଅସୀମ ସାହସିକତାର କାର୍ଯ୍ୟ ବୋଲିବାକୁ ହେବ । ଆମ୍ଭେ ଏ ଅସୀମ ସାହସିକତା କାର୍ଯ୍ୟର ଅନୁଷ୍ଠାନ କରିଅଛୁ । ଉତ୍କଳ ଭାଷାମାନଙ୍କ ଆମ୍ଭେ ହାସ୍ୟାସ୍ପଦ ହେବୁ ଜାଣି ସୁଦ୍ଧା ଏ ଅନୁଷ୍ଠାନରେ ବ୍ରତୀ ହୋଇଅଛୁ । ବ୍ରତ ସଫଳ ବା ନିଷ୍ଫଳ ହେଉ ଆମ୍ଭେ ଆଉ ପଶ୍ଚାତ୍ ପଦ ହୋଇ ନ ପାରୁ । ଜନସମାଜର ପ୍ରୀତି ସମ୍ପାଦନ ଓ ଉତ୍କଳ ସାହିତ୍ୟର

* ଫକୀରମୋହନଙ୍କ ଆତ୍ମଚରିତ ପୃ° ୭୩

ଗୌରବ ବର୍ଦ୍ଧନକୁ ଲକ୍ଷ୍ୟ କରି ଅକ୍ଳାନ୍ତକାର୍ଯ୍ୟ ହେଲେହେଁ ଏପରି ମହତ୍ କାର୍ଯ୍ୟର ଅନୁଷ୍ଠାନ କରିଥିଲୁ । ଏହା ଆମ୍ଭର ନୈରାଶ୍ୟ-ସମୁଦ୍ରର ଶାନ୍ତି ପ୍ରଦାନ କରିବ । ଐତିହାସିକ ଘଟନାବଲମ୍ବିତ ହୋଇ କୌଣସି ଉପନ୍ୟାସ ଉତ୍କଳର ଭାଷାରେ ରଚିତ ହୋଇଥିବାର ଆମ୍ଭମାନଙ୍କୁ ଜଣା ନାହିଁ । ⁕

୧୯୩୦ ମସିହାରେ ରାମଶଙ୍କର ଗ୍ରନ୍ଥାବଳୀ ପ୍ରକାଶିତ ହୋଇଥିଲା । ସେତେବେଳକୁ 'ପଦ୍ମମାଳୀ' ଉପନ୍ୟାସର ତିନିଗୋଟି ସଂସ୍କରଣ ପ୍ରକାଶିତ ହୋଇସାରିଲାଣି । ଅଥଚ ନିଜର ଗ୍ରନ୍ଥାବଳୀର ମୁଖବନ୍ଧରେ 'ବିବାସିନୀ' ଓଡ଼ିଶାର ପ୍ରଥମ ଉପନ୍ୟାସ † ବୋଲି ରାମଶଙ୍କର ଦାବୀ କରିଅଛନ୍ତି । ଓଡ଼ିଆ ଉପନ୍ୟାସ ସାହିତ୍ୟର କଥା-ସମ୍ରାଟ ମଙ୍କରମୋହନ ବହୁ ପୂର୍ବରୁ ଲେଖିଥିଲେ—

'ହେ ରାମଶଙ୍କର ମୋର ମାନୁଛି ମନକୁ
ହୋଇପାର ଭଲ ତୁମ୍ଭେ ଗଉରି ପଛକୁ
ପ୍ରଥମ ନାଟକ ଆଉ ନଭେଲର ଲେଖା
ପ୍ରଥମରେ ତୁମ୍ଭଠାରେ ଗଲା ସିନା ଦେଖା । ୪

ଏହା ସତ୍ୟ ଯେ, ରାମଶଙ୍କର ପ୍ରଥମେ ଓଡ଼ିଆ ଉପନ୍ୟାସ ଲେଖାରେ ମନୋନିବେଶ କରିଥିଲେ; ମାତ୍ର ତାଙ୍କର ପ୍ରଥମ କାଳର ଉପନ୍ୟାସଗୁଡ଼ିକ ଅପୂର୍ଣ୍ଣ ରହିସିବାରୁ ଏକମାତ୍ର ପୂର୍ଣ୍ଣାଙ୍ଗ ଉପନ୍ୟାସ ବିବାସିନୀ ଓଡ଼ିଆ ସାହିତ୍ୟରେ ପ୍ରଥମ ଉପନ୍ୟାସର ଗୌରବ ଲାଭ କରିପାରିଲା ନାହିଁ । କିନ୍ତୁ ରାମଶଙ୍କର ଯେ କାହିଁକି ବିବାସିନୀକୁ ସର୍ବପ୍ରଥମ ଉପନ୍ୟାସ ବୋଲି ଦାବୀ କରିଗଲେ, ଏ କଥା ବୁଝି ହୁଏ ନାହିଁ । 'ପଦ୍ମମାଳୀ' ସଂପର୍କରେ ରାମଶଙ୍କରଙ୍କ ଭାଇ ଗୌରୀଶଙ୍କର ତତ୍କାଳୀନ ବିଖ୍ୟାତ ସାପ୍ତାହିକ 'ଉତ୍କଳ ଦୀପିକା'ରେ ଏକ ସମ୍ପାଦକୀୟ ଅଗ୍ରଲେଖାରେ ଏହା ଓଡ଼ିଆ ଭାଷାର ପ୍ରଥମ ଉପନ୍ୟାସ ବୋଲି ସ୍ୱୀକାର କରିଥିଲେ ।

---

⁕ ପଦ୍ମମାଳୀ-ତୃତୀୟ ସଂସ୍କରଣ-୧୯୩୦
† ରାମଶଙ୍କର ଗ୍ରନ୍ଥାବଳୀ-୧୯୩୦-ଭୂମିକା-ପୃଷ୍ଠ
୪ ଉତ୍କଳଭ୍ରମଣ-୧୮୯୨

ସେ ଲେଖିଥିଲେ—"ପ୍ରକୃତ ଘଟଣାସମ୍ବଳିତ କୌଣସି ଉପନ୍ୟାସର ଅବଧି ଓଡ଼ିଆ ଭାଷାରେ ପ୍ରଚ୍ଚରିତ ହୋଇ ନ ଥିବାରୁ ଉମେଶବାବୁଙ୍କ ଏହି ପ୍ରଥମ ଉଦ୍ୟମଟି ପ୍ରଶଂସନୀୟ । ଏହି ଖଣ୍ଡିକୁ ଓଡ଼ିଶାର ପ୍ରଥମ Novel କହିଲେ ଅତ୍ୟୁକ୍ତି ହେବ ନାହିଁ ।" ପୁନଶ୍ଚ ଆଉ ଏକ ବିଖ୍ୟାତ ପତ୍ରିକା "ଓଡ଼ିଆ ଓ ନବ ସମ୍ବାଦ" ମଧ୍ୟ ପଦ୍ମମାଳୀର ପ୍ରାପ୍ତି ସ୍ୱୀକାର କରି ଲେଖିଥିଲେ ଯେ, ଏହା ଓଡ଼ିଆ ଗଡ଼ଜାତ ମାହାଲର ଏକ ଐତିହାସିକ ଉପନ୍ୟାସ । * ସେ କାଳର ଦୁଇଟି ବିଖ୍ୟାତ ପତ୍ରିକାରେ ଏହି ଆଲୋଚନା ରାମଶଙ୍କର ଦେଖି ନ ଥିଲେ ବୋଲି ବିଶ୍ୱାସ କରାଯାଇ ପାରିବ ନାହିଁ । ୧୮୯୨-୯୩ ମସିହା ଅଥବା ସନ ୧୨୯୮ରେ ବାରିପଦାରୁ 'ଉତ୍କଳ-ପ୍ରଭା' ମାସିକ ପତ୍ରିକା ପ୍ରକାଶିତ ହେଲା ଏବଂ ଏଥିରେ ପ୍ରଥମ ସଂଖ୍ୟାରୁ ରାମଶଙ୍କର 'ବିବାସିନୀ' ଉପନ୍ୟାସ ଧାରାବାହିକଭାବରେ ପ୍ରକାଶ କରିଥିଲେ । ୧୮୯୬ ମସିହାରେ 'ଓଡ଼ିଆ ଓ ନବ ସମ୍ବାଦ' ପତ୍ରିକାରେ (୧୫।୧।୧୮୯୬) 'ବିବାସିନୀ' ଉପନ୍ୟାସର ସମାଲୋଚନା କରାଯାଇଥିଲା । ସେଥିରେ 'ବିବାସିନୀ' ଉତ୍କଳ ଭାଷାର ମୁଦ୍ରିତ ଉପନ୍ୟାସ ମଧ୍ୟରେ ଦ୍ୱିତୀୟ ବୋଲି ଉଲ୍ଲେଖ କରାଯାଇଥିଲା ।

ଆଲୋଚକ ସୁରେନ୍ଦ୍ର ମହାନ୍ତି ତାଙ୍କର 'ଓଡ଼ିଆ ସାହିତ୍ୟରେ ଅନ୍ଧକାର ଯୁଗ' ପ୍ରବନ୍ଧରେ ଅନୁମାନ କରିଛନ୍ତି ଯେ, ୧୮୮୮ ମସିହାରେ ପ୍ରକାଶିତ 'ପଦ୍ମମାଳୀ' ପୂର୍ବରୁ ଓଡ଼ିଆରେ ଉପନ୍ୟାସ ରଚନାର ଉଦ୍ୟମ ହୋଇଥିଲା । ଉତ୍କଳଦୀପିକା ୩।୫।୧୮୭୩ ସଂଖ୍ୟାରେ 'ଉତ୍କଳ-ଦର୍ପଣ' ପତ୍ରିକାର ଯେଉଁ ଆଲୋଚନା କରିଥିଲେ, ତହିଁରୁ ସୂଚନା ମିଳିଥିଲା ଯେ, ଦର୍ପଣ'ରେ ଦୁଇଟି ମନୋହର ପାଠଯୋଗ୍ୟ ଉପନ୍ୟାସ ସନ୍ନିବେଶିତ ହୋଇଅଛି । ଏଣୁ ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି 'ଦର୍ପଣ'ରେ ପ୍ରକାଶିତ ଉପନ୍ୟାସ ଦୁଇଟି ଯଥାର୍ଥରେ ପୂର୍ଣ୍ଣାବୟବ ଉପନ୍ୟାସ ନା କ୍ଷୁଦ୍ରଗଳ୍ପ, ତାହା ଯଥାର୍ଥରେ ଏକ ସମସ୍ୟା ବୋଲି କହି ଅଛନ୍ତି । ମାତ୍ର ୨।୫।୧୮୮୯ ସଂଖ୍ୟା ଦୀପିକା 'ପଦ୍ମମାଳୀ'କୁ ଓଡ଼ିଶାର ପ୍ରଥମ ନଭେଲ ବୋଲି ଆଖ୍ୟାତ କରିଥିବାରୁ ଆଉ ସନ୍ଦେହର ଅବକାଶ ନାହିଁ । ଶ୍ରୀଯୁକ୍ତ ମହାନ୍ତିଙ୍କ ଅନୁମାନ ସତ୍ୟ

* ଉତ୍କଳ ଦୀପିକା ୨।୫।୧୮୮୯; "ଓଡ଼ିଆ ଓ ନବସମ୍ବାଦ

* ୧୯।୬।୧୮୮୯ ପୃ୧୪୩

ଯେ, ପଦ୍ମମାଳୀ ରଚନା ପୂର୍ବରୁ ସେ କାଳର ପତ୍ରିକାଗୁଡ଼ିକରେ ଅନେକ ରୋମାନ୍‌ସଧର୍ମୀ ଗଳ୍ପ ପ୍ରକାଶିତ ହୋଇଥିଲା । ଏହି ରୋମାନ୍‌ସଧର୍ମୀ ଗଳ୍ପଗୁଡ଼ିକ ହୁଏତ ପରବର୍ତ୍ତୀ ଉପନ୍ୟାସ ଲେଖକମାନଙ୍କୁ ପ୍ରେରଣା ପ୍ରଦାନ କରିଥିବା ଅତ୍ୟନ୍ତ ସ୍ୱାଭାବିକ ।

୧୮୯୭ ମସିହାରେ ଉତ୍କଳ-ସାହିତ୍ୟ ପତ୍ରିକା ପ୍ରକାଶିତ ହୁଏ । ଏହାର ଦ୍ୱିତୀୟ ଭାଗରେ ଅର୍ଥାତ୍ ୧୮୯୮ ମସିହାରୁ ଫକୀରମୋହନ ପ୍ରସିଦ୍ଧ 'ଛମାଣ ଆଠଗୁଣ୍ଠ' ଉପନ୍ୟାସ ଧାରାବାହିକ ଭାବରେ ପ୍ରକାଶ କରିଥିଲେ । ୧୯୦୫ ମସିହା ପୂର୍ବରୁ ସବୁ ପତ୍ରିକାରେ ଲଛମା ପ୍ରକାଶିତ ହୋଇଥିଲେ ହେଁ ୧୯୧୪ ମସିହାରେ ତାହା ପୁସ୍ତକାକାରରେ ଆତ୍ମପ୍ରକାଶ କଲା । ମାମୁଁ ଏବଂ ପ୍ରାୟଶ୍ଚିତ୍ତ ବହୁ ପରେ ଲିଖିତ ହୋଇଥିଲା ।

## ବିସ୍ମୃତପ୍ରାୟ ଉପନ୍ୟାସ 'କଳାବତୀ' :

ଗଞ୍ଜାମର ଶ୍ରୀ ଅପର୍ତ୍ତି ପଣ୍ଡା ଏହି ପୁସ୍ତକର ଲେଖକ ଏବଂ ଏହା ୧୯୦୨ ମସିହାରେ ପାରଳାଖେମଣ୍ଡିର ଗଜପତି ପ୍ରେସରେ ମୁଦ୍ରିତ ହୋଇଥିଲା । ଅପର୍ତ୍ତି ପଣ୍ଡା ବ୍ୟାସକବି ଫକୀରମୋହନ ଏବଂ ଭକ୍ତକବି ମଧୁସୂଦନଙ୍କର ସମକାଳୀନ ଲେଖକ ଥିଲେ । ଏହି ଉପନ୍ୟାସଟି ଫକୀରମୋହନ ଏବଂ ମଧୁସୂଦନ ସଂଶୋଧନ କରିଥିଲେ ବୋଲି ଭୂମିକାରେ ଉଲ୍ଲେଖ ଅଛି ।

'କଳାବତୀ'ନାୟିକାର ନାମାନୁସାରେ ଏହି ଉପନ୍ୟାସର ନାମକରଣ ହୋଇଅଛି । ୧୪ଟି ପରିଚ୍ଛେଦରେ ଲେଖକ ଉପନ୍ୟାସଟିକୁ ଶେଷ କରିଅଛନ୍ତି । ଉପନ୍ୟାସର କଥାବସ୍ତୁ ହେଲା—ମଧ୍ୟପ୍ରଦେଶ ରାୟପୁର ନଗରର ରା' ସିଂହଙ୍କ କନ୍ୟା କଳାବତୀ । ସେ ଥିଲେ ଅତ୍ୟନ୍ତ ବୁଦ୍ଧିମତୀ ଏବଂ ବିଦୁଷୀ ରମଣୀ । ସେ କାଳରେ ଭାରତର ରାଜଧାନୀ କଲିକତା ନଗରୀରେ ସେ ବି.ଏ. ପାଶ୍ କରିଥିଲେ । କଳାବତୀ ନିଜର ସଖୀ ଇନ୍ଦୁମତୀ ସହିତ ଭାରତ ଭ୍ରମଣରେ ବାହାରିଗଲେ । ବୈଷ୍ଣବ ଧର୍ମପୀଠ ନଦିଆ, ବୃନ୍ଦାବନ, କଲିକତା ଭ୍ରମଣ କରି ପରେ ପରେ ଓଡ଼ିଶା, ମାନ୍ଦ୍ରାଜ, ବମ୍ବେ ଇତ୍ୟାଦି ସ୍ଥାନଗୁଡ଼ିକ ପରିଦର୍ଶନ କଲେ । ନଦିଆ ଓ ବୃନ୍ଦାବନରେ

ମହନ୍ତମାନଙ୍କର ବ୍ୟଭିଚାର, କଲିକତାରେ ବ୍ରାହ୍ମଧର୍ମ ପ୍ରତି ଏବଂ ପାଶ୍ଚାତ୍ୟ ସଭ୍ୟତା ପ୍ରତି ଆଗ୍ରହ, ବମ୍ବେ ନଗରୀରେ ଆଧୁନିକ ସଭ୍ୟତାର ପ୍ରଭାବ ଇତ୍ୟାଦି ବର୍ଣ୍ଣିତ । ଓଡ଼ିଶାରେ ଇନ୍ଦ୍ରଧନୁ ଓ ବିଜୁଳି ପତ୍ରିକାକୁ କେନ୍ଦ୍ର କରି ଉଞ୍ଜୀପ୍ତ ବିବାଦ କଥା ମଧ୍ୟ କଳାବତୀ ଲକ୍ଷ୍ୟ କରିଛନ୍ତି । ପରେ ସେ ସ୍ୱଦେଶକୁ ଫେରି ଆସି ବିବାହ କରି ସୁଖରେ କାଳଯାପନ କରନ୍ତି । ଅବଶ୍ୟ ଉପନ୍ୟାସର ଚରିତ୍ର-ଚିତ୍ରଣ, ବିଷୟବିନ୍ୟାସ ଅଥବା ମାନସିକ ସଂଘର୍ଷ ଏ ପୁସ୍ତକରେ ଦୁର୍ଲଭ । ତେବେ ଲେଖକ କଳାବତୀର ଭ୍ରମଣ ଛଳରେ ଭାରତୀୟ ସାମାଜିକ ଜୀବନର ଏକ ଚମତ୍କାର ଚିତ୍ର ପରିବେଷଣ କରିଛନ୍ତି । ଏହା ଇତିହାସ ପରି ବର୍ଣ୍ଣିତ ହୋଇନାହିଁ । ଗଳ୍ପ ଛଳରେ ବିଭିନ୍ନ ସ୍ଥାନର ଚରିତ୍ରଗୁଡ଼ିକ ମଧ୍ୟ ପ୍ରକାଶିତ ହୋଇଛି । ସ୍ଥାନେ ସ୍ଥାନେ ବର୍ଣ୍ଣନାଗୁଡ଼ିକ ମଧ୍ୟ ଅତ୍ୟନ୍ତ ମନୋଜ୍ଞ ହୋଇଅଛି । 'କଳାବତୀ'ର ରୂପ ବର୍ଣ୍ଣନା ପାଠ କଲେ 'ବିବାସିନୀ' ଅଥବା 'ପଦ୍ମମାଳୀ'ର କଥା ସ୍ମରଣ ହୋଇଯାଏ । କଳାବତୀର ରୂପ ଏହିପରି—"ତୁମ ମୁଖ ବାସନାରେ ପଦ୍ମକୁ, ଶୀତଳ ଓ କାନ୍ତିରେ ଶଶଧରକୁ ନିନ୍ଦା କରୁଅଛି; ତୁମ ହସ କୁମୁଦକୁ ଜିଣିଅଛି । ତୁମର ଅଧର-ରକ୍ତିମା ଅବଲୋକନରେ ପଲ୍ଲବ, ବନ୍ଧୁଳି ଓ ଜବା ଏମାନେ ଲଜ୍ଜିତ ହୋଇଅଛନ୍ତି । ତୁମ୍ଭ ନେତ୍ରର ଚଞ୍ଚଳତା ଦେଖି ମୀନଗଣ ଲଜ୍ଜିତ ହୋଇ ଜଳରେ, ମୃଗମାନେ ବନରେ ସଦା ବାସ କରି ରହି ଅଛନ୍ତି; ଭ୍ରୂଲତାର ଠାଣି ଦେଖି ରତିପତି ଆପଣାର ଧନୁ ପରିତ୍ୟାଗପୂର୍ବକ ତୁମ୍ଭ ଆଶ୍ରୟଗ୍ରାହୀ ହୋଇ ଅଛନ୍ତି; ତୁମ୍ଭ ସୁଗନ୍ଧକୁନ୍ତଳ ଦେଖି ମେଘମାଳା ଲଜ୍ଜାଭୟରେ ଆକାଶ ଓ ପର୍ବତମାନଙ୍କ ଆଶ୍ରୟ ନେଇ ଅଛନ୍ତି ।"*

ଆଲୋଚ୍ୟ ଉଦ୍ଧୃତାଂଶରୁ ପ୍ରଥମ କାଳର ଓଡ଼ିଆ ଉପନ୍ୟାସର କାବ୍ୟିକତା ଲକ୍ଷ୍ୟ କରିବାର କଥା । ପ୍ରାଚୀନ ରୀତିଯୁଗର ପ୍ରଭାବରୁ ଏହି ଲେଖକଗଣ ମୁକ୍ତ ହୋଇ ପାରି ନ ଥିଲେ । ତେବେ ପ୍ରଥମ କାଳର ଓଡ଼ିଆ ଉପନ୍ୟାସ 'କଳାବତୀ' ସମଗ୍ର ଭାରତୀୟ ଜୀବନର ଚିତ୍ର ପ୍ରଦାନ କରିଥିବାରୁ ସାହିତ୍ୟର ଇତିହାସରେ ଏହାର ଏକ ସ୍ୱତନ୍ତ୍ର ମୂଲ୍ୟବୋଧ ସ୍ୱୀକାର କରିବାକୁ ହେବ ।

---

* କଳାବତୀ-୧୯୦୨-ପୃ୧-୨

# ଭୀମାଭୂୟାଁ—ଉପନ୍ୟାସ ସାହିତ୍ୟରେ ଏକ ବିସ୍ମୟ :

୧୯୦୮ ମସିହାରେ 'ଓଡ଼ିଆ ଓ ନବ ସମ୍ବାଦ' ପତ୍ରିକାର ନଭେମ୍ବର ମାସ ୨୫ ତାରିଖ ସଂଖ୍ୟାରେ ଭୀମାଭୂୟାଁ ସମ୍ପର୍କରେ ପ୍ରଥମେ ବିଜ୍ଞାପନ ପ୍ରକାଶିତ ହୋଇଥିଲା । ପ୍ରକାଶିତ ହେଲାପରେ ଭୀମାଭୂୟାଁ ତତ୍କାଳୀନ ପତ୍ରିକାଗୁଡ଼ିକର ଦୃଷ୍ଟି ଆକର୍ଷଣ କଲା । ଗୋଟିଏ ବିଖ୍ୟାତ ସାପ୍ତାହିକ ସମାଲୋଚନା କରି ଲେଖିଥିଲେ ଯେ, ଉତ୍କଳର ଛାପାଖାନାବାଟେ ଯେତେଗୁଡ଼ିଏ ଗଳ୍ପ ବା ଉପନ୍ୟାସ ବାହାରି ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୋଇଅଛି, ଭୀମାଭୂୟାଁ ବହୁଗୁଣରେ ସମସ୍ତଙ୍କୁ ଜିଣିଅଛି । କ୍ଷୁଦ୍ର ହେଲେହେଁ ଏହି ପୁସ୍ତକ ଖଣ୍ଡି ଉତ୍କଳ ସାହିତ୍ୟ-ଭଣ୍ଡାରର ରତ୍ନବିଶେଷ ବୋଲିଲେ କିଛି ବେଶି ବୋଲାଗଲା ନାହିଁ । ଏହାର ଭାଷା ଗିଲିଟିହୀନ ସରଳ ଓଡ଼ିଆ । ଏହାର ଭାବ ନିର୍ଦ୍ଦୋଷ ଖାଣ୍ଟି ଓଡ଼ିଆ, ଅନୁବାଦ, ଅନୁକରଣ, ଅପହରଣର ଅପଚ୍ଛାୟା ନ ଥିବାରୁ ଲେଖା ବଡ଼ ସୁନ୍ଦର, ମନୋହର ଓ ହୃଦୟଗ୍ରାହୀ ହୋଇଅଛି । ଯେଉଁମାନେ ଓଡ଼ିଆରେ ଭଲ ବହି ନାହିଁ ବୋଲି ଓଡ଼ିଆ ପଢ଼ନ୍ତି ନାହିଁ, ଓଡ଼ିଆ ବହି ଦେଖିଲେ ଘୃଣାରେ ସ୍ପର୍ଶ କରନ୍ତି ନାହିଁ ସେ ସମସ୍ତମାନଙ୍କୁ ସମାଦର କରି ଅନୁରୋଧ କରୁଅଛୁଁ, ଏ ବହିଖଣ୍ଡି ବେଳେମାନେ ପଢ଼ିବାର ଶ୍ରମ ସ୍ୱୀକାର କଲେ କାହାରି ସମୟ ବୃଥା ଯିବ ନାହିଁ । ଏ ପୁସ୍ତକ ବାହାରିବାକୁ ଦେଖି ଆଶା ହେଉଅଛି ଯେ, ଓଡ଼ିଆ ଭାଷାର, ଓଡ଼ିଆ ସାହିତ୍ୟର ଦରିଦ୍ରତା ଘୁଞ୍ଚିବାର ଦିନ ବେଶି ଦୂର ନୁହେଁ । ✻ ସମକାଳୀନ ଓଡ଼ିଆ ସାହିତ୍ୟରେ ଯେଉଁ କେତେଜଣ ପାଠୋପଯୁକ୍ତ ପୁସ୍ତକ ପ୍ରକାଶ କରୁଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ବଙ୍ଗଳା ଭାଷାଦ୍ୱାରା ପ୍ରଭାବିତ ହୋଇ ପଡ଼ୁଥିଲେ । ସେଥିପାଇଁ 'ଉତ୍କଳ ଦୀପିକା' ଏବଂ ଓଡ଼ିଆ ଓ ନବ ସମ୍ବାଦ ଏହାର ତୀବ୍ର ସମାଲୋଚନା କରିଛନ୍ତି । ତେଣୁ ଭୀମାଭୂୟାଁର ମୌଳିକ ବିଷୟବିନ୍ୟାସ ଏବଂ ଶୁଦ୍ଧ ଓଡ଼ିଆ ଭାଷା ସମାଲୋଚକ ଏବଂ ରସିକ ପାଠକମାନଙ୍କର ଯେ ଦୃଷ୍ଟି ଆକର୍ଷଣ କରିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଭୂୟାଁ ପରିବାରର ଏହି

✻ ଓଡ଼ିଆ ଓ ନବସମ୍ବାଦ-୧୦।୨।୧୯୦୯

ଜୀବନଚରିତ କେବଳ ଓଡ଼ିଆ ସାହିତ୍ୟରେ ନୁହେଁ, ସମକାଳୀନ ଭାରତୀୟ ସାହିତ୍ୟରେ ମଧ୍ୟ ଅନନ୍ୟସାଧାରଣ । ବସ୍ତୁବିନ୍ୟାସରେ ମୌଳିକତା ଏବଂ ଘଟଣାପ୍ରବାହରେ ମାନସିକ ସଂଘର୍ଷର ସାର୍ଥକ ବର୍ଣ୍ଣନାଯୋଗୁ ଛମାଭୂୟାଁ ଉପନ୍ୟାସ ବାସ୍ତବିକ ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଗ୍ରହଣ କରିଅଛି । ତତ୍କାଳୀନ ଭାରତୀୟ ସାହିତ୍ୟର ଉପନ୍ୟାସଗୁଡ଼ିକ ପ୍ରାୟତଃ ଐତିହାସିକ କଥାବସ୍ତୁକୁ ଆଧାର କରି ରୂପାୟିତ, ମାତ୍ର ଓଡ଼ିଆ ସାହିତ୍ୟର ସୌଭାଗ୍ୟ ଯେ, ପ୍ରାଥମିକ ସ୍ତରରେ ସୁଦ୍ଧା ଆଧୁନିକତମ ସମାଜଧର୍ମୀ ଉପନ୍ୟାସର ପରୀକ୍ଷା ଓ ପ୍ରତିଷ୍ଠା ସମ୍ଭବ ହୋଇ ପାରିଥିଲା ।

ଏହା ପରେ ଆରମ୍ଭ ହୋଇଥିଲା ଓଡ଼ିଆ ଉପନ୍ୟାସର 'ବିକାଶ କାଳ' ।



# ଓଡ଼ିଆ ଉପନ୍ୟାସ

## ସ୍ଥିତି ଓ ପ୍ରବୃତ୍ତି

୧୮୭୭-୭୮ ଖ୍ରୀଷ୍ଟାବ୍ଦରେ ରାମଶଙ୍କରଙ୍କର ଲିଖିତ ଅପୂର୍ଣ୍ଣ ଉପନ୍ୟାସ ସୌଦାମିନୀର ଜନ୍ମଠାରୁ ୧୯୨୭ ସାଲ ପର୍ଯ୍ୟନ୍ତ ଉପନ୍ୟାସଗୁଡ଼ିକର ଜନ୍ମ-ଜାତକ ସାଧନ କଲେ ଅଳ୍ପ କେତେଗୋଟି ଉଲ୍ଲେଖଯୋଗ୍ୟ ଉପନ୍ୟାସ ଆଲୋଚନାର ପରିସର ମଧ୍ୟକୁ ଆସିଥାଆନ୍ତି । ଊନବିଂଶ ଶତାବ୍ଦୀର ଶେଷ-ଭାଗରେ ରାମଶଙ୍କର, ଉମେଶଚନ୍ଦ୍ର, ଫକୀରମୋହନ ଉପନ୍ୟାସ ରଚନାରେ ବ୍ରତୀ ହୋଇଥିଲେ । ମାତ୍ର ଫକୀରମୋହନ କେବଳ ଏ କ୍ଷେତ୍ରରେ ଅଧିକ ଆନ୍ତରିକତା ତଥା ପ୍ରତିଭାର ପରିଚୟ ପ୍ରଦାନ କରିଥିବା ଜଣାଯାଏ । ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ପ୍ରକାଶିତ "ମୁକୁର" ସାହିତ୍ୟପତ୍ରିକା ଆନୁକୂଲ୍ୟରେ 'ମୁକୁର ଉପନ୍ୟାସ ମାଳା' ପ୍ରକାଶିତ ହୋଇଥିଲା । ଏହି ଉପନ୍ୟାସ ମାଳାର ପ୍ରଥମ ଚାରିଜଣ ଲେଖକ ଲେଖିକା ଥିଲେ କୁନ୍ତଳା କୁମାରୀ ସାବତ, ଚିନ୍ତାମଣି ମହାନ୍ତି, ଚନ୍ଦ୍ରମଣି ଆଚାର୍ଯ୍ୟ ଏବଂ ଦୟାନିଧି ମିଶ୍ର । ଏମାନଙ୍କର ପ୍ରକାଶିତ ଉପନ୍ୟାସ ଗୁଡ଼ିକ ଯଥାକ୍ରମେ ହେଲା ପରଶମଣି, ବୁଲା ଫକୀର, ସଫଳ ସ୍ୱପ୍ନ ଓ ମାନଭଞ୍ଜନ । ଏଗୁଡ଼ିକ ୧୯୨୫ ସାଲ ପୂର୍ବରୁ ପ୍ରକାଶିତ ହୋଇ ସାରିଥିଲା । ସତ୍ୟବାଦୀ-ଦଳୀୟ ସାହିତ୍ୟିକ ଆନ୍ଦୋଳନର ନାନା କାରଣରୁ ଉପନ୍ୟାସ ବିକାଶପ୍ରାପ୍ତ ହୋଇପାରିନଥିଲା । କବି ଗୋପବନ୍ଧୁଙ୍କ 'ଧର୍ମପଦ' ପୁସ୍ତକର ମୁଖବନ୍ଧ ପାଠ କଲେ ଜଣାଯାଏ ଯେ, ଏହି କିଂବଦନ୍ତୀର ଅବଲମ୍ବନରେ ସେ ଖଣ୍ଡିଏ ଉପନ୍ୟାସ ଲେଖିବା ପାଇଁ ମନେ ମନେ ବିଚାରିଥିଲେ । ମାତ୍ର କାରାଗାରରେ ରହି ଏପରି ଦୀର୍ଘାବୟବ ଉପନ୍ୟାସ ରଚନାରେ ସେ ମନୋନିବେଶ କରିପାରି ନଥିଲେ । ତେଣୁ ଓଡ଼ିଆ ସାହିତ୍ୟ ଔପନ୍ୟାସିକ ଗୋପବନ୍ଧୁଙ୍କୁ ଚିରକାଳ ପାଇଁ ହରାଇ ବସିଲା । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ 'ସତ୍ୟବାଦୀ' ମାସିକ ପତ୍ର ଯଥେଷ୍ଟ ପ୍ରଭାବଶାଳୀ ହୋଇ-

ଥିଲେହେଁ କୌଣସି କାରଣରୁ ଗଳ୍ପ-ଉପନ୍ୟାସ ସୃଷ୍ଟି ପାଇଁ ପ୍ରେରଣା ଯୋଗାଇ ପାରି ନ ଥିଲା । ବିଂଶ ଶତାବ୍ଦୀର ଦୁଇଟି ଦଶକ ପରେ ଓଡ଼ିଆ ସାହିତ୍ୟରେ ଉପନ୍ୟାସ ସୃଷ୍ଟି ପାଇଁ ଏକ ଚଳଚଞ୍ଚଳତା ପ୍ରକାଶ ପାଇଲା । ୧୯୨୩ ସାଲରେ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ 'ସହକାର'ର ସମ୍ପାଦକ ଥିଲାବେଳେ ଏହି ପତ୍ରିକାର ୨ୟ ଭାଗ ୫ମ ସଂଖ୍ୟାରେ 'ଲୀଳାବସନ୍ତ' ଶୀର୍ଷକ ଏକ ଉପନ୍ୟାସର ପୁସ୍ତକ ସମାଲୋଚନା ପ୍ରକାଶିତ ହୋଇଥିଲା । ଏହି ଆଲୋଚନାରୁ ସମକାଳୀନ ଓଡ଼ିଆ ଉପନ୍ୟାସର ସ୍ଥିତି ଓ ପ୍ରକୃତି ସମ୍ପର୍କରେ କେତେକ ଧାରଣା ହେବା ସଙ୍ଗେ ସଙ୍ଗେ ଖାଣ୍ଟି ଓଡ଼ିଆ ଉପନ୍ୟାସ ସୃଷ୍ଟି ପାଇଁ ବ୍ୟାକୁଳତା ପ୍ରକାଶ ପାଇଥିଲା । ସେଥିରେ ଲେଖାଥିଲା—'ଉପନ୍ୟାସର ଭାଷା ଓଡ଼ିଆ ପରି ହୋଇଅଛି; ଅର୍ଥାତ୍ ଉପନ୍ୟାସଟି ପଢ଼ିଲେ ଓଡ଼ିଆ ଉପନ୍ୟାସ ଭଳି ବୁଝାଯାଏ । ସାଧାରଣତଃ ଆମର ଆଜି କାଲିର ଓଡ଼ିଆ ଲେଖା ବଙ୍ଗଳା ଭୂତଦ୍ୱାରା ବହୁ ପରିମାଣରେ ଆକ୍ରାନ୍ତ । କିନ୍ତୁ ଏ ଉପନ୍ୟାସଟି ସେପରି ନୁହେଁ । ଭାଷା ସଂସ୍କୃତ ହୋଇଅଛି । ଅନେକ ସଂସ୍କୃତ ଶବ୍ଦ ଅଛି । ବିବାସିନୀ ଓ ପଦ୍ମମାଳୀ ଉପନ୍ୟାସର ଆଲୋଚନାବେଳେ ସେକାଳର ପତ୍ରପତ୍ରିକା ବଙ୍ଗଭାଷାପ୍ରଭାବିତ ବୋଲି ମତ ପ୍ରକାଶ କରିଥିଲେ । ତେଣୁ ମୌଳିକ ସଂସ୍କୃତ ଭାଷାପ୍ରତି ଆଦର ପ୍ରକାଶ ପାଇବା ସ୍ୱାଭାବିକ ।'

ତତ୍କାଳୀନ କେତେକ ତରୁଣ ସାହିତ୍ୟସେବୀଙ୍କ ପ୍ରତିଷ୍ଠିତ ସବୁଜ ସାହିତ୍ୟ ସମିତି ଓଡ଼ିଆ ଉପନ୍ୟାସର ବିକାଶରେ ଅଗ୍ରଣୀ ହୋଇଥିଲେ । ଏହି କାଳରେ ପ୍ରତିଷ୍ଠିତ ଦୁଇଟି ସାହିତ୍ୟ ପତ୍ରିକା ଯଥାକ୍ରମେ ବାଳକୃଷ୍ଣ କରଙ୍କ ସମ୍ପାଦିତ ସହକାର ଏବଂ ବିଶ୍ୱନାଥ କରଙ୍କ ସମ୍ପାଦିତ 'ଉତ୍କଳ ସାହିତ୍ୟ' ଯଥେଷ୍ଟ ପ୍ରେରଣା ପ୍ରଦାନ କରିଥିଲା ।

୧୯୨୪-୨୭ ସାଲ ମଧ୍ୟରେ ଉତ୍କଳ ସାହିତ୍ୟରେ ସବୁଜ ସାହିତ୍ୟ ସମିତିର 'ବାସନ୍ତୀ' ଉପନ୍ୟାସ ଧାରାବାହିକ ଭାବରେ ପ୍ରକାଶିତ ହୋଇ-ଥିଲା । ତାହା ୧୯୩୧ ଖ୍ରୀଷ୍ଟାବ୍ଦରେ ପୁସ୍ତକାକାରରେ ଆତ୍ମପ୍ରକାଶ କଲା । ଏହି ଉପନ୍ୟାସଟି ପ୍ରକାଶିତ ହେବାରେ ଏକ ନୂତନତ୍ୱ ଥିଲା । ବଙ୍ଗଳା ସାହିତ୍ୟର 'ବାରୋୟାରୀ' ଉପନ୍ୟାସ ପରି ଏକାଧିକ ଲେଖକ ଲେଖିକା ବାସନ୍ତୀ ଉପନ୍ୟାସଟି ଲେଖିଥିଲେ । 'ଉତ୍କଳ ସାହିତ୍ୟ' ପତ୍ରିକାର ୨୮ଶ

ଭାଗ ୨ୟ ସଂଖ୍ୟାରେ ବାସନ୍ତୀ ଉପନ୍ୟାସ ପାଇଁ ଏକ ନିବେଦନ ପ୍ରକାଶିତ ହୋଇଥିଲା । ତତ୍କାଳୀନ ଉପନ୍ୟାସ ସମ୍ପର୍କରେ ଏହି ନିବେଦନଟି ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ତାହା ହେଲା ଉତ୍କଳର କେତେଜଣ ତରୁଣ ଲେଖକ ମିଳି ମିଶି ଖଣ୍ଡିଏ ଉପନ୍ୟାସ ଲେଖିବାକୁ ସ୍ଥିର କରିଅଛନ୍ତି । ବଙ୍ଗଳାର ବାରୋୟାରୀ ଉପନ୍ୟାସଟି ଯେପରି ବାରଜଣ ସାହିତ୍ୟିକଙ୍କ ଦ୍ୱାରା ରଚିତ, ଏ ଉପନ୍ୟାସଟି ସେହିପରି ଉତ୍କଳର କେତେଜଣ ପୁରାତନ ଓ ନୂତନ ସାହିତ୍ୟିକଙ୍କ ଦ୍ୱାରା ରଚିତ ହୋଇ ପ୍ରକାଶିତ ହେବ ।

× × ×

ଶ୍ରୀଯୁକ୍ତ ନନ୍ଦକିଶୋର ବଳ ମହାଶୟ ଏକ ସମୟରେ 'କନକଲତା' ନାମରେ ଗୋଟିଏ ଉପନ୍ୟାସ ଲେଖିଥିଲେ । ସମାପ୍ତ ହୋଇଥିଲେ ଏ ଖଣ୍ଡିକ ଓଡ଼ିଶାର ଶ୍ରେଷ୍ଠ ଉପନ୍ୟାସମାନଙ୍କ ମଧ୍ୟରେ ସ୍ଥାନ ପାଇଥାନ୍ତା ବୋଲି କେହି କେହି ବିଶ୍ୱାସ କରନ୍ତି । ଶ୍ରୀଯୁକ୍ତ ବାଙ୍କନିଧି ପଟ୍ଟନାୟକ ଓ ଶ୍ରୀଯୁକ୍ତ ଦିବ୍ୟସିଂହ ପାଣିଗ୍ରାହୀଙ୍କର କ୍ଷୁଦ୍ର ଗଳ୍ପ ଲେଖିବାର ଶକ୍ତି ଓ ସୁଖ୍ୟାତି ଅଛି । ଶ୍ରୀମତୀ କୁନ୍ତଳାକୁମାରୀ ସାବତଙ୍କ ଭ୍ରାନ୍ତି ଉତ୍କୃଷ୍ଟ ଗଳ୍ପ । ଶ୍ରୀମତୀ ସୁପ୍ରଭା କର ଗୋଟିଏ ଚମତ୍କାର ଗଳ୍ପ ଲେଖିଥିଲେ । ଶ୍ରୀମତୀ କୋକିଳ ଦେବୀଙ୍କର କେତେଗୋଟି ସୁନ୍ଦର ଗଳ୍ପ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । ଶ୍ରୀମତୀ ସରଳା ଦେବୀଙ୍କର ଲେଖିବାର ହାତ ଅଛି । ଯଦିଚ, ଏପର୍ଯ୍ୟନ୍ତ ତାଙ୍କର କୌଣସି ଗଳ୍ପ ଦେଖାଯାଇ ନାହିଁ । ଶ୍ରୀଯୁକ୍ତ ଦୟାନିଧି ମିଶ୍ର ଏକ ସମୟରେ ଐତିହାସିକ ଗଳ୍ପ ଲେଖୁଥିଲେ । ଶ୍ରୀଯୁକ୍ତ ଉପେନ୍ଦ୍ର ପ୍ରସାଦ ମହାନ୍ତିଙ୍କର ସାମାଜିକ ଚିତ୍ର-ଗୁଡ଼ିକ ଉପାଦେୟ ହୋଇଥାଏ । ଏହା ବ୍ୟତୀତ କେତେକ 'ନୀରବ ସାଧକ' ମଧ୍ୟ ଉତ୍କଳରେ ଅଛନ୍ତି । ଏମାନେ ଇଚ୍ଛାକଲେ ଓଡ଼ିଶାରେ ସାହିତ୍ୟକୁ ସମୃଦ୍ଧ କରିପାରନ୍ତେ ।

କିଏ କିଏ ଏହି ଉପନ୍ୟାସଟି ଲେଖିବାକୁ ଇଚ୍ଛୁକ ଅଛନ୍ତି, ତାହା ଶୀଘ୍ର ଜାଣି ପାରିଲେ ଅନୁଷ୍ଠାତାମାନେ ବିଶେଷ ଉପକୃତ ହେବେ ।

ଏହି ଉଦ୍ଧୃତାଂଶଟିରୁ ସେ କାଳର କଥା-ସାହିତ୍ୟିକମାନଙ୍କର ପରିଚୟ ମିଳୁଅଛି । ଏମାନଙ୍କ ମଧ୍ୟରୁ କେତେଜଣ ସାହିତ୍ୟର ଇତିହାସରେ ଉଜ୍ଜ୍ୱଳ

ଯଶର ଅଧିକାରୀ ହୋଇଅଛନ୍ତି । ସ୍ମରଣ କରାଯାଇପାରେ ଯେ, ବାସନ୍ତୀ ଉପନ୍ୟାସର ପ୍ରଥମ ଅଧ୍ୟାୟ ଲେଖିଥିଲେ ଭବିଷ୍ୟତରେ ପ୍ରସିଦ୍ଧ ଉପନ୍ୟାସ 'ମାଟିର ମଣିଷ'ର ପ୍ରଣେତା ଶ୍ରୀଯୁକ୍ତ କାଳନ୍ଦୀଚରଣ ପାଣିଗ୍ରାହୀ ।

'ଉତ୍କଳ ସାହିତ୍ୟ'ର ସମକାଳୀନ ହେଲେହେଁ 'ମୁକୁର' ସାହିତ୍ୟ ପତ୍ରିକା ଓଡ଼ିଆ ଉପନ୍ୟାସ ସୃଷ୍ଟି ପାଇଁ ପ୍ରଥମେ ବ୍ୟଗ୍ରତା ପ୍ରକାଶ କରିଥିଲେ । ଏହି ପତ୍ରିକାର ୨୮ ଶ ଭାଗ ୪ର୍ଥ ସଂଖ୍ୟାରେ ସମ୍ପାଦକୀୟ ଟିପ୍ପଣୀରେ ଲେଖାଥିଲା "ଅନେକ ଉପନ୍ୟାସ ଲେଖାକୁ ଅତି ସହଜ ବ୍ୟାପାର ବୋଲି ମନେ କରିଥାନ୍ତି । ଆମ୍ଭମାନଙ୍କ ମତରେ ସେମାନେ ସମ୍ପୂର୍ଣ୍ଣ ଭ୍ରାନ୍ତ । ଉପନ୍ୟାସର ଘଟଣା ଚରିତ୍ର ଓ କାଳ୍ପନିକତାରେ ବାସ୍ତବତାର ସୃଷ୍ଟି ପ୍ରଦାନ ଯେ କୌଣସି ଲେଖକ ହାତରେ ହୋଇ ପାରିବ ନାହିଁ । ସେଥି ନିମନ୍ତେ ଯେଉଁ ନିଷ୍ଠା ଓ ଗବେଷଣା ଦରକାର, ତାହା କେତେଜଣଙ୍କଠାରେ ଅଛି ? ଉପରେ ଉପରେ ରହି କବି-ଯଶଃ-ପ୍ରାର୍ଥୀ ହେବା ସମ୍ପୂର୍ଣ୍ଣ ଉପହାସାସ୍ପଦ । ଓଡ଼ିଆ ମୌଳିକ ଉପନ୍ୟାସର ଅଭାବରେ ଏହି ସଂଖ୍ୟାରେ ଶ୍ରୀ ଗୋପୀନାଥ ଧଳଙ୍କର ସଂସ୍କୃତ କଥା ସରିତ୍ ସାଗରର ଅନୁବାଦ ପ୍ରକାଶିତ ହୋଇଛି । ମୁକୁର ପତ୍ରିକାର ୧୭ଶଭାଗ ପ୍ରଥମ ସଂଖ୍ୟାରୁ ଦୟାନିଧି ମିଶ୍ର "ରାଣା ପ୍ରତାପସିଂହ" ଐତିହାସିକ ଉପନ୍ୟାସ ଧାରାବାହିକ ଭାବରେ ପ୍ରକାଶ କରିଥିଲେ । ଚୌଧୁରୀ ଜାନକୀନାଥ ରାୟଗୁରୁ ମହାପାତ୍ର ଉପନ୍ୟାସ ଆକାରରେ 'ସୀତା ବନବାସ'ର ପ୍ରଥମ ପରିଚ୍ଛେଦ ଏହି ସଂଖ୍ୟାରେ ଲେଖିଥିଲେ । ଉତ୍କଳ ସାହିତ୍ୟ ପତ୍ରିକାର ୩୦ ଭାଗ ୪୦ ଭାଗ ୪ର୍ଥ ସଂଖ୍ୟାରେ ଶ୍ରୀ ନବୀନ କୁମାର ଶର୍ମା 'ଅଜାତି' ଶୀର୍ଷକ ଏକ ଉପନ୍ୟାସ କ୍ରମାନ୍ୱୟରେ ପ୍ରକାଶ କରିଥିବା ଜଣାଯାଏ । ଅଧ୍ୟାପକ ଜନାର୍ଦ୍ଦନ ମହାନ୍ତିଙ୍କ ଲିଖିତ 'ନୈବେଦ୍ୟ' ଉପନ୍ୟାସ ଏହି କାଳରେ ଉତ୍କଳ ସାହିତ୍ୟରେ ଆତ୍ମପ୍ରକାଶ କରିଥିଲା । ଶଶୀଭୂଷଣ ରଥ ନିଜ ସମ୍ପାଦିତ 'ପ୍ରଦୀପ' ସାହିତ୍ୟ ପତ୍ରରେ ଶ୍ରୀ ଚିନ୍ତାମଣି ମହାନ୍ତିଙ୍କ 'ଜନୈସପ୍ତା' ଉପନ୍ୟାସ ପ୍ରକାଶ କରିଥିଲେ । 'ସହକାର' ପତ୍ରିକାର ଦଶମ ଭାଗ ଦଶମ ସଂଖ୍ୟାରେ ବିଶ୍ୱବିଖ୍ୟାତ ଫରାସୀ ଉପନ୍ୟାସ 'ନାନା'ର ଓଡ଼ିଆ ଭାଷାନ୍ତର ଆରମ୍ଭ କରିଥିଲେ ଶ୍ରୀ ଜାନକୀନାଥ ରାୟଗୁରୁ । ସେହିପରି ଏହି ପତ୍ରିକାରେ ସେହି ବର୍ଷ ସତ୍ୟନାରାୟଣ ରାଜଗୁରୁଙ୍କର "କର୍ମକ୍ଷେତ୍ର" ଉପନ୍ୟାସ ଧାରାବାହିକ

ଆତ୍ମପ୍ରକାଶ କରିଥିଲା । ଏହା ଏକ ଐତିହାସିକ ଉପନ୍ୟାସ । ମରହଟ୍ଟା ରାଜତ୍ୱକାଳରେ ଓଡ଼ିଶାରେ ଉପରେ ଇଂରେଜ ଆଧିପତ୍ୟ ପ୍ରବେଶ କରୁଥିଲା ଏବଂ ସେତେବେଳେ ଉତ୍କଳର ଖଣ୍ଡାୟିତ ପତିଗଣ ଉପରେ ସ୍ୱାଧୀନତା ପାଇଁ ଉଦ୍ୟମ କରିଥିଲେ—ଏହି କଥାବସ୍ତୁର ଭୂମିକା ଉପରେ 'କର୍ମକ୍ଷେତ୍ର' ଉପନ୍ୟାସର ପରିକଳ୍ପନା । ମୋଟ ଉପରେ ବିଭିନ୍ନ ପତ୍ର ପତ୍ରିକାରେ ଉପନ୍ୟାସ ସୃଷ୍ଟି କରାଯାଇଥିଲା ।

ଏହି ସମୟରେ 'ସହକାର' ୧୦ମ ଭାଗ ୧୨ଶ ସଂଖ୍ୟାରେ ଏକ ନିବେଦନ ପ୍ରକାଶ କଲେ । ବର୍ଷକୁ ଅନ୍ତତଃ ୬ଖଣ୍ଡ ଉପନ୍ୟାସ ପ୍ରକାଶିତ ହେବ ବୋଲି ସେଥିରେ ଆଶା କରାଯାଇଥିଲା । ବୋଧହୁଏ ୧୯୨୯ ସାଲରୁ 'ସହକାର' ଆନୁକୂଲ୍ୟରେ ଏହି ଆନନ୍ଦଲହରୀ ଉପନ୍ୟାସମାଳାର ସୃଷ୍ଟି । ଏହି ଉପନ୍ୟାସଗୁଡ଼ିକ 'ଭାରତୀ' ପତ୍ରିକା ଶିରୋନାମାରେ ପ୍ରକାଶିତ ହେଉ-ଥିଲା । ବର୍ଷାଧିକକାଳ ଏହି ଆନନ୍ଦଲହରୀ ଉପନ୍ୟାସମାଳାରେ ଗୋବିନ୍ଦ ତ୍ରିପାଠୀଙ୍କ 'ପତିତାର ଆତ୍ମକଥା', କାଳନ୍ଦୀ ଚରଣଙ୍କ 'ମାଟିର ମଣିଷ', ଚିନ୍ତାମଣି ମିଶ୍ରଙ୍କ 'ଜଗୁଆ ମା' ଓ 'ବିବାହ ରହସ୍ୟ', ଗୋଦାବରୀଶ ମହାପାତ୍ରଙ୍କ 'ପ୍ରେମପଥେ', କେହି ଛଦ୍ମବେଶୀ ଯୌବନଯାତ୍ରୀଙ୍କ 'ବୀରଯୁବକ' 'ବନ୍ଦୀରମାୟା', ହରିଶ୍ଚନ୍ଦ୍ର ବଡ଼ାଲଙ୍କ 'ଚିଠିର ଜବାବ', ହରେକୃଷ୍ଣ ମହତାବଙ୍କ 'ନୂତନଧର୍ମ' କାହ୍ନୁଚରଣ ମହାନ୍ତିଙ୍କ 'ନିଷ୍ପତ୍ତି' ପ୍ରଭୃତି ପ୍ରକାଶିତ ହେଲା । ଆଧୁନିକ ଯୁଗର ଅନେକ ପ୍ରତିଷ୍ଠିତ ଔପନ୍ୟାସିକ ଏହି ଆନନ୍ଦ-ଲହରୀ ଉପନ୍ୟାସ ମାଳାର ସହଯୋଗୀ ଲେଖକ ଥିଲେ ।

ପ୍ରକୃତପକ୍ଷେ ୧୯୨୫ ସାଲ ପରେ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏକ ଆନ୍ଦୋଳନ ଆରମ୍ଭ ହେଲା । ଗୋଦାବରୀଶ ମିଶ୍ର, ଲକ୍ଷ୍ମୀଧର ନାୟକ କମଳାକାନ୍ତ ଦାସ, ରାମପ୍ରସାଦ ସିଂ, ଚକ୍ରଧର ମହାପାତ୍ର, ରାମଚନ୍ଦ୍ର ଆଚାର୍ଯ୍ୟ, ଶ୍ରୀଧର ମହାପାତ୍ର, ରାଜକିଶୋର ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, ଚନ୍ଦ୍ରମଣିଦାସ ପ୍ରଭୃତି ଲେଖନୀ ଚାଳନା କରିଥିଲେ । ଏହି ଦଳରେ ଜଗବନ୍ଧୁ ମହାପାତ୍ର, ଅନନ୍ତ ପ୍ରସାଦ ପଣ୍ଡା, ବଟକୃଷ୍ଣ ପ୍ରହରାଜ, ଈଶ୍ୱର ସାହୁ, ତାରଣୀଚରଣ ରଥ ପ୍ରଭୃତି ମଧ୍ୟ ଥିଲେ । ପ୍ରକୃତ ଇତିହାସ ଲିପିବଦ୍ଧ ହୋଇ ନ ଥିବାରୁ ଅନେକ ଔପନ୍ୟାସିକ ଆଜି ବିସ୍ମୃତ ପ୍ରାୟ । ତାରଣୀଚରଣ ଐତିହାସିକ ଭାବରେ ସୁପରିଚିତ । ମାତ୍ର ତାଙ୍କର ଅର୍ଦ୍ଧପୂର୍ଣ୍ଣ ଉପନ୍ୟାସ କେତେଜଣ ସ୍ମରଣ କରନ୍ତି ! ସେହିପରି ଈଶ୍ୱର ସାହୁଙ୍କ 'ରୁଣକ୍ୟ', ଶ୍ରୀଧର

ମହାପାତ୍ରଙ୍କ 'ରକ୍ତ ଗୋଲାପ', ଚନ୍ଦ୍ରମଣି ମିଶ୍ର ଓ ଦୟାନିଧି ମିଶ୍ରଙ୍କ ଉପନ୍ୟାସଗୁଡ଼ିକ ବା ଏହିପରି ବହୁ ଲେଖକ ଆଜିର ଆଲୋଚନା-ପଥରେ ସ୍ମରଣ ହୁଅନ୍ତିନାହିଁ । ସତ୍ୟନାରାୟଣ ରାଜଗୁରୁଙ୍କ 'କାମିନୀ' ଉପନ୍ୟାସ ପରେ ଶ୍ରୀଧର ମହାପାତ୍ରଙ୍କ 'ରକ୍ତଗୋଲାପ' ଗଞ୍ଜାମର ଇତିହାସକୁ ଭୂମିକା କରି ରଚିତ । ୧୯୩୩ ଖ୍ରୀଷ୍ଟାବ୍ଦରେ ରାମପ୍ରସାଦ ସିଂହଙ୍କ ସମ୍ପାଦିତ "ଯୁବକ" ପତ୍ରିକାରେ 'ରକ୍ତଗୋଲାପ' ତିନିଗୋଟି ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକ ରଚନା କଲାବେଳେ ଲେଖକ ତାରିଣୀ ଚରଣଙ୍କ ଘୁମୁସରର ଇତିହାସ ଏବଂ Prisoner of Zenda ପୁସ୍ତକକୁ ଅବଲମ୍ବନ ସ୍ୱରୂପ ଗ୍ରହଣ କରିଥିଲେ । ଏହି କାଳର ଔପନ୍ୟାସିକଗଣ ଅନୁବାଦକୁ ଆକ୍ଷରିକ ରୂପେ ସ୍ୱୀକାର ନ କରି ଆହରଣ ଅଥବା ଅବଲମ୍ବନ ସ୍ୱରୂପ ଗ୍ରହଣ କରୁଥିଲେ ଏବଂ ସମ୍ପୂର୍ଣ୍ଣ ଭାରତୀୟ ଜୀବନ ସହିତ ମିଶାଇ ଦେଉଥିଲେ । ସତ୍ୟବାଦୀ ଗୋଷ୍ଠୀର ପଣ୍ଡିତ ଗୋଦାବରୀଶ ମିଶ୍ର ଏକାଧିକ ଉପନ୍ୟାସ ପାଶ୍ଚାତ୍ୟ ଉପନ୍ୟାସ ଅବଲମ୍ବନରେ ରଚନା କରିଥିଲେହିଁ ପ୍ରତ୍ୟେକଟିର କଥାବସ୍ତୁ ଭାରତୀୟ ପାରିପାର୍ଶ୍ୱ ଅନୁସାରେ ପ୍ରସ୍ତୁତ ହୋଇଥିଲା । ଉଦାହରଣ ସ୍ୱରୂପ ଦାସତ୍ୱମୋଚନ । ୧୮୧୭, ଅଦ୍ଭିଗିଣା, ପଚାନ୍ତର ପ୍ରଭୃତି ଯଥାକ୍ରମେ Up From Slavery; A Tale of Two Cities, କଲ୍, ଡ଼ମିଲଟରେବାଲ ଡକ୍ଟର ଜେକଲ ଆଣ୍ଡ ମିଷ୍ଟର ହାଇଡ଼ ପ୍ରଭୃତି ପୁସ୍ତକର ଅବଲମ୍ବନ ମାତ୍ର । ସେହିପରି ଗୋଦାବରୀଶ ମହାପାତ୍ରଙ୍କର 'ରକ୍ତପାତ' ମେରିକଲିଙ୍କର 'ଭେଣ୍ଡେଟା' ପୁସ୍ତକର କଥାବସ୍ତୁ ଅନୁସାରେ ପରିକଳ୍ପିତ । ସେହିପରି ଟଲଷ୍ଟୟଙ୍କ ଏକ ଉପନ୍ୟାସ ଅବଲମ୍ବନରେ ଚନ୍ଦ୍ରମଣି ମିଶ୍ର 'ବିବାହର ରହସ୍ୟ' ରଚନା କରିଥିଲେ । ବହୁତ ପରେ ଉଦୟ ନାଥ ଷଡ଼ଙ୍ଗୀ ଆମେରିକାର ବିଖ୍ୟାତ ଉପନ୍ୟାସ ଅଙ୍କଲ, ଟମସ କ୍ୟାବିନ ପୁସ୍ତକର ଓଡ଼ିଆ ଅନୁବାଦ 'ଟମକକାଙ୍କ କୁଟୀର' ପ୍ରଣୟନ କରିଥିଲେ ।

ଅନୁସରଣଧର୍ମୀ ହେଉ ଅଥବା ମୌଳିକ ରଚନା ହେଉ, ଏ ଯୁଗର ଉପନ୍ୟାସଗୁଡ଼ିକ ଥିଲା ସର୍ବୋତଃଭାବରେ ସାମାଜିକ ଏବଂ ସଂସ୍କାରଧର୍ମୀ । ବିଂଶତି ମହାଯୁଦ୍ଧର ପଦଧ୍ୱନି ଓଡ଼ିଆ ସମାଜରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି କଲା, ତାହାର ପରିଣତିରେ ଜନ୍ମଗ୍ରହଣ କଲା "ଅତ୍ୟାଧୁନିକ ଓଡ଼ିଆ ଉପନ୍ୟାସ" ଯାହାର ଆଲୋଚନା ଏକ ସ୍ୱତନ୍ତ୍ର ଭୂମିକାର ଅପେକ୍ଷା ରଖେ ।

———

# ଓଡ଼ିଆ ଉପନ୍ୟାସ

## ନୂତନ ଦିଗ୍‌ବଳୟ

### ଗଣମୁଖୀ ଚେତନା ଓ ଉପନ୍ୟାସ :

ଊନବିଂଶ ଶତାବ୍ଦୀ ହେଉଛି ଭାରତବର୍ଷ ପକ୍ଷରେ ଏକ ଅଭ୍ୟୁଦୟର କାଳ । ଏହି ସମୟରେ ସାମାଜିକ, ଆଧ୍ୟାତ୍ମିକ ଏବଂ ସାଂସ୍କୃତିକ କ୍ଷେତ୍ରରେ ଗଭୀର ଆଲୋଡ଼ନ ସୃଷ୍ଟି ହୋଇଥିଲା । ଇଂରେଜ ଶିକ୍ଷା ଓ ପାଶ୍ଚାତ୍ୟଶାସନ ବ୍ୟବସ୍ଥା ସମାଜରେ ଗଣତାନ୍ତ୍ରିକ ଚେତନାବୋଧ ଜାଗ୍ରତ କରିବାପାଇଁ ସାହାଯ୍ୟ କରିଥିଲା । ପାଶ୍ଚାତ୍ୟ ବସ୍ତୁବାଦୀ ସଭ୍ୟତାର ଆଲୋକରେ ଭାରତୀୟ ମଧ୍ୟଯୁଗୀୟ ଚିନ୍ତାଧାରାର ଅମାଅନ୍ଧକାର ଅପସାରିତ ହେବାକୁ ବାଧ୍ୟ ହେଉଥିଲାବେଳେ ପ୍ରାଚୀନ ସଂସ୍କୃତ ଏବଂ ପାର୍ସିପାଠ୍ୟକ୍ରମ ପରିବର୍ତ୍ତେ ଇଂରେଜି ଶିକ୍ଷାବ୍ୟବସ୍ଥା ଜନମନରେ ଅଭୂତପୂର୍ବ ପରିବର୍ତ୍ତନ ସୃଷ୍ଟି କଲା । କାବ୍ୟଯୁଗର ସ୍ୱପ୍ନବିଳାସ ଆଉ ସାମାଜିକ ରୁଚିବୋଧକୁ ରେଖାପାତ କରିପାରିଲା ନାହିଁ । ପ୍ରାଚୀନର ସାହିତ୍ୟ ଥିଲା ରାଜଦରବାରର ଏବଂ ବ୍ରାହ୍ମଣ୍ୟବାଦୀ ଚଉପାଢ଼ୀର ଆଦରର ସାମଗ୍ରୀ । ବୋଧହୁଏ ଯୁଗଚେତନାର ଆହ୍ୱାନରେ ସାହିତ୍ୟ ଚାହୁଁ-ଥିଲା ଅଭିନବ ରୂପରେ ଆତ୍ମପ୍ରକାଶ କରିବାପାଇଁ, ସୀମିତ ପରିବେଶ ମଧ୍ୟରୁ ଲମ୍ଫ ପ୍ରଦାନ କରି ସମୂହ ମଧ୍ୟରେ ଆତ୍ମସତ୍ତା ହଜାଇ ଦେବାପାଇଁ । ଏହି ପ୍ରକାର ପ୍ରତିକ୍ରିୟାରୁ ଜନ୍ମଗ୍ରହଣ କଲା ଉପନ୍ୟାସ । ସେଥିପାଇଁ ଉପନ୍ୟାସ ଗଣମୁଖୀ ଚେତନାର ପରିଣତି ବୋଲି ଆଲୋଚକମାନେ ମତପ୍ରକାଶ କରି-ଅଛନ୍ତି । ଏହି କାଳରେ ପାଶ୍ଚାତ୍ୟ ସମାଜରେ ଯାନ୍ତ୍ରିକ ବିପ୍ଳବ ଆରମ୍ଭ ହୋଇ ଯାଇଛି । ପ୍ରାଚୀନ ସାମାଜିକ ଜୀବନ ଖଣ୍ଡବିଖଣ୍ଡ ହୋଇ ଜୀବନସଂଗ୍ରାମର ଆଟୋପ ମଧ୍ୟରେ ଭିନ୍ନରୂପ ପରିଗ୍ରହ କରିଅଛି । ଯୁଗଯୁଗର ବଦ୍ଧମୂଳ ଧାରଣା, ଅନ୍ଧବିଶ୍ୱାସ, ପ୍ରାଚୀନ ସଂସ୍କାର ବିରୁଦ୍ଧରେ ସମକାଳୀନ ସମାଜର ଲୋକେ ବିଦ୍ରୋହ ଘୋଷଣା କରିଦେଲେ ।

ପାଶ୍ଚାତ୍ୟ ଦେଶରେ ଶିଳ୍ପବିପ୍ଳବ ସତ୍ତ୍ୱେ ସାମାଜିକ ଜୀବନ ଅତ୍ୟନ୍ତ ଦୁଃସ୍ଥ ହୋଇପଡ଼ିଲା । କର୍ମଜଞ୍ଜାଳ ମଧ୍ୟରେ ସତେ ଯେପରି ମନୁଷ୍ୟ ହୋଇଗଲା ଏକ କଳମଣିଷ । ଅର୍ଥନୈତିକ ସଂଘର୍ଷ ଜାଗାୟ ଜୀବନକୁ ଅତ୍ୟନ୍ତ ଗଭୀର ଭାବରେ ପ୍ରଭାବିତ କଲା । ସାମନ୍ତବାଦୀ ଏବଂ ପୁଞ୍ଜୀବାଦୀ ସମାଜ ଦ୍ୱାରା ଶୋଷିତ ଏବଂ ଅତ୍ୟାଚାରିତ ମନୁଷ୍ୟ ଅନୁଭବକଲା ଯେ, ଏହି ସାମାଜିକ ବ୍ୟବସ୍ଥାକୁ ଭାଙ୍ଗିଦେବାକୁ ହେବ । ଏହି ସମାଜରେ ଗଣର ଅଧିକାରକୁ ସ୍ୱୀକାର ନ କଲେ ଆଉ ରକ୍ଷା ମିଳିବ ନାହିଁ । ତାହା ନ ହେଲେ ଜନସାଧାରଣଙ୍କ ଦାବୀ ସ୍ୱୀକୃତ ହେବନାହିଁ, ତାଙ୍କର ଦୁଃଖ ଦୂରୀକରଣ କରାଯାଇପାରିବ ନାହିଁ କିମ୍ବା ସେମାନଙ୍କର ସମସ୍ୟାର ଉପଯୁକ୍ତ ସମାଧାନ ହେବନାହିଁ ।

ଊନବିଂଶର ମଧ୍ୟଭାଗରେ ୧୮୫୭ ସାଲର ସିପାହୀବିଦ୍ରୋହ ଏକ ଉଲ୍ଲେଖଯୋଗ୍ୟ ଘଟଣା । କେତେକ ଐତିହାସିକ ଏହି ଘଟଣାକୁ ଭାରତୀୟମାନଙ୍କର ପ୍ରଥମ ସ୍ୱାଧୀନତା ସମର ବୋଲି କହିଥାଆନ୍ତି । ତେବେ ସେ ଯାହାହେଉ ଏକଥା ସତ୍ୟ ଯେ, ଭାରତର ସାମନ୍ତବାଦୀଗୋଷ୍ଠୀ ଏଠାରେ ସେମାନଙ୍କର ଅବସ୍ଥାନ ପାଇଁ ସର୍ବଶେଷ ସଂଗ୍ରାମ କରିଥିଲେ । ଏହି ସମୟରୁ କ୍ରମେ କ୍ରମେ ସାମାଜିକ ଜୀବନରୁ ରାଜାଙ୍କର ପ୍ରଭାବ ହ୍ରାସ ହେବାକୁ ଲାଗିଲା । ପାଶ୍ଚାତ୍ୟର ବୈଜ୍ଞାନିକ ଚିନ୍ତାଧାରା ଭାରତୀୟମାନଙ୍କର ମନରେ ସଂସ୍କାର ବାସନା ଜାଗ୍ରତ କଲା । ପାଶ୍ଚାତ୍ୟ ସାହିତ୍ୟର ବୌଦ୍ଧିକ ଚେତନା ସାହାଯ୍ୟ କଲା ପ୍ରତ୍ୟେକ ବିଷୟକୁ ବିଶ୍ଳେଷଣ କରି ପରୀକ୍ଷା କରିବା ପାଇଁ । ସେଥିପାଇଁ ସମଗ୍ର ସମାଜର ପ୍ରାଣ ଓ ମନରେ ନବଜାଗରଣ ସମ୍ଭବ ହୋଇଥିଲା । ତେଣୁ ଏକ ନୂତନ ମାନବଧର୍ମୀ ସାହିତ୍ୟ ସୃଷ୍ଟିପାଇଁ ପାଣିପାଗ ପ୍ରସ୍ତୁତ ହୋଇଗଲା । ଏହି ପାଣିପାଗରୁ ରୂପ ଗ୍ରହଣ କଲା ଉପନ୍ୟାସ ।

ବାସ୍ତବିକ୍ ଏ ହେଲା ଆତ୍ମଜାଗରଣର ଯୁଗ । ଅତୀତ ସାହିତ୍ୟର ମୂଳ ଆଭିମୁଖ୍ୟ ଥିଲା ରସାନୁଭୂତି । ସେଥିରେ ପାରିପାର୍ଶ୍ୱିକ ଚେତନାବୋଧ ଆଦୌ ନଥିଲା କହିଲେ ଚଳେ । ସେମାନେ କେବେହେଲେ ସମାଜସଚେତନ ନଥିଲେ । ଏ ଯୁଗର ଲେଖକ ନିଜକୁ ସମାଜର ପ୍ରବକ୍ତା ବୋଲି ଅନୁଭବ କଲା । ତେଣୁ ତାର ଚତୁର୍ଦ୍ଦିଗରେ କ୍ରିୟା ପ୍ରତିକ୍ରିୟାର ବାତାବରଣକୁ

ସେ ଅବହେଳା କରିପାରିଲେ ନାହିଁ । ବିଶେଷତଃ ଯୁଗଚେତନା ଏବଂ ଜନଜାଗରଣ ଯୋଗୁ ଏ ଯୁଗର ଜନସାଧାରଣ ନିଜ ବିଷୟରେ ବିଶେଷ ଆଗ୍ରହୀ ହୋଇ ପଡ଼ିଥିଲେ । ତେଣୁ ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ଭାରତୀୟ ସାହିତ୍ୟରେ ଉପନ୍ୟାସ ଜନ୍ମ ଗ୍ରହଣ କରିଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରଥମ ମରହାଟ୍ଟୀ ଉପନ୍ୟାସ "ଯମୁନା ପର୍ଯ୍ୟଟନ" ବାବା ପଦ୍ମନଜୀଙ୍କ ଦ୍ୱାରା ୧୮୫୭ ଖ୍ରୀଷ୍ଟାବ୍ଦରେ ଲିଖିତ ହୋଇଥିଲା । ପ୍ୟାରୀଚାନ୍ଦ ମିତ୍ର ୧୮୫୮ ଖ୍ରୀଷ୍ଟାବ୍ଦରେ "ଆଲାଲେର ଘରେର ଦୁଲାଲ" ପ୍ରଣୟନ କରି ବଙ୍ଗ ସାହିତ୍ୟର ପ୍ରଥମ ଔପନ୍ୟାସିକ ଭାବରେ ସମ୍ମାନିତ ହୋଇଥିଲେ । ଅବଶ୍ୟ ୧୮୨୩ ସାଲରେ ପ୍ରମଥ ଶର୍ମାଙ୍କ ରଚିତ 'ନବବାବୁ ବିଳାସ' ରଚିତ ହୋଇଥିଲା । ଏଥିରେ ଉପନ୍ୟାସର ଧର୍ମ ଦୃଷ୍ଟିଗୋଚର ହେଲେହେଁ ସମ୍ପୂର୍ଣ୍ଣ ଉପନ୍ୟାସ ଭାବରେ ଏହା ଗୃହୀତ ହୁଏ ନାହିଁ । ୧୮୮୭ ସାଲରେ ଅପ୍ପୁନନ୍ଦୁଙ୍ଗଡ଼ ମାଲୟାଲମ ସାହିତ୍ୟର ପ୍ରଥମ ଉପନ୍ୟାସ 'କୁନ୍ଦଲତା' ପ୍ରଣୟନ କରି ଯଶସ୍ୱୀ ହୋଇଥିଲେ । ସେହିପରି ୧୮୮୦ ଠାରୁ ୧୮୯୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ ଶ୍ରୀ ପିଲ୍ଲାଇଙ୍କ "ପ୍ରତାପ ମୁଦାଲିୟର ଚରିତ୍ରମ୍" ପ୍ରଥମ ତାମିଲ ଉପନ୍ୟାସ ଭାବରେ ଗ୍ରହଣ କରାଯାଇ ଥାଏ । କେହି କେହି ଆଲୋଚକ ଶ୍ରୀ ଆୟାରଙ୍କ ରଚିତ "କମ୍ବଲମ୍ବଲ ଚରିତ୍ରମ୍" କୁ ତାମିଲ ସାହିତ୍ୟର ପ୍ରଥମ ଉପନ୍ୟାସ ବୋଲି କହିଥାଆନ୍ତି । ମିର୍ଜା କାଲିକ ବେଗ୍ ୧୮୮୯ ଖ୍ରୀଷ୍ଟାବ୍ଦରେ ସିନ୍ଧୀ ସାହିତ୍ୟର ପ୍ରଥମ ଉପନ୍ୟାସ 'ଦିଲାରାମ' ରଚନା କରିଥିଲେ । ଓଡ଼ିଆ ସାହିତ୍ୟର ପ୍ରଥମ ଉପନ୍ୟାସ "ପଦ୍ମମାଳୀ" ୧୮୮୮ ରେ ପ୍ରକାଶିତ ହୋଇଥିଲା । ଅବଶ୍ୟ ଉମେଶଚନ୍ଦ୍ର ସରକାରଙ୍କ 'ପଦ୍ମମାଳୀ' ରଚିତ ହେବା ପୂର୍ବରୁ ରାମଶଙ୍କର ୧୮୭୭।୭୮ ସାଲରେ 'ଉତ୍କଳ ମଧୁପ' ପତ୍ରିକାରେ 'ସୌଦାମିନୀ' ଉପନ୍ୟାସର କିୟଦଂଶ ପ୍ରକାଶ କରିଥିଲେ । ମାତ୍ର ପତ୍ରିକାଟିର ଅକାଳରେ ମୃତ୍ୟୁ ହେବାରୁ ଉପନ୍ୟାସଟି ପୂର୍ଣ୍ଣାଙ୍ଗ ରୂପ ଗ୍ରହଣ କରି ପାରିଲା ନାହିଁ । ତେବେ ଉମେଶଚନ୍ଦ୍ର ଏବଂ ରାମଶଙ୍କରଙ୍କ ପରେ ଫକୀରମୋହନ ହିଁ ଆଧୁନିକ ଓଡ଼ିଆ ଉପନ୍ୟାସର ଯଥାର୍ଥ ସ୍ରଷ୍ଟା । ଊନବିଂଶର ଶେଷଭାଗରେ ସେ ତାଙ୍କର ବିଖ୍ୟାତ ଉପନ୍ୟାସ "ଛମାଣ ଆଠଗୁଣ୍ଠ" ପ୍ରକାଶ କରିଥିଲେ । ଠିକ୍ ଏହି କାଳରେ ତେଲୁଗୁ ସାହିତ୍ୟର ପ୍ରଥମ ଉପନ୍ୟାସ 'ରାଜଶେଖର

ଚରିତମ୍' ଆତ୍ମପ୍ରକାଶ କରିଥିଲା । ଏହାର ଲେଖକ ଥିଲେ କନ୍ତୁକୁରମ ବୀରେଶଲିଙ୍ଗମ୍ ପାନ୍ତୁଲୁ ।"

ଏ କଥା ସତ୍ୟ ଯେ, ପ୍ରଚଳିତ ଭାଷାରୀତି ବିରୁଦ୍ଧରେ ଭାରତର ପ୍ରତ୍ୟେକ ପ୍ରାନ୍ତରେ ପ୍ରବଳ ବିଦ୍ରୋହ ଆରମ୍ଭ ହୋଇ ଉପନ୍ୟାସ ଜନ୍ମଗ୍ରହଣ କରିଥିଲେ । ବଙ୍ଗ ଦେଶର 'ଆଲାଲେର ଘରେର ଦୁଲାଲ' ଉପନ୍ୟାସ ପ୍ରକାଶ ପାଇବା ପୂର୍ବରୁ ୧୮୫୪ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସର ୧୬ ତାରିଖରେ ପ୍ୟାରୀଚାନ୍ଦ ମିତ୍ର ଏବଂ ରାଧାନାଥ ଶିକଦାରଙ୍କ ନେତୃତ୍ୱରେ "ମାସିକ ପତ୍ରିକା" ପ୍ରକାଶିତ ହୋଇଥିଲା । ଏହି ପତ୍ରିକା ସମକାଳୀନ ବିଦ୍ୟାସାଗରଙ୍କ ସଂସ୍କୃତ-ବହୁଳ ରଚନା ରୀତି ବିରୁଦ୍ଧରେ ଆନ୍ଦୋଳନ କରିଥିଲେ । ସେମାନଙ୍କ ମତରେ ଏପରି ରଚନା ସମଗ୍ର ସମାଜର ପ୍ରିୟ ହୋଇ ପାରିବ ନାହିଁ । ସମାଜର ଅଧିକାଂଶ ସଂସ୍କୃତ ଅନଭିଜ୍ଞ ଥିବାରୁ ସେମାନଙ୍କ ହୃଦ୍‌ବୋଧ ହେବାଭଳି ରଚନା ହେବା ଆବଶ୍ୟକ । ସେ କାଳର ସାହିତ୍ୟଶୈଳୀ ସମ୍ପର୍କରେ ପ୍ୟାରୀଚାନ୍ଦଙ୍କ ଗ୍ରନ୍ଥାବଳୀରେ ବଙ୍କିମ ଯାହା ଆଲୋଚନା କରିଥିଲେ, ତାହା ଏଠାରେ ଉଲ୍ଲେଖଯୋଗ୍ୟ । ସେକାଳର ସଂସ୍କୃତ ପଣ୍ଡିତମାନଙ୍କର ପ୍ରଭାବ ସମ୍ପର୍କରେ ସେ ଲେଖିଥିଲେ ଏହିପରି—"ଆମି ନିଜେ ବାଲ୍ୟକାଲେ ଭଟ୍ଟାଚାର୍ଯ୍ୟ ଅଧ୍ୟାପକ ଦିଗ୍‌କେ ଯେ ଭାଷାୟ କଥୋପକଥନ କରିତେ ଶୁନିୟାଛି, ତାହା ସଂସ୍କୃତ ବ୍ୟବସାୟୀ ଭିନ୍ନ ଅନ୍ୟ କେହଇ ଭାଲ ବୁଝିତେ ପାରିତେନ ନା । ତାହାଁରା, କଦାଚ 'ଖଯେର' ବଲିତେନ ନା,—'ଖଦିର' ବଲିତେନ; କଦାଚ 'ଚିନି' ବଲିତେନ ନା—'ଶର୍କରା' ବଲିତେନ । 'ଘି' ବଲିତେ ତାହାଁଦେର ରସନା ଅଶୁଦ୍ଧ ହଇତ, 'ଆଜ୍ୟ' ଇ ବଲିତେନ । କଦାଚିତ କେହ ଘୃତେ ନାମିତେନ । 'ଚୁଲ' ବଲା ହଇବେନା—'କେଶ' ବଲିତେ ହଇବେ । 'କଲା' ବଲା ହଇବେ ନା —'ରମ୍ଭା' ବଲିତେ ହଇବେ । ଫଲାହାରେ ବସିୟା 'ଦଇ' ଚାଇବାର ସମୟ 'ଦଧି' ବଲିୟା ଚିତ୍‌କାର କରିତେ ହଇବେ ।" ଓଡ଼ିଶାରେ ମଧ୍ୟ ଏହାର ଦୃଷ୍ଟାନ୍ତ ଅଭାବ ନ ଥିଲା । ସ୍କୁଲମାନଙ୍କରେ ଓଡ଼ିଆ ପଠନ ରୀତି ଅତ୍ୟନ୍ତ ଅଦ୍ଭୁତ ଥିଲା । ସେ କାଳରେ ପ୍ରଚଳିତ ପାଠ୍ୟପୁସ୍ତକ 'ନୀତିକଥା'ର "କୁକୁର ଆଉ କୋକ" କଥାରୁ ଗୋଟିଏ ବାକ୍ୟ ଉଦାହରଣ ପ୍ରଦାନ କରି ପଣ୍ଡିତ ମୃତ୍ୟୁଞ୍ଜୟ ରଥ ସେ କାଳର ପଠନ ରୀତି ସମ୍ପର୍କରେ ଆଲୋଚନା କରିଥିଲେ 'ସ୍ୱର୍ଗତ ଫକୀରମୋହନ' ପ୍ରବନ୍ଧରେ । ଉଦାହରଣ ସ୍ୱରୂପ—

"କେତେବେଳେ ଏକ କୁକ୍କୁର କୌଣସି ସ୍ଥାନରେ ଖଣ୍ଡେ ବ୍ୟାଘ୍ରଚର୍ମ ଦେଖି ନିକଟବର୍ତ୍ତୀ ହୋଇ ତାକୁ ଦନ୍ତରେ କାମୁଡ଼ିବାକୁ ଲାଗିଲା"—ଛାତ୍ରମାନେ ପିଠି ଭାଙ୍ଗି ଝୁଲି ଝୁଲି ତହିଁର ଅର୍ଥ ଏହିପରି ମୁଖସ୍ଥ କରୁଥାନ୍ତି—'କେତେବେଳେ କି କୌଣସି ସମୟରେ—ଏକ କି ଏକ ସଂଖ୍ୟକ—କୁକ୍କୁର କି ଶ୍ୱାନ—କୌଣସି କି କେହି—ସ୍ଥାନରେ କି ସ୍ଥଳ ବିଶେଷରେ—ଖଣ୍ଡେ କି ଏକ ଖଣ୍ଡ—ବ୍ୟାଘ୍ରଚର୍ମ କି ଶାର୍ଦ୍ଦୂଳ ଛାଲ— ଦେଖି କି ଦର୍ଶନ କରି—ନିକଟବର୍ତ୍ତୀ କି ସମୀପବର୍ତ୍ତୀ ହୋଇ କି ହୋଇ—ତାକୁ କି ଚର୍ମ ବିଶେଷକୁ—ଦାନ୍ତରେ କି ଦଶନରେ—କାମୁଡ଼ିବାକୁ କି ଦଂଶନ କରିବାକୁ—ଲାଗିଲା କି ଲାଗିଲା।"

ସେ କାଳର ଏହିପରି କୃତ୍ରିମ ବାତାବରଣରୁ ସାହିତ୍ୟକୁ ମୁକ୍ତ କରିଥିଲା ଉପନ୍ୟାସ।

## ଔପନ୍ୟାସିକ—ଜୀବନର ପ୍ରକୃତ ବ୍ୟାଖ୍ୟାକାର :

ଉପନ୍ୟାସର ଅଭ୍ୟୁଦୟ ପର୍ଯ୍ୟନ୍ତ ସାହିତ୍ୟରେ ମନୁଷ୍ୟର ପ୍ରକୃଷ୍ଟ ଛବି ପ୍ରତିଫଳନ ପାଇଁ ଆଦୌ ସୁଯୋଗ ନ ଥିଲା। ଲେଖକ ଏ ଯୁଗରେ ଅତ୍ୟନ୍ତ ନିର୍ମମଭାବରେ ଜୀବନଧର୍ମୀ। ଜୀବନର ଯାବତୀୟ ସମସ୍ୟା ଆଜି ତାର ଦୃଷ୍ଟି ଆକର୍ଷଣ କରେ। ସେହି ସବୁର ବାସ୍ତବ ଛବି ରସୋତ୍ତୀର୍ଣ୍ଣ ହୋଇ ରୂପାୟିତ ହୁଏ ଉପନ୍ୟାସରେ। ସେଥିପାଇଁ ଉପନ୍ୟାସକୁ ସମସାମୟିକ ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ। ଇତିହାସରେ କେତେକ ନିର୍ଦ୍ଦିଷ୍ଟ ଗୋଷ୍ଠୀର କଥା ବର୍ଣ୍ଣିତ ହୁଏ। ଇତିହାସ ସମସ୍ତଙ୍କ ବିବରଣୀ ଲିପିବଦ୍ଧ କରେ ନାହିଁ, ଯାହା ଅବା ପ୍ରକାଶ କରିବା ପାଇଁ ଐତିହାସିକ ଉଦ୍ୟମ କରିଥାଏ, ତାହା ଅତ୍ୟନ୍ତ ଗଦ୍ୟମୟ ଏବଂ ନୀରସ। ସେଥିରେ ଜୀବନ ପ୍ରତି ସହାନୁଭୂତି ନାହିଁ କିମ୍ବା ଜୀବନର ଅନୁଶୀଳନ ନାହିଁ। ଔପନ୍ୟାସିକର ଦୃଷ୍ଟିଭଙ୍ଗୀ ଉଦାର ଓ ବ୍ୟାପକ। ସମଗ୍ର ସାମାଜିକ ପୃଷ୍ଠଭୂମି ଉପରେ ତାହାର ଆଲୋଚନା ଗତିଶୀଳ ହୁଏ। ଉପନ୍ୟାସର ନାୟକ ନାୟିକା ସମଗ୍ର-ଭାବରେ ସମାଜର ଏବଂ ସେଥିପାଇଁ କୌଣସି ସ୍ୱତନ୍ତ୍ର ଯୋଗ୍ୟତା ଅଥବା ସ୍ୱୀକୃତିର ଅବକାଶ ନାହିଁ। ସାହିତ୍ୟ ସଂସାରରେ ଉପନ୍ୟାସପରି ସର୍ବଜନା-ଦୃତ କଳା ଆଉ କାହିଁ ଦେଖିବାକୁ ମିଳେ ନାହିଁ। ଜୀବନରେ ଯାହା ସତ୍ୟ,

ତାହାକୁ ଅତିଶୟ ସୁନ୍ଦର ଏବଂ ମଧୁମୟ କରି ପ୍ରକାଶ କରେ ଔପନ୍ୟାସିକ । ସେ ଶାସ୍ତ୍ରକାରମାନଙ୍କର ନୀତିବୋଧ ଦ୍ୱାରା ପରିଚାଳିତ ହୁଏ । ଔପନ୍ୟାସିକ ପ୍ରଚାରକ ନୁହେଁ, ସେ ମଧ୍ୟ ଫଟୋଗ୍ରାଫର ନୁହେ । ସାମାଜିକ ଜୀବନରେ ଅସରନ୍ତି ସୁଖ ଦୁଃଖ, ଅନୁଶୋଚନା, ରୋଗ ଶୋକ, ବେକାରି, ଅନୀତି, ଦାରିଦ୍ର୍ୟ ଓ ପୀଡ଼ନ ବିସ୍ତୃତ ହୋଇ ପଡ଼ିଛି । ଏହି ସବୁର ବର୍ଣ୍ଣନା ଉପନ୍ୟାସରେ ଅତ୍ୟନ୍ତ ପ୍ରାଣବନ୍ତ ଭାବରେ ବର୍ଣ୍ଣିତ ହୋଇଥାଏ ସତ୍ୟ, ମାତ୍ର ଔପନ୍ୟାସିକ ପାଞ୍ଜି ଆକରଣ ନୁହେ । ତାର ସମସ୍ତ ବର୍ଣ୍ଣନାବିଳାସର ଅନ୍ତରାଳରେ ମୁଖ୍ୟ ହେଉଛି ସମାଜର ମନୁଷ୍ୟ—ତାର ପ୍ରିୟ ନାୟକ ନାୟିକା । ସେ ମନୁଷ୍ୟକୁ ଅତିମାତ୍ରାରେ ଭଲପାଏ ଏବଂ ତାହାର ଜୀବନାଦର୍ଶ ଏବଂ ଜୀବନର ଚଳଚଞ୍ଚଳ ଅନୁଭୂତି ଜରିଆରେ ମାନବିକତାର ମୂଲ୍ୟବୋଧ ପ୍ରକାଶ କରେ । ଉପନ୍ୟାସ ଛଡ଼ା ସାହିତ୍ୟର ଆଉ କୌଣସି ବିଭାଗରେ ମାନବିକତାର ପ୍ରତିଷ୍ଠା ହୋଇଥିଲା ବୋଲି କହିହେବ ନାହିଁ । ସେହି କାରଣରୁ ଆଧୁନିକ ଉପନ୍ୟାସରେ ଯେଉଁମାନେ ନାୟକ ନାୟିକା, ସେମାନେ ବୁନିୟାଦି ଘରର ପୁଅ ବୋହୂ ହୁଅନ୍ତୁ, କଲେଜ ଏବଂ ସେକ୍ରେଟେରିଏଟରେ ଚଳପ୍ରଚଳ ପୁଅଝିଅ ହୁଅନ୍ତୁ, ଅଥବା ସେମାନେ ମଧ୍ୟ ହୋଇ ପାରନ୍ତି ନିର୍ଦ୍ଦମାର ମଣିଷ । ଯେଉଁମାନେ ଲକ୍ଷ୍ମୀଛଡ଼ା, ସମାଜ ଆଗରେ ଅପାଂକ୍ତେୟ, ସେମାନଙ୍କର ଜୀବନର ଅନ୍ତରାଳରେ ସ୍ନେହ, ପ୍ରେମ, କରୁଣାର ଯେଉଁ ଫଲ୍‌ଗୁ ପ୍ରବାହିତ ହେଉଛି; ଅଥବା ସେମାନେ କିପରି ଅନ୍ୟାୟ ଓ ଅବିଚାରର ରୌରବ ନର୍କରେ ତିଳ ତିଳ ହୋଇ ଖଡ଼ି ମରୁଛନ୍ତି, ତାହାର କଳାଧର୍ମୀ ବିଶ୍ଳେଷଣ ହୁଏ ଉପନ୍ୟାସରେ । ସେଥିପାଇଁ ଆଧୁନିକ ସମାଜ ଓ ଜୀବନ ସହିତ ଔପନ୍ୟାସିକର ସମ୍ପର୍କ ଅତ୍ୟନ୍ତ ନିବିଡ଼ । ଔପନ୍ୟାସିକ ମଣିଷ ଜୀବନର ବିଦ୍ରୋହୀ ଆତ୍ମାକୁ ଆବିଷ୍କାର କରେ । ଏହି ବିଦ୍ରୋହ ଧ୍ୱଂସର ଇତିବୃତ୍ତ ନୁହେଁ, ଏହା ହେଉଛି ଏକ ସୁନ୍ଦର ଏବଂ ମଙ୍ଗଳମୟ ଜୀବନର ପ୍ରତିଷ୍ଠା ପାଇଁ ବ୍ୟାକୁଳତା ।

ବିଦ୍ରୋହ ବ୍ୟତିରେକେ ପ୍ରଗତି ଅସମ୍ଭବ । ନିସ୍ତରଙ୍ଗ ଜୀବନର ଜୟଯାତ୍ରାରେ କୌଣସି ମହତ୍ତ୍ୱ ଅଛି ବୋଲି କୁହାଯାଇପାରିବ ନାହିଁ । ନିଜକୁ ପ୍ରକୃତିଠାରୁ ସ୍ୱାଧୀନ କରି ମନୁଷ୍ୟ ପ୍ରଗତିପଥରେ ଧାବମାନ ହେଉଛି । ବୃକ୍ଷରେ ଫୁଲ ଆପେ ଆପେ ଫୁଟେ, ଫଳ ଆପେ ଆପେ ପାଚେ—

ତାହା ପୁଣି ସମସ୍ତଙ୍କର ମନଲୋଭା ମଧ୍ୟ ହୁଏ । ଅବଶ୍ୟ ଫୁଲ ଫୁଟିବା ଏବଂ ଫଳ ପାଚିବା ପାଇଁ ପ୍ରଚ୍ଛନ୍ନଭାବରେ ପ୍ରକୃତି ରାଜ୍ୟର ପ୍ରଭାବ କାମ କରୁଅଛି । ହେଲେହେଁ ଫଳ ଓ ଫୁଲ ଜୀବନର ପରିପକ୍ୱତା ମଧ୍ୟରେ ସେମାନଙ୍କର କୌଣସି ହାତ ନାହିଁ । ଅଥଚ ମନୁଷ୍ୟ ସଭ୍ୟ ହେଉ ଅଥବା ଅସଭ୍ୟ ହେଉ, ସମସ୍ତଙ୍କର କିଛି ନା କିଛି ବିକାଶର ଧାରା ରହିଛି । ଏହି ବିକାଶ ସ୍ୱତଃ ଆସେ ନାହିଁ । ପ୍ରକୃତିକୁ ମନୁଷ୍ୟ ନିଜେ ନିୟନ୍ତ୍ରିତ କରେ ପରିସ୍ଥିତି ବିରୁଦ୍ଧରେ ସଂଗ୍ରାମ କରି । ଏହି ସଂଗ୍ରାମର ରହସ୍ୟକୁ ଔପନ୍ୟାସିକ ଯେତିକି ପରିମାଣରେ ଆବିଷ୍କାର କରିପାରିବ, ସେହି ଅନୁପାତରେ ଉପନ୍ୟାସ ହେବ ସାର୍ଥକ ଏବଂ କଳାଧର୍ମୀ । ତାହା କେବଳ ଯୁଗଧର୍ମକୁ ପ୍ରତିବିମ୍ବିତ କରିବ ନାହିଁ, ସେହି ଉପନ୍ୟାସର ଲେଖକ ହେବ ସମାଜ ଓ ଜୀବନର ପ୍ରକୃତ ଭାଗ୍ୟକାର ! ଅବଶ୍ୟ ଅତ୍ୟାଧୁନିକ ଉପନ୍ୟାସ ଅତିରିକ୍ତ ପରିମାଣରେ ବ୍ୟକ୍ତିକେନ୍ଦ୍ରିକ ହୋଇପଡ଼ିଛି । ତେଣୁ ସେଥିରେ ମଣିଷର ନଗ୍ନମନର ଚିତ୍ର ଅତ୍ୟଧିକ ପ୍ରତି-ଫଳିତ ହୋଇଥାଏ । ହେଲେହେଁ ବହୁକାଳ ପର୍ଯ୍ୟନ୍ତ ଓଡ଼ିଆ ଉପନ୍ୟାସରେ ଏହି ସଂଗ୍ରାମର ଚିତ୍ର ଆମେ ପାଇଥାଉ । ଫକୀରମୋହନଙ୍କଠାରୁ କାଳନ୍ଦୀ ଚରଣ, କାହ୍ନୁଚରଣଙ୍କ ବାଟରେ ସୁରେନ୍ଦ୍ର ମହାନ୍ତିଙ୍କ ପର୍ଯ୍ୟନ୍ତ ଓଡ଼ିଆ ଔପନ୍ୟାସିକଗଣ ଜୀବନ-ବୋଧକ ଚିତ୍ର ଅଙ୍କନ କରିବାରେ ଆଦୌ କାର୍ପଣ୍ୟ କରିନାହାନ୍ତି ।

ତେବେ ଏ କଥା ସତ୍ୟ ଯେ, ଊନବିଂଶ ଶତାବ୍ଦୀର ଆଦର୍ଶରେ ଫକୀରମୋହନ ଯେଉଁ ଚରିତ୍ରର ଚିତ୍ରଣ କରିଥିଲେ, ତାହା ଆଜି ଆଉ ଆଦରଣୀୟ ହୋଇ ରହିନାହିଁ । ଭିକ୍ଟୋରିଆ ଯୁଗର ଇଂରେଜୀ ସାହିତ୍ୟରେ ମୁଖ୍ୟ ଏବଂ ଗୌଣ ଚରିତ୍ର ଉପନ୍ୟାସରେ ସମାନ ଗୌରବର ଅଧିକାରୀ ହେଲାପରି ମନେହୁଅନ୍ତି । ଫକୀରମୋହନ ମଧ୍ୟ ତାଙ୍କର ଉପନ୍ୟାସରେ ସେହି ଧର୍ମକୁ ସ୍ୱୀକାର କରିଛନ୍ତି । ସେ କାହାରି ପ୍ରତି ତରଫସାନ ବ୍ୟବହାର କରିନାହାନ୍ତି, ସେଠାରେ ନାଜର ନଟବର ଦାସ, ରାମଚନ୍ଦ୍ର ମଙ୍ଗରାଜ, ଚମ୍ପା, ଲଛମା ଯେଉଁ ଆସନ ଲାଭ କରିଛନ୍ତି, ନାକଫୋଡ଼ିଆ ମା, ରାଘୋବା, ହରିବୋଲ ବାରିକ ମଧ୍ୟ ସେହି ସ୍ୱୀକୃତିର ଅଧିକାରୀ । ତେବେ ଏ ଯୁଗର ଉପନ୍ୟାସରେ ଚରିତ୍ରଗୁଡ଼ିକ ଆଜୀବନ ସମାନଧର୍ମୀ ମନେ ହୋଇଥାନ୍ତି । ସେମାନେ ଯେପରି ଅପରିବର୍ତ୍ତନୀୟ । ଏକ ଶିକ୍ଷାପ୍ରଦ ଯବନିକା ଟାଣିବାନଲି ପ୍ରସିଦ୍ଧ ଚରିତ୍ର ସୃଷ୍ଟି

କରିବାରେ ଏ ଯୁଗର ଉପନ୍ୟାସ ସାର୍ଥକ ହୋଇଥିଲା । ପ୍ରଥମ ମହାଯୁଦ୍ଧ ପରବର୍ତ୍ତୀକାଳ ପର୍ଯ୍ୟନ୍ତ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଅଳ୍ପେ ବହୁତେ ଏହି ରୀତି ପ୍ରଚଳିତ ଥିଲା । ମୁକୁର ଉପନ୍ୟାସମାଳାର ଲେଖକଗଣ ଫକୀର ମୋହନଙ୍କୁ ଆଦର୍ଶ କରି ଲେଖନୀ ଚାଳନା କରିଥିଲେ ବୋଲି ପ୍ରମାଣ କରା-ଯାଇପାରେ ।

ତେବେ ପ୍ରଥମ ମହାଯୁଦ୍ଧ ପରେ ଭାରତବର୍ଷରେ ଗାନ୍ଧୀଯୁଗର ଅଭ୍ୟୁଦୟ ହେଲା । ସୋଭିଏଟ ରୁଷରେ ଅକ୍ଟୋବର ବିପ୍ଳବର ପ୍ରବର୍ତ୍ତ ଯୁଗ ପୃଥିବୀର ଚିନ୍ତାନାୟକମାନଙ୍କ ପକ୍ଷରେ ଗଭୀର ପ୍ରେରଣାର ଉତ୍ସ ହୋଇ ରହିଲା । ସାହିତ୍ୟର ଆଭିମୁଖ୍ୟ ଆକସ୍ମିକ ଭାବରେ ପରିବର୍ତ୍ତନ କରିବା ଦେଖାଗଲା । ଭାରତବର୍ଷରେ ସ୍ୱାଧୀନତାର ତୂର୍ଯ୍ୟନାଦ, ଯାନ୍ତ୍ରିକ ବିପ୍ଳବ ବ୍ୟକ୍ତି ମନରେ ଆନୟନ କଲା ଭୟଙ୍କର ବିପ୍ଳବ । ତେଣୁ କାଳନ୍ଦୀ ଚରଣ, କାହ୍ନୁ ଚରଣ, ଲକ୍ଷ୍ମୀଧର ନାୟକ, କମଳାକାନ୍ତ ଦାସ, ଉପେନ୍ଦ୍ର କିଶୋର, ବୈଷ୍ଣବ ଚରଣ, ହରେକୃଷ୍ଣ ମହତାବ, ରାମପ୍ରସାଦ ସିଂହ ପ୍ରଭୃତି ସମକାଳୀନ ଯୁଗନ୍ଧରର ସଫଳ ଶିଳ୍ପକାର । ଫକୀର ମୋହନଙ୍କ ଯୁଗର ଉପନ୍ୟାସରେ କଥାବସ୍ତୁ ଅତ୍ୟନ୍ତ ସୀମିତ । ନାୟକ ନାୟିକା ଥିଲେ ଭାଗ୍ୟର କ୍ରୀଡ଼ନକ । ନୀତିବାଦୀ ଫକୀରମୋହନ ଦୁର୍ଗତିପାଇଁ ବ୍ୟକ୍ତିକୁ ଦାୟୀ କରିଛନ୍ତି । ସାମାଜିକ ଜୀବନରେ ସେ ଅତ୍ୟନ୍ତ ଅସହାୟ । କିନ୍ତୁ କାଳନ୍ଦୀ ଓ କାହ୍ନୁ ଚରଣଙ୍କ ଯୁଗରେ ଏହି ଆଭିମୁଖ୍ୟ ବଦଳିଗଲା । ଏମାନେ ବ୍ୟକ୍ତିକୁ ଭଲପାଇଛନ୍ତି । ଆଦିଯୁଗର ଉପନ୍ୟାସ 'ଛମାଣ ଆଠଗୁଣ୍ଠ'ରେ ଜୀବନପ୍ରତି ଯେଉଁ ଦରଦର ସୂଚନା ମିଳିଥିଲା, ତାହାର ପ୍ରାଣବନ୍ତ ପ୍ରକାଶ ହୋଇଛି ଆଧୁନିକ କାଳରେ । ଏ ଯୁଗର ଉପନ୍ୟାସରେ ବ୍ୟକ୍ତି କଳଙ୍କିତ ନୁହେଁ, ତାର ଦୁଃଖ ପାଇଁ ସମାଜର ଦୁର୍ବଳତା ଦାୟୀ । ସମାଜକୁ ସଂଶୋଧନ ଏବଂ ସଂସ୍କାର ନ କଲେ ବ୍ୟକ୍ତି ଜୀବନର ଦୁଃଖ ଲାଘବ ହେଉ ନାହିଁ । ଆଧୁନିକ ଯୁଗର ଚରିତ୍ର ହେଉଛି ସମୟର ସନ୍ତାନ । ତାକୁ ଅବସ୍ଥାର ଦାସ କରିବା ଠିକ୍ ହେବ ନାହିଁ ।

## ଓଡ଼ିଆ ଉପନ୍ୟାସରେ ଆଧୁନିକତମ ଧାରା :

ଦ୍ୱିତୀୟ ମହାଯୁଦ୍ଧ କାଳରେ ଭାରତୀୟ ସମାଜରେ ପର୍ଯ୍ୟାପ୍ତ ପରିବର୍ତ୍ତନ ଅନୁଭୂତ ହେଲା । ବହୁକାଳର ପରାଧୀନତା ପରେ ସ୍ୱାଧୀନତାର

ଉଷାଲୋକ ସମାଜ ଚେତନାରେ ଗଭୀର ଆଶାର ସଞ୍ଚାର କରୁଥିଲା । ଜାତୀୟ ସଂଗ୍ରାମର ସାତଲହଡ଼ି ପାରିହୋଇ ଭାରତୀୟ ସମାଜ ଯାନ୍ତ୍ରିକ ଜୀବନର ପାରାବାରରେ ଜୀବନ ମେଳି ଦେବାପାଇଁ ବ୍ୟାକୁଳ ହେଉଥିଲା । ଅବହେଳିତ ମଣିଷର କଥାକୁ ପ୍ରାଣସ୍ପର୍ଶୀ ଭାଷାରେ ରୂପାୟିତ କଲେ ଏ ଯୁଗର କଥାକାର ସେମାନଙ୍କର ଉପନ୍ୟାସରେ । ତେଣୁ ଲେଖାହେଲା ପରଜା, ହାଡ଼ମାଟି, ଚଲାବାଟ, ଝଂଜା, ଭୂମିକା, ଚପଳଛନ୍ଦା, ଅନ୍ଧଦିଗନ୍ତ, ସାମୁଦ୍ରିକ, ନରକିନ୍ନର ଓ ଅମାବାସ୍ୟାର ଚନ୍ଦ୍ର । ଅବହେଳିତ ମଣିଷ ଜୀବନର ଜୀବନ ଏବଂ ଜୀବିକାର ଛବି, ତାହାର ସଂଗ୍ରାମୀ ମନର ପ୍ରକୃଷ୍ଟ ରୂପାୟନ ଅଭିନବ ରୂପରେ ଚିତ୍ରିତ ହେଲା ଅତ୍ୟାଧୁନିକ ଉପନ୍ୟାସରେ । ବିଜ୍ଞାନ ଓ ରାଜନୀତିର ଚକ୍ରତଳେ ଆଧୁନିକ ବ୍ୟକ୍ତି ଚାପି ହୋଇ ଯାଉଛି । ପୁନଶ୍ଚ ଅର୍ଥନୈତିକ ଦୁର୍ଗତିର ଉତ୍କଟ ବ୍ୟାମୋହ ମଧ୍ୟରେ ତାହାର ପ୍ରାଣ ଓ ମନ ହୋଇ ପଡ଼ୁଛି ଅତିଷ୍ଠ । ଏ ଯୁଗର ସମାଜ-ସଚେତନ ନାରୀପୁରୁଷ ପ୍ରେମ ନାମରେ ଯୌନ ଜୀବନର ଯେଉଁ ଅନୁଭୂତି ହାସଲ କରୁଅଛନ୍ତି, ତାହା ପ୍ରାଚୀନ ମୂଲ୍ୟବୋଧକୁ ସମ୍ପୂର୍ଣ୍ଣରୂପେ ଅସ୍ୱୀକାର କରି ଚାଲିଛି । ଯୌନ ଜୀବନ ସମ୍ପର୍କୀୟ ନୈତିକତା ଆଜି ସମ୍ପୂର୍ଣ୍ଣରୂପେ ଅସ୍ୱୀକାର କରିଚାଲିଛି । ଯୌନ ଜୀବନ ସମ୍ପର୍କୀୟ ନୈତିକତା ଆଜି ସମ୍ପୂର୍ଣ୍ଣ ବ୍ୟକ୍ତିଗତ ହୋଇପଡ଼ୁଛି । ସେଠାରେ ସାମାଜିକ ଅଙ୍କୁଶ ଶିଥିଳ ହେଲାପରି ମନେ ହେଉଛି । ଆଧୁନିକ ଲେଖକ ଏକ ବ୍ୟଙ୍ଗଧର୍ମୀ ଶୈଳୀ ମାଧ୍ୟମରେ ଜୀବନର ରଙ୍ଗ ଭୂମିକୁ ବିଶ୍ଳେଷଣ କରିବାକୁ ସୁଖ ପାଉଛି । ଗୋପୀନାଥଙ୍କ ବଳୀବର୍ଦ୍ଦ ଏବଂ 'ସବୁଜପତ୍ର' ଏବଂ ଶାନ୍ତନୁଙ୍କର ନରକିନ୍ନରର 'ଗୋଦାବରୀ ବୁଢ଼ୀ'ର ଜୀବନ ବିଶ୍ଳେଷଣ ଏହି ପ୍ରସଙ୍ଗରେ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ଆଧୁନିକ ଲେଖକ ଅତ୍ୟନ୍ତ ବ୍ୟକ୍ତିଗତ ଦୃଷ୍ଟିକୋଣରୁ ଦୁନିଆର ଚିତ୍ର ପ୍ରଦାନ କରନ୍ତି । ଆମେ ବେଶ୍ୟାକୁ ଅଥବା ଜଣେ ନରହନ୍ତା ଡକାୟତକୁ ଘୃଣା କରିପାରୁ । ମାତ୍ର ଆଧୁନିକ ଉପନ୍ୟାସରେ ଏମାନେ ଘୃଣିତ ଅଥବା ଅବହେଳିତ ହୋଇ ନପାରନ୍ତି । ଏମାନଙ୍କର ଏକ ନିଜସ୍ୱ ବିଚାର ଏବଂ ଦର୍ଶନ ଅଛି । ସେମାନେ କିପରି ଆଖିରେ ଦୁନିଆକୁ ଦେଖନ୍ତି, ତାହାର ବିଶ୍ଳେଷଣ କରେ ଆଧୁନିକ ଔପନ୍ୟାସିକ । ତେଣୁ ସ୍ୱତଃ ଏହି ଚରିତ୍ରମାନଙ୍କ ପ୍ରତି ପାଠକର ସହାନୁଭୂତି ଜାଗ୍ରତ ହୁଏ, ଜଗତ ସମ୍ପର୍କରେ ତାହାର ଦୃଷ୍ଟିଭଙ୍ଗୀ ସମ୍ପ୍ରସାରିତ

ହୋଇଯାଏ । ଅତୀତର ଉପନ୍ୟାସରେ ଅଧିକ ପରିମାଣରେ ବହିର୍ଜଗତର ଘଟଣାବଳୀ ଚିତ୍ରିତ ହେଉଥିଲା । ଆଧୁନିକ ଉପନ୍ୟାସରେ ଏହି କଳାଖଣ୍ଡ କ୍ରମଶଃ ପରିଦ୍ୱାର ହୋଇ ମନୋଜଗତର ଚିତ୍ରଣ କରାଯାଉଅଛି । ଅବଶ୍ୟ ଯୁଦ୍ଧଯୁଗର ନୈରାଶ୍ୟବାଦ ଆଧୁନିକ ଉପନ୍ୟାସରେ ଖାଉଥ୍ର ଯୌନ ଭାବନାକୁ ରୂପାୟିତ କରିବାରେ ସାହାଯ୍ୟ କରିଅଛି । ସେଥିପାଇଁ ଆଜିକାଲି ଅନେକ ଲେଖକ ଅତ୍ୟନ୍ତ ଅସାମାଜିକ ପରି ଆଚରଣ କରିଥାଆନ୍ତି । ସେମାନେ ବୁଝି-ପାରନ୍ତି ନାହିଁ ଯେ,ସେମାନେ ଯେଉଁ ସମାଜରେ ଦଣ୍ଡାୟମାନ, ତାହା ଗୋଟିଏ କାଳର ହୋଇ ରହିନାହିଁ କି ରହିପାରିବ ନାହିଁ । ଅନନ୍ତ କାଳବକ୍ଷରେ ସମାଜ ବହିରଙ୍ଗର ପରିବର୍ତ୍ତନ କରି ଧୀରେ ଧୀରେ ଚାଲିଅଛି । ସେଠାରେ କେବଳ ସଂଘର୍ଷ ନାହିଁ, ସମନ୍ୱୟ ମଧ୍ୟ ଅଛି । ଗୋଟିଏ କାଳର ପ୍ରଭାବ କେବଳ ଅନୁସୃତ ହେଉନାହିଁ । କାଳାତୀତ ମୂଲ୍ୟବୋଧ ମଧ୍ୟ ଆଦର ଲାଭ କରୁଅଛି ।

ଭୌତିକ ଦର୍ଶନ ଏବଂ ଭାଗ୍ୟବାଦର ସଂଘର୍ଷରେ ଯନ୍ତ୍ରଯୁଗର ବିଚଳିତ ମନୁଷ୍ୟ ଆଜି ନୂତନ ରୂପରେ ଦେଦୀପ୍ୟମାନ । ତାର ମନଗହନର ଅନ୍ତରାଳରେ ହୁଏତ ଦସ୍ପା ନାହିଁ, ଏକ ନିର୍ମମ ପରମାଣୁ ଯୁଗର ଭସ୍ମାସୁର ରାଜପଣ କରୁଛି । କାମୁକତା, ଲମ୍ପଟତା ଏବଂ ବ୍ୟଭିଚାରର ଏକ ମାୟାଜାଲ ମଧ୍ୟରେ ସେ ଅନ୍ତିଷ୍ଠ ହୋଇପଡ଼ୁଛି । କିନ୍ତୁ ସେଇ ମନୁଷ୍ୟ ପୁଣି ଏକ ପୃଥିବୀକୁ ସର୍ଜନା କରିବାକୁ ବଦ୍ଧପରିକର, ଯେଉଁଠାରେ ବିଶ୍ୱପ୍ରେମିକତା ଅପୂର୍ବ ମାନବିକତାର ଜୟଜୟକାର ଉଦ୍‌ଘୋଷିତ ହେଉଥିବ । ମନୁଷ୍ୟ କେବଳ ଏକକଧର୍ମୀ ବ୍ୟକ୍ତିତ୍ୱ ନୁହେଁ, ସେ ସମଗ୍ର ସମାଜର ଅଂଶବିଶେଷ । ସେ ପୁଣି ଯୁଦ୍ଧ କରୁଛି ଦାରିଦ୍ର୍ୟ, ବେକାରି, ଅଶାନ୍ତି ଓ ଅସମାନତା ବିରୁଦ୍ଧରେ । ଯନ୍ତ୍ରଯୁଗର ଆସୁରି ପ୍ରଭାବରୁ ମନୁଷ୍ୟତାକୁ ମୁକ୍ତ କରିବାପାଇଁ ତାର ଆପ୍ରାଣ ସାଧନା । ତେଣୁ ଆଧୁନିକ ଔପନ୍ୟାସିକ ଚେତନାଭିତ୍ତିକ ଉପନ୍ୟାସ ନାମରେ କେବଳ ଅନ୍ଧାରି ମନରେ ବିକଶିବାକୁ ବୁଣି ନଦେଇ, ସେଇ ମନସାଗରରେ ସନ୍ତରଣ କରି ଅମୃତର ସନ୍ଧାନ ନେଉ ।

ଏହାହିଁ ବୋଧହୁଏ ସବ୍ୟଯୁଗମସ୍ପୀ ଉପନ୍ୟାସର ପରିଚୟ !

# ଓଡ଼ିଆ କ୍ଷୁଦ୍ରଗଳ୍ପ

# ସୃଷ୍ଟି ଓ ସ୍ଥିତି

କ୍ଷୁଦ୍ରଗଳ୍ପ ଏକ ଆଧୁନିକ କଳା । ପୃଥିବୀର ସାହିତ୍ୟରେ ଏହାର ଜନ୍ମ ଅଧିକ କାଳର ନୁହେ । ଅଳ୍ପ କଥାରେ କହିଲେ କାହାଣୀର ଜନ୍ମ ସାଂପ୍ରତିକ କଠୋର ଜୀବନ ସଂଗ୍ରାମ ଏବଂ ଯୋହି ସଂପର୍କଜନିତ ସମୟର ଅଭାବବୋଧ । ପାଶ୍ଚାତ୍ୟ ସାହିତ୍ୟର ସଂପର୍କରେ ନ ଆସିବା ପର୍ଯ୍ୟନ୍ତ ଓଡ଼ିଆରେ କ୍ଷୁଦ୍ରଗଳ୍ପ ସୃଷ୍ଟି ହୋଇ ନ ଥିଲା । ଭାରତୀୟ ସାହିତ୍ୟରେ ମଧ୍ୟ କ୍ଷୁଦ୍ରଗଳ୍ପର ଅଭ୍ୟୁଦୟ ପାଇଁ ପାଶ୍ଚାତ୍ୟ ସାହିତ୍ୟର ପ୍ରେରଣା ରହିଛି ବୋଲି ଯୁକ୍ତ କରାଯାଇଥାଏ ।

କ୍ଷୁଦ୍ରଗଳ୍ପ ପୂର୍ବରୁ ଏ ଦେଶର କାହାଣୀର ଏକ ସମୃଦ୍ଧ ପରଂପରା ରହି ଆସିଛି ଏବଂ ତାହା ମଧ୍ୟ ଓଡ଼ିଆ ସାହିତ୍ୟକୁ ପ୍ରଭାବିତ କରିଛି । କାହାଣୀ ଶୁଣିବା ଏବଂ କାହାଣୀ କହିବା ମନୁଷ୍ୟର ଚିରନ୍ତନ ପ୍ରବୃତ୍ତି । ତେଣୁ ପୃଥିବୀର ସବୁ ଦେଶର ସମାଜରେ କାହାଣୀ ଏକ ପ୍ରାଚୀନତମ କଳା ।

ଇତିହାସ ପରି କାହାଣୀ ଯଥାର୍ଥ ନୁହେଁ । ଅଥଚ କାହାଣୀର ବର୍ଣ୍ଣନା-ଶୈଳୀ ଅତ୍ୟନ୍ତ ମନୋରଞ୍ଜକ ଏବଂ ସୁନ୍ଦର । ତେଣୁ ତାହା ସତ୍ୟର ପ୍ରତୀତି ଆଣି ଶ୍ରୋତାର ପ୍ରାଣରେ ଆନନ୍ଦ ସଂଚାର କରେ ।

ଅନେକଙ୍କର ଧାରଣା ଯେ, ଶିଶୁମାନଙ୍କର ମନୋରଞ୍ଜନ ପାଇଁ କାହାଣୀର ଜନ୍ମ ହୋଇଥିଲା । ମାତ୍ର ବୟସ ନିର୍ବିଶେଷରେ ଶିଶୁଠାରୁ ବୃଦ୍ଧ ପର୍ଯ୍ୟନ୍ତ ସମସ୍ତେ କାହାଣୀ ଶୁଣି ଉପଭୋଗ କରିପାରନ୍ତି । ବାସ୍ତବିକ ସୌନ୍ଦର୍ଯ୍ୟ ପିପାସା ନଥିଲେ କାହାଣୀ ଜନ୍ମ ଗ୍ରହଣ କରି ନଥାନ୍ତା । ସେ କାଳର ଗିରିଗୁହାର ଶିକାରୀ ମନୁଷ୍ୟ ପ୍ରକୃତି କୋଳରେ ଆତଜାତ ହେଉ ହେଉ ଯେଉଁ ଅପୂର୍ବ ଅନୁଭୂତି ଲାଭ କରିଛି, ସେହି ସୌନ୍ଦର୍ଯ୍ୟାନୁଭୂତିକୁ ଅତ୍ୟନ୍ତ ଆବେଗର

ସମ୍ଭବତ ସେ ନିଜର ଦଳ ଆଗରେ କହିବସିଛି । ଦିନ ପରେ ଦିନ ଏହିପରି ଅସୁମାରି କାହାଣୀ ସୃଷ୍ଟି ହୋଇଛି ଏବଂ ସଂସ୍କୃତର ସ୍ରୋତରେ ଏହି କାହାଣୀର ଧାରା ପୁରୁଷାନୁକ୍ରମେ ଦେଶଦେଶାନ୍ତର ଅତିକ୍ରମ କରି ଆଜି ପର୍ଯ୍ୟନ୍ତ ଗଡ଼ିଆସିଛି । ଏଥିପାଇଁ ପ୍ରାଚୀନ ଭାରତ, ଚୀନ, ହିବ୍ରୁ, ଗ୍ରୀକ, ଆରବ, ମିଶର ପ୍ରଭୃତି ଦେଶରେ କାହାଣୀ ସାହିତ୍ୟର ଭଣ୍ଡାର ଦେଖିବାକୁ ମିଳେ ।

ଇଜିପ୍ଟର Tale of Magicians ପୃଥିବୀର ପ୍ରାଚୀନତମ ଗଳ୍ପ ସଂଗ୍ରହ ବୋଲି କୁହାଯାଇଥାଏ । ଏଥିରେ ଖ୍ରୀଷ୍ଟଙ୍କ ଜନ୍ମ-ପୂର୍ବରୁ ଚାରିହଜାର ବର୍ଷ ତଳର କାହାଣୀ ଲିପିବଦ୍ଧ ହୋଇଅଛି ।

ଇଉରୋପ ମହାଦେଶରେ ପ୍ରାଚୀନ କାଳରେ ଭାରତର ସଂସ୍କୃତ କାହାଣୀ ପରି ଅସଂଖ୍ୟ ପଶୁପକ୍ଷୀର କାହାଣୀ ପ୍ରଚଳିତ ଥିଲି । ମଧ୍ୟଯୁଗ ସାହିତ୍ୟରେ ଇଉରୋପରେ ଡେକାମେରନ ଗଳ୍ପ ସଂଗ୍ରହ ଅତ୍ୟନ୍ତ ପ୍ରଭାବଶାଳୀ ହୋଇଥିବାର ପ୍ରମାଣ ମିଳୁଅଛି ।

ଭାରତୀୟ ସାହିତ୍ୟରେ ବେଦ ଓ ପୁରାଣ ଅତ୍ୟନ୍ତ ପ୍ରାଚୀନ କାଳର ବୋଲି ପ୍ରମାଣିତ ହୋଇଅଛି । ବେଦରେ ବହୁ କାହାଣୀର ସଙ୍କେତ ରହିଛି । ପୁନଶ୍ଚ, ବେଦର ଅନେକ କାହାଣୀ ପରବର୍ତ୍ତୀ ପୁରାଣ ସାହିତ୍ୟରେ ବିସ୍ତାରିତ ହୋଇଥିବାର କୁହାଯାଇଅଛି । ଉପନିଷଦର ଯମ-ନଚିକେତା, ମୈତ୍ରେୟୀ-ଯାଜ୍ଞବଲ୍କ୍ୟ, ଜବାଲା-ସତ୍ୟକାମ ପ୍ରଭୃତି କାହାଣୀଗୁଡ଼ିକ ସର୍ବଜନ ସୁପରିଚିତ । ଭାରତର ପୁରାଣ ସାହିତ୍ୟ ଅତ୍ୟନ୍ତ ସମୃଦ୍ଧ । ଅଷ୍ଟାଦଶ ପୁରାଣ ଏବଂ ଅସଂଖ୍ୟ ଉପ-ପୁରାଣରେ ଅସୁମାରି କାହାଣୀ ଗ୍ରଥିତ ହୋଇଅଛି । ସେଥିପାଇଁ ପୁରାଣ-ଗୁଡ଼ିକ ବହୁଳ ପ୍ରଚାରିତ ଏବଂ ପ୍ରତ୍ୟେକ ପ୍ରାଦେଶିକ ଭାଷାରେ ତାହା ବହୁକାଳରୁ ପ୍ରଚଳିତ । ରାମାୟଣ, ମହାଭାରତ ଏବଂ ଭାଗବତ ପ୍ରଭୃତି ପୁରାଣ ଗ୍ରନ୍ଥଗୁଡ଼ିକ କାହାଣୀର ମହାସାଗର କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି କାହାଣୀଗୁଡ଼ିକ ଭାରତୀୟ ସାମାଜିକ ଜୀବନକୁ ବହୁକାଳ ପର୍ଯ୍ୟନ୍ତ ପ୍ରଭାବିତ ଏବଂ ଅନୁପ୍ରାଣିତ କରିଆସିଅଛନ୍ତି ।

ଭାରତର ପୁରାଣ ସାହିତ୍ୟ ପରି ମଧ୍ୟ ଏସିଆର-ଆରବ୍ୟ ଉପନ୍ୟାସ ଏବଂ ପାରସ୍ୟ ଉପନ୍ୟାସ ଅତ୍ୟନ୍ତ ମନୋରଞ୍ଜକ ପ୍ରାଚୀନ କାହାଣୀରେ ପରିପୂର୍ଣ୍ଣ । ତେବେ ସେ ଯେ କୌଣସି ଦେଶର ହେଉ ପଛକେ ଏହି କାହାଣୀ-ଗୁଡ଼ିକ ଅତ୍ୟନ୍ତ ଆକର୍ଷଣୀୟ ଏବଂ ନୀତିଗର୍ଭକ । ଭାରତୀୟ ପୁରାଣରେ ବର୍ଣ୍ଣିତ ଦୁଷ୍ମନ୍ତ-ଶକୁନ୍ତଳା, ନଳଦମୟନ୍ତୀ କିମ୍ବା ସାବିତ୍ରୀ-ସତ୍ୟବାନ ପ୍ରଭୃତି କାହାଣୀ ପରିଯୁଗରେ ସାହିତ୍ୟ ସଂସାରକୁ ବିଶେଷ ପ୍ରଭାବିତ କରିଥିଲା ।

ସଂସ୍କୃତ ସାହିତ୍ୟ ପରି ପାଲି ଏବଂ ପ୍ରାକୃତ ସାହିତ୍ୟରେ ସୁଦ୍ଧା ସମୃଦ୍ଧ କାହାଣୀ-ସାହିତ୍ୟର ପରିଚୟ ମିଳେ । ଇଉରୋପ ସାହିତ୍ୟର ଏସପ୍‌ଙ୍କ ଗଳ୍ପ ପରି ସଂସ୍କୃତ ପଞ୍ଚତନ୍ତ୍ର, ହିତୋପଦେଶ ଯେପରି ଲୋକପ୍ରିୟ, ସେହିପରି ବୌଦ୍ଧ-ସାହିତ୍ୟର ଜାତକଗଳ୍ପଗୁଡ଼ିକ ମଧ୍ୟ ଏହି ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । ସଂସ୍କୃତ ସାହିତ୍ୟରେ ବହୁ କାହାଣୀ ଗ୍ରନ୍ଥର ପରିଚୟ ମିଳେ । ସେମାନଙ୍କ ମଧ୍ୟରେ ଚିନ୍ତାମଣି ଭଟ୍ଟଙ୍କ ଶୁକ-ସପ୍ତତି, ଶିବଦାସଙ୍କ ବେତାଳ ପଞ୍ଚବିଂଶତି, ବତିଶସିଂହାସନ; ଗୁଣାଢ୍ୟଙ୍କ ବୃହତ୍ କଥା ଅବଲମ୍ବନରେ କ୍ଷେମେନ୍ଦ୍ରଙ୍କ ବୃହତ୍ କଥା ମଞ୍ଜରୀ, ସୋମଦେବଙ୍କ କଥା ସରିତ ସାଗର ପ୍ରଭୃତି ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ବିଭିନ୍ନ ଦେଶର ଓ ସାହିତ୍ୟର ଏହି କାହାଣୀଗୁଡ଼ିକ ଯେଉଁ କାଳର ହେଉନା କାହିଁକି, ସେଗୁଡ଼ିକ ଶିକ୍ଷଣୀୟ । ନୀତିଗର୍ଭକ, ଆକର୍ଷଣୀୟ ଏବଂ ଅନେକ ସମୟରେ ବୁଦ୍ଧିପ୍ରଦ ମଧ୍ୟ । ଚିତ୍ତବିନୋଦନ ଉଦ୍ଦେଶ୍ୟରେ ଏଗୁଡ଼ିକର ସୃଷ୍ଟି ହୋଇଥିଲେ ହେଁ ତାହାର ସାମାଜିକ ମୂଲ୍ୟବୋଧକୁ ଅସ୍ୱୀକାର କରିଯାଇ ପାରିବ ନାହିଁ ।

ଆଧୁନିକ କାଳରେ ମୁଦ୍ରାଯନ୍ତ୍ରର ପ୍ରସାଦରୁ କେତେକ କାହାଣୀ ଲିପିବଦ୍ଧ ହୋଇଅଛି । ୧୯୨୧ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସ ୧୨ ତାରିଖ ଦିନ ଶ୍ରୀ ରାଘବାନନ୍ଦ ଦାସ "ଉତ୍କଳ କାହାଣୀ ସଂଗ୍ରହ" ପ୍ରକାଶ କରିଥିଲେ । ତାଙ୍କ ପରେ ଗୋପାଳଚନ୍ଦ୍ର ପ୍ରହରାଜ "ଉତ୍କଳ କାହାଣୀ" ସଂଗ୍ରହ କରି ପ୍ରକାଶ କଲେ । ଅତ୍ୟାଧୁନିକ ଯୁଗରେ ବହୁ ପୁସ୍ତକ ପ୍ରତିଷ୍ଠାନ ନାନା ଭାବରେ କାହାଣୀ ସଂଗ୍ରହ ଓ ପ୍ରକାଶ କରିଅଛନ୍ତି ଏବଂ ଶ୍ରୀ କୁଞ୍ଜବିହାରୀ ଦାସଙ୍କ କାହାଣୀ ସଂଗ୍ରହ ଏ କ୍ଷେତ୍ରରେ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ପଦକ୍ଷେପ ବୋଲି ସ୍ୱୀକୃତ । ତଥାପି ହଜାର ହଜାର କାହାଣୀ ଲୋପ ହୋଇଯିବା ଆସନ୍ନ ପ୍ରାୟ ।

ସେ ଯାହା ହେଉ, ଏହି କାହାଣୀଗୁଡ଼ିକ ଆଲୋଚନା କଲେ ତାହାକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରା ଯାଇପାରେ । ତାହା ହେଲା—(୧) କଳ୍ପନା ପ୍ରଧାନ, (୨) ଅଲୌକିକ ।

କାହାଣୀଗୁଡ଼ିକ ଅଲୌକିକ କିମ୍ବା କଳ୍ପନାପ୍ରଧାନ ହୁଅନ୍ତୁନା କାହିଁକି, ତହିଁରେ ମୁଖ୍ୟତଃ ଦେବଲୋକ ଏବଂ ନରଲୋକର ଘଟଣାବଳୀ ବର୍ଣ୍ଣନା କରାଯାଇଥାଏ । ଅଧିକାଂଶ କାହାଣୀରେ ଶିବ ଓ ପାର୍ବତୀଙ୍କର ପ୍ରାଧାନ୍ୟ ସ୍ୱୀକୃତ । ସେମାନେ ମଧ୍ୟ-ରାତ୍ରିରେ ସଂସାରର ହାଲଚାଲ ବୁଝିବା ପାଇଁ ଆକାଶ ମାର୍ଗରେ ଭ୍ରମଣ କରନ୍ତି । ସେହି କାଳରେ କେହି ଦୁଃଖୀ ଲୋକର କରୁଣ କ୍ରନ୍ଦନ ହଠାତ୍ ପାର୍ବତୀଙ୍କର କର୍ଣ୍ଣଗୋଚର ହେଲେ, ସେ ଶିବଙ୍କୁ ବାଧ କରି ପୃଥିବୀକୁ ଓହ୍ଲାଇ ଆସନ୍ତି ବରପ୍ରଦାନ କରିବା ପାଇଁ । ଶିବଙ୍କ ଅପେକ୍ଷା ପାର୍ବତୀ ଅଧିକ ଦୟା ପ୍ରଦର୍ଶନ କରିବା ଜଣାଯାଏ । ମନ୍ତ୍ରପାଣି ଛିଞ୍ଚି ସେମାନେ ମୃତକୁ ଜୀବଦାନ କରନ୍ତି, ଦୁଃଖୀଲୋକର ଦୁଃଖ ମୋଚନ କରନ୍ତି ଏବଂ ନିର୍ଧନ ବ୍ୟକ୍ତିକୁ ଧନ ଦାନ କରନ୍ତି ।

ସବୁ ଦେଶର ପ୍ରାଚୀନ କାହାଣୀରେ ଜୀବଜନ୍ତୁ ସଂସାରର ପ୍ରାଧାନ୍ୟ ଲକ୍ଷ୍ୟ କରାଯାଏ । ସେମାନେ ମଣିଷମାନଙ୍କ ପରି ଚଳପ୍ରଚଳ ହୁଅନ୍ତି, ସୁଖ ଦୁଃଖରେ ସାଥୀ ହୁଅନ୍ତି, ପରମ ବନ୍ଧୁ ପରି ବିପଦରେ ମଧ୍ୟ ସାହାଯ୍ୟ କରନ୍ତି । ରାଜ୍ୟରେ ସିଂହାସନ ଖାଲି ପଡ଼ିଲେ ପାଟହାତୀ ସୁନା କଳସ ଧରି ଯାହା ମୁଣ୍ଡରେ ଥୁଏ, ସେ ରାଜପଦରେ ଅଭିଷିକ୍ତ ହୁଏ । ପକ୍ଷୀରାଜ ଘୋଡ଼ାରେ ରାଜାପୁଅ ରାଜ୍ୟ ତମାମ ଭ୍ରମଣ କରେ । ବେଳେ ବେଳେ ମଧ୍ୟ-ରାତ୍ରିରେ ପକ୍ଷୀମାନେ ଭବିଷ୍ୟତ ବାଣୀ ପ୍ରଚାର କରି ରଜାପୁଅକୁ ବିପଦରୁ ଉଦ୍ଧାର କରନ୍ତି ।

ରାଜାପୁଅ, ମନ୍ତ୍ରୀପୁଅ, କଟୁଆଳ ପୁଅ, ସାଧବପୁଅ, ମାଲ୍ୟାଣୀ,ମାଳୀ, ଅସୁର ଅସୁରୁଣୀ ପ୍ରଭୃତି କାହାଣୀର ପ୍ରଧାନ ଚରିତ୍ର । ବିଦେଶଗମନ କାଳରେ ରାଜପୁତ୍ର ଏବଂ ତାର ବନ୍ଧୁମାନେ ନାନା ଦୁଃସାହସିକ ଅନୁଭୂତିର ସମ୍ମୁଖୀନ ହୋଇ ଶେଷରେ ସଫଳତା ଅର୍ଜନ କରନ୍ତି । ଅସୁର ଅସୁରୁଣୀଙ୍କୁ କେନ୍ଦ୍ର କରି ନାନା ଅଲୌକିକ ବସ୍ତୁରକୁ ସ୍ଥାନ ଦିଆ ଯାଇଥାଏ । କାହାଣୀ-ଗୁଡ଼ିକ ସାଧାରଣତଃ ନୀତିଗର୍ଭକ । ଏଥିରେ ସାମାନ୍ୟ ଦୋଷପାଇଁ ବେଳେ-

ବେଳେ ଅତ୍ୟନ୍ତ କଠୋର ଦଣ୍ଡର ବ୍ୟବସ୍ଥା କରାଯାଇଥାଏ । ସତ୍ୟ ଓ ବନ୍ଧୁତା ରକ୍ଷାପାଇଁ ସର୍ବଶ୍ରେଷ୍ଠ ତ୍ୟାଗ ସ୍ୱୀକାର କରିବାକୁ ମଧ୍ୟ କେହି ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ସାମାନ୍ୟ ସ୍ୱାର୍ଥପାଇଁ ବିଶ୍ୱାସଘାତକତାର ମଧ୍ୟ ଅବକାଶ ରହିଥାଏ । ତେବେ କାହାଣୀ ସାହିତ୍ୟରେ ପ୍ରେମାନୁଭୂତି ଆଦର୍ଶ-ବ୍ୟଞ୍ଜକ ନୁହେଁ । ଏଠାରେ ରାଜପୁତ୍ର ସଙ୍କେତ ପ୍ରଦାନ କରି ରାଜପୁତ୍ରୀକୁ ଗ୍ରହଣ କରେ କିମ୍ବା ଅପହରଣ କରିନିଏ;ଅଥବା ଛଦ୍ମବେଶରେ ଅନ୍ତଃପୁରରେ ପ୍ରବେଶ କରି ରାଜକନ୍ୟା ସହିତ ରାତ୍ରି ଯାପନ କରିଥାଏ । ମାଲ୍ୟାଣୀ ବୁଢ଼ୀ ମନ୍ତ୍ରବଳରେ କୌଣସି ପ୍ରବାସୀ ଯୁବକକୁ ଧଳାଫୁଲ ଶୁଙ୍ଘାଇ ଦିବା ଭାଗରେ ମେଣ୍ଢା କରିଦିଏ ଏବଂ କଳାଫୁଲ ଦ୍ୱାରା ରାତ୍ରିରେ ପରିଣତ କରି ତାହା ସହିତ ଗୋପନରେ କେଳି ରଚନା କରିଥାଏ ।

କାହାଣୀ ସାହିତ୍ୟର ଏହି ପରଂପରା ମଧ୍ୟରେ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଦୁଇଟି ରଚନା ଅତ୍ୟନ୍ତ ଉଲ୍ଲେଖ ଯୋଗ୍ୟ । କବି ଘନକୃଷ୍ଣଙ୍କ "ପ୍ରସ୍ତାବସିନ୍ଧୁ" ଏବଂ କବି ବ୍ରଜନାଥ ବଡ଼ଜେନାଙ୍କ "ଚତୁରବିନୋଦ" ଏହିପରି କାହାଣୀ ରୀତିରେ ଲେଖାଯାଇଥିଲା ।

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ସାମୟିକ ସାହିତ୍ୟ ପତ୍ରିକାର ଅଭ୍ୟୁଦୟ ଯୋଗୁଁ ଓଡ଼ିଆ ସାହିତ୍ୟରେ କ୍ଷୁଦ୍ରଗଳ୍ପର ଆବିର୍ଭାବ ହେବାପାଇଁ ଉପଯୁକ୍ତ ପାଣିପାଗ ପ୍ରସ୍ତୁତ ହେଲା । କେବେ କେଉଁ ପତ୍ରିକାରେ ପ୍ରଥମ ଓଡ଼ିଆ କ୍ଷୁଦ୍ରଗଳ୍ପ ପ୍ରକାଶିତ ହୋଇଥିଲା ତାହା ଏବେ ମଧ୍ୟ ସିଦ୍ଧାନ୍ତ ହୋଇ ପାରି ନାହିଁ । ସେ କାଳର ଉପନ୍ୟାସ ଏବଂ ଗଳ୍ପ ବୋଲି ଯେଉଁଗୁଡ଼ିକ ପ୍ରକାଶ ପାଉଥିଲା, ତାହା ଆଧୁନିକ ଅର୍ଥରେ କ୍ଷୁଦ୍ରଗଳ୍ପ ହେବ କି ନାହିଁ, ତାହା ଏକ ସ୍ୱତନ୍ତ୍ର ବିଚାର । ତେବେ ଫକୀରମୋହନଙ୍କ ଆତ୍ମଚରିତକୁ ଉଲ୍ଲେଖ କରି ଲିଖିତ "ଲଛମନିଆ" ଗଳ୍ପ ଓଡ଼ିଆ ସାହିତ୍ୟର ସର୍ବପ୍ରଥମ ପ୍ରକାଶିତ କ୍ଷୁଦ୍ରଗଳ୍ପ ବୋଲି ଦାବୀ କରାଯାଇଥାଏ । ୧୮୬୮ ଖ୍ରୀଷ୍ଟାବ୍ଦରେ 'ବୋଧଦାୟିନୀ' ପତ୍ରିକାରେ ଫକୀରମୋହନ 'ଲଛମନିଆ' ଲେଖାଟି ପ୍ରକାଶ କରିଥିଲେ । ମାତ୍ର ଗଳ୍ପସ୍ୱଳ୍ପରେ ପ୍ରକାଶିତ ତାଙ୍କର ଗଳ୍ପଗୁଡ଼ିକ ଦୀର୍ଘ ତିରିଶ ବର୍ଷ ପରେ ଲିଖିତ ଓ ପ୍ରକାଶିତ ହୋଇଥିଲା । ସେହି କାରଣରୁ 'ଲଛମନିଆ' କି ପ୍ରକାରର ଗଳ୍ପ, ତାହା ଏପର୍ଯ୍ୟନ୍ତ ପାଠକ ସମାଜର ଦୃଷ୍ଟିଗୋଚର

ହୋଇନାହିଁ । ପତ୍ରିକାଗୁଡ଼ିକୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ସେ କାଳର ସମ୍ପାଦକଗଣ ବେଳେବେଳେ ମନୋରଞ୍ଜକ କାହାଣୀ ପ୍ରକାଶ କରୁଥିଲେ । ଉଦାହରଣ ସ୍ୱରୂପ ବିଖ୍ୟାତ ସାହିତ୍ୟ ପତ୍ରିକା "ଉତ୍କଳ ସାହିତ୍ୟ"ର ଗୋଟିଏ ବର୍ଷର ପର୍ଯ୍ୟାଲୋଚନା କରାଯାଇପାରେ । ଏହି ପତ୍ରିକାର ଚତୁର୍ଥ ବର୍ଷର ବାରଗୋଟି ଯାକ ସଂଖ୍ୟାରେ ଶ୍ରୀମତୀ ରେବାରାୟଙ୍କ "ଶକୁନ୍ତଳା" ଗଳ୍ପଟି ବ୍ୟତୀତ ଆଉ କେହି କ୍ଷୁଦ୍ରଗଳ୍ପ ଲେଖିନାହାନ୍ତି । ଗୋପାଳ ପ୍ରହରାଜଙ୍କର ଗୃନ୍ଥଗୋଟି ଏବଂ ଆଉ ଦୁଇଜଣ ଲେଖକଙ୍କ ଦ୍ୱାରା ଦୁଇଟି, ଏହିପରି ଛଅଗୋଟି କାହାଣୀ ପ୍ରକାଶିତ ହୋଇଅଛି । କବି ରାଧାନାଥ ମୁଖ୍ୟତଃ କାବ୍ୟକବିତା ଲେଖିଥିଲେହେଁ ୧୮୭୩ ଖ୍ରୀଷ୍ଟାବ୍ଦର 'ଉତ୍କଳ ଦର୍ପଣ' ପତ୍ରିକାରେ ସେ "ଇଟାଲୀୟ ଯୁବା" ଗଳ୍ପଟି ଲେଖି ପ୍ରକାଶ କରିଥିଲେ । ଏହା ଏକ ବିଦେଶୀ ଲେଖାର ମର୍ମାନୁବାଦ ମାତ୍ର । ସେହିବର୍ଷ ମଧୁସୂଦନ ରାଓଙ୍କ "ଚନ୍ଦ୍ର ଓ ତାରା" "ଉତ୍କଳ ଦର୍ପଣ"ରେ ଆତ୍ମପ୍ରକାଶ କରିଥିଲା । ଏହାକୁ ଖାଣ୍ଟି ଗଳ୍ପ କହିବାର କୌଣସି କାରଣ ନାହିଁ । ଗଳ୍ପ ଢଙ୍ଗରେ ଏହା ଲିଖିତ ଏବଂ ଏକ ପାଶ୍ଚାତ୍ୟ ଲେଖାର ମର୍ମାନୁସରଣ । ୧୮୭୫ ଖ୍ରୀଷ୍ଟାବ୍ଦରେ ଭକ୍ତକବି ମଧୁସୂଦନଙ୍କ "ପ୍ରଣୟର ଅଦ୍ଭୁତ ପରିଣାମ" ଉତ୍କଳ ଦର୍ପଣରେ ପ୍ରକାଶିତ ହେଲା । ପାଶ୍ଚାତ୍ୟ ସାହିତ୍ୟର ନାୟକ ନାୟିକା 'ହେନେରୀ ଓ ମାଟିଲଡ଼ା'ଙ୍କ ପ୍ରଣୟ କାହାଣୀ ଏହି ଲେଖାଟିର ମୁଖ୍ୟ କଥାବସ୍ତୁ । ୧୮୯୭ ଖ୍ରୀଷ୍ଟାବ୍ଦରେ "ଉତ୍କଳ ସାହିତ୍ୟ" ପତ୍ରିକାରେ ମଧୁସୂଦନଙ୍କ "ହେମମାଳା" ପ୍ରକାଶିତ ହେଲା । ମୌଳିକ ଗଳ୍ପ ଲେଖକ ନ ହେଲେ ମଧ୍ୟ ଗଳ୍ପ ସାହିତ୍ୟ ପ୍ରତି ଓଡ଼ିଶାର ପାଠକ ସମାଜରେ ଆଗ୍ରହ ସୃଷ୍ଟି କରିବା ପାଇଁ ରାଧାନାଥ ସାହିତ୍ୟ ପ୍ରତି ଓଡ଼ିଶାର ପାଠକ ସମାଜରେ ଆଗ୍ରହ ସୃଷ୍ଟି କରିବା ପାଇଁ ରାଧାନାଥ ଏବଂ ମଧୁସୂଦନଙ୍କ ଲେଖନୀ ଯେ ଚଞ୍ଚଳ ହୋଇ ଉଠିଥିଲା, ଏଥିରେ ସନ୍ଦେହ ନାହିଁ ।

ଓଡ଼ିଆ ଗଳ୍ପ ସାହିତ୍ୟକୁ "ଉତ୍କଳ ସାହିତ୍ୟ", "ମୁକୁର" ଏବଂ "ବାରୁଣୀ" ପ୍ରଭୃତି ପତ୍ରିକାର ଦାନ ଅତ୍ୟନ୍ତ ମହାନ୍ ବୋଲି ସ୍ୱୀକାର କରିବାକୁ ହେବ । କାରଣ ସେ କାଳରେ ଆଉ କେତେକ ସାହିତ୍ୟ ପତ୍ରିକା କ୍ଷୁଦ୍ରଗଳ୍ପକୁ ଆଦୌ ଉତ୍ସାହିତ କରୁ ନ ଥିଲେ । ଗୋପବନ୍ଧୁଙ୍କ ସମ୍ପାଦିତ "ସତ୍ୟବାଦୀ" ସାହିତ୍ୟ ପାର୍ଦ୍ଧ ପାଞ୍ଚଟି ବର୍ଷର ପ୍ରକାଶ କାଳ ମଧ୍ୟରେ ଗୋଟିଏ

ସୁଦ୍ଧା କ୍ଷୁଦ୍ରଗଳ୍ପ ପ୍ରକାଶକର ନଥିଲେ । ସମାଲୋଚନା ସାହିତ୍ୟର ବିକାଶ ପାଇଁ 'ସତ୍ୟବାଦୀ' ପ୍ରଥମେ ଧ୍ୟାନ ଦେଇଥିଲେ । ମାତ୍ର ଶେଷରେ ସେମାନେ ଅନୁଭବ କଲେ ଯେ, ଗଳ୍ପ ଉପନ୍ୟାସ ସ୍ଥାନ ନ ପାଇଲେ ପତ୍ରିକା ଲୋକପ୍ରିୟ ହେବ ନାହିଁ । ତେଣୁ ଷଷ୍ଠବର୍ଷର ପ୍ରଥମ ସଂଖ୍ୟାରେ ଗଳ୍ପ ଉପନ୍ୟାସ ଏହି ପତ୍ରିକାରେ ସ୍ଥାନ ପାଇବ ବୋଲି ଘୋଷଣା କରିଥିଲେ । ବାସ୍ତବିକ ଏହି ପ୍ରଥମ ସଂଖ୍ୟାରେ "ଅନବାସୀ ଗୋଏନ୍ଦା" ଛଦ୍ମ ଲେଖକର "ଯୁବକର ଅଭିଜ୍ଞତା" ଶୀର୍ଷକ ଗଳ୍ପ ପ୍ରକାଶ ପାଇଥିଲା । ଏହି ଗଳ୍ପରେ ସେ କାଳର ପୋଲିସ କର୍ମଚାରୀଙ୍କ ଅତ୍ୟାଚାର, ସାଧାରଣ ଲୋକଙ୍କ ଦାରିଦ୍ର୍ୟ ଏବଂ ସେଥିପ୍ରତି ଶାସନ କଳର ବିମୁଖତା ସମ୍ପର୍କରେ ବର୍ଣ୍ଣନା କରାଯାଇଥିଲା । ସେହିବର୍ଷର ଦ୍ୱିତୀୟ ସଂଖ୍ୟାରେ ଶ୍ରୀ କୃଷ୍ଣଚନ୍ଦ୍ର ପଟ୍ଟନାୟକ, ବି.ଏ. ଙ୍କ "ଅନୁତାପ" ଗଳ୍ପ ପ୍ରକାଶିତ ହେଲା । ଏହି ଗଳ୍ପରେ ଜନସାଧାରଣଙ୍କ ଇଂରେଜୀଶିକ୍ଷା ପ୍ରତି ମୋହ ଏବଂ ଏ ଦେଶର ପ୍ରାଚୀନ ପରଂପରା ପ୍ରତି ଅବିଶ୍ୱାସ ପ୍ରକଟିତ ହୋଇଥିଲା । ପରବର୍ତ୍ତୀ ସଂଖ୍ୟା ଗୁଡ଼ିକରେ ପଣ୍ଡିତ ବାସୁଦେବ ମହାପାତ୍ର ରାଜପୁତ୍ର ଇତିହାସ ଅବଲମ୍ବନରେ କେତେକ କାହାଣୀ ଲେଖି ପ୍ରକାଶ କରିଥିଲେ । ତେଣୁ କ୍ଷୁଦ୍ରଗଳ୍ପ ପ୍ରକାଶ କରିବାରେ ସତ୍ୟବାଦୀ ବିଶେଷ ଅଗ୍ରସର ହୋଇ ପାରିଲେ ନାହିଁ ।

ଓଡ଼ିଆ ଗଳ୍ପ ସାହିତ୍ୟର ଏହି ଅଭ୍ୟୁଦୟ ଯୁଗରେ ବାସ୍ତବିକ ଫକୀରମୋହନ ସେନାପତି ଏବଂ ଚନ୍ଦ୍ରଶେଖର ନନ୍ଦ ଅତ୍ୟନ୍ତ ସ୍ମରଣୀୟ । ଉଭୟେ ସମକାଳୀନ ଥାଇ ଓଡ଼ିଆ ଗଳ୍ପସାହିତ୍ୟର ବିକାଶ ଦିଗରେ ଯଥେଷ୍ଟ ଉତ୍ସାହ ପ୍ରଦାନ କରିଥିଲେ । ଫକୀର ମୋହନଙ୍କ ଗଳ୍ପ ପୁସ୍ତକ 'ଗଳ୍ପସ୍ୱଳ୍ପ' ୧୯୧୭ ସାଲରେ ଆତ୍ମପ୍ରକାଶ କରିଥିଲା । କିନ୍ତୁ ଚନ୍ଦ୍ରଶେଖର ନନ୍ଦଙ୍କ ଗଳ୍ପ ସଂକଳନ "ଚିତ୍ର" ୧୯୦୭ ଖ୍ରୀଷ୍ଟାବ୍ଦରେ ମୁଦ୍ରିତ ହୋଇଥିଲା । ଏହି ପୁସ୍ତକର ମୁଖବନ୍ଧ ରଚନା କରିଥିଲେ ସ୍ୱନାମଧନ୍ୟ ରାଧାନାଥ ରାୟ । ସେ ମତ ପ୍ରକାଶ କରିଥିଲେ ଯେ, ସେତେବେଳେ ଭାରତୀୟ ଭାଷାମାନଙ୍କରେ ଏ ଶ୍ରେଣୀର ପୁସ୍ତକ ସଂଖ୍ୟା ଅଙ୍ଗୁଳି-ଗଣନୀୟ ମାତ୍ର । ଅପେକ୍ଷାକୃତ ଉନ୍ନତତର ବଙ୍ଗଳା ସାହିତ୍ୟରେ ସୁଦ୍ଧା ଆଠ ଦଶଖଣ୍ଡିରୁ ଅଧିକ ପୁସ୍ତକ ଦେଖିବାକୁ ମିଳୁ ନଥିଲା । ଦୁଃଖର କଥା ଯେ, ଓଡ଼ିଆ ଗଳ୍ପ ସାହିତ୍ୟର ଏହି ଅନ୍ୟତମ ଆଦ୍ୟ ପୁରୋଧା ଆଜି ଆଲୋଚନା ସ୍ତରରେ ବିସ୍ମୃତ ପ୍ରାୟ ।

ତାଙ୍କର "ଓଡ଼" ପୁସ୍ତକରେ ସର୍ବମୋଟ ଏଗାରଟି ଗଳ୍ପ ସଂକଳିତ ହୋଇଥିବା ଜଣାଯାଏ ଏବଂ ଏହି ଗଳ୍ପଗୁଡ଼ିକ ବିଭିନ୍ନ କାଳରେ ମୁକୁର, ପ୍ରଦୀପ, ଉତ୍କଳ ସାହିତ୍ୟ ପ୍ରଭୃତି ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ସେ କାଳରେ ଗଳ୍ପ ଲେଖକଗଣ ସମ୍ପୂର୍ଣ୍ଣ ନୀତିଧର୍ମୀ ଥିଲେ ଏବଂ ପ୍ରତ୍ୟେକ ଗଳ୍ପର ପ୍ରାରମ୍ଭରେ ନୀତିଧର୍ମର ପ୍ରତିଷ୍ଠା ପାଇଁ ପ୍ରାଚ୍ୟ ଅଥବା ପାଶ୍ଚାତ୍ୟ ସାହିତ୍ୟର ଉଦ୍ଧୃତାଂଶ ପ୍ରଦାନ କରାଯାଉଥିଲା । ଫକୀର ମୋହନ 'ରେବତୀ' ଗଳ୍ପର ପ୍ରାରମ୍ଭରୁ Rev .J H. Gurney ଙ୍କ ଏକ ନୀତିମୂଳ ବାକ୍ୟ ସ୍ଥାନ ଦେଇଥିଲେ । ତାହା ହେଲା—

"But of some shining April morn
Is darkened in an hour,
And blackest griefs o'er joyous home
Alas ! unseen may lower."

ଶ୍ରୀ ଚନ୍ଦ୍ରଶେଖର ନନ୍ଦ ତାଙ୍କର ପ୍ରତ୍ୟେକଟି ଗଳ୍ପର ପ୍ରାରମ୍ଭରେ ଇଂରେଜୀ, ସଂସ୍କୃତ, ଓଡ଼ିଆ ସାହିତ୍ୟର ନୀତିମୂଳ ବଚନଗୁଡ଼ିକ ଉଦ୍ଧାର କରୁଥିଲେ । "ସଂଯମ" ଗଳ୍ପର ପ୍ରାରମ୍ଭରେ ସେ ବିଷ୍ଣୁଶର୍ମାଙ୍କୁ ଉଦ୍ଧାର କରି ଲେଖିଥିଲେ—

"ଆପଦାଂ କଥିତଃ ପନ୍ଥା ଇନ୍ଦ୍ରିୟାଣାମସଂଯମଃ"
"ଗଦା ଡ଼ାକାଏତ" ଗଳ୍ପ ପୂର୍ବରୁ ଲେଖିଥିଲେ—
"ଧର୍ମ, ଧର୍ମମୟ କର୍ମ, ଦୟା, ଭକ୍ତି; ପ୍ରୀତି
ଦେହେ ସିଂହସମ ବଳ, ପରହିତେ ରତି,
ଦୁଷ୍ଟବିନାଶନ, ଶିଷ୍ଟେ ଅଭୟ ପ୍ରଦାନ
ଯେ କରେ ନିତ୍ୟ ସାଧନ, ଧନ୍ୟ ତା ଜୀବନ ।"

"ବ୍ରେଷ୍ଟା ରାମଦାସ" ଗଳ୍ପ ଆରମ୍ଭରୁ P. J. Baigle ଙ୍କ ଏକ ବାଣୀ ଥିଲା ଏହିପରି—"He most lives who thinks most, feels the noblest, acts the best."

ବାସ୍ତବିକ ସେ ଯୁଗର ଗାଳ୍ପିକ ଗଣ ଜନପଦରେ ଘଟୁଥିବା ସାଧାରଣ ଦୈନନ୍ଦିନ ଘଟଣାଗୁଡ଼ିକ ଅବଲମ୍ବନ କରି ଚରିତ୍ର ଚିତ୍ରଣ କରୁଥିଲେ ହେଁ ଗଳ୍ପର ପ୍ରଧାନ ଲକ୍ଷ୍ୟ ଥିଲା ସୁନୀତି ଗର୍ଭକ ଏବଂ ଲୋକ ଚରିତ୍ର—ଶିକ୍ଷା ପ୍ରଦାୟକ ।

ଶ୍ରୀ ଚନ୍ଦ୍ରଶେଖର ନନ୍ଦ କେବଳ ଗଳ୍ପସ୍ରଷ୍ଟା ନଥିଲେ, ସେ ଥିଲେ ଜଣେ ଉଚ୍ଚଦରର ସମାଲୋଚକ ଓ ପ୍ରାବନ୍ଧିକ । ତାଙ୍କର ଆଲୋଚନା ପ୍ରବନ୍ଧ ଏପର୍ଯ୍ୟନ୍ତ ସମାଲୋଚିତ ହୋଇ ନାହିଁ । କ୍ଷୁଦ୍ରଗଳ୍ପର କଳାଗିରି ସଂପର୍କରେ ସେ ହେଉଛନ୍ତି ଓଡ଼ିଆ ସାହିତ୍ୟରେ ସର୍ବପ୍ରଥମ ସମାଲୋଚକ । 'ଉତ୍କଳ ସାହିତ୍ୟ' ପତ୍ରିକାର ୮ମ ଭାଗ ପ୍ରଥମ ସଂଖ୍ୟାରେ ଚନ୍ଦ୍ରଶେଖର ନନ୍ଦ ଲେଖିଥିଲେ—"ଉନ୍ନତ ସାହିତ୍ୟ ସଂସାରରେ 'କ୍ଷୁଦ୍ରଗଳ୍ପ'ର ଆସନ ଉଚ୍ଚ, ଏକଥା କେହି ଅସ୍ୱୀକାର କରିବେ ନାହିଁ । ନାଟକ, ଉପନ୍ୟାସ ଓ ଆଧ୍ୟାତ୍ମିକ ତତ୍ତ୍ୱପୂର୍ଣ୍ଣ ଦାର୍ଶନିକ ପ୍ରବନ୍ଧର ସଂକଳନ ପରି କ୍ଷୁଦ୍ରଗଳ୍ପର ରଚନା ନିଶ୍ଚୟ ନୈପୁଣ୍ୟ ସାପେକ୍ଷ ଓ କୃତିତ୍ୱର ପରିଚାୟକ । "କ୍ଷୁଦ୍ରଗଳ୍ପ"କୁ ଅଳୀକ କାହାଣୀ ବୋଲି ହେୟଜ୍ଞାନ କରିବା ନିତାନ୍ତ ଅସଙ୍ଗତ × × । ପ୍ରକୃତ କ୍ଷୁଦ୍ରଗଳ୍ପର ଆଦର୍ଶ ଫରାସି ସାହିତ୍ୟରେ ଦୃଷ୍ଟ ହୁଏ । ଇଂରାଜୀ ସାହିତ୍ୟ ମଧ୍ୟ ଏ ବିଷୟରେ ନ୍ୟୁନ ନୁହେଁ । ବଙ୍ଗ ସାହିତ୍ୟରେ ଜଣେ ଜଣେ ଖ୍ୟାତନାମା ଲେଖକ ଏ ବିଷୟରେ ହସ୍ତକ୍ଷେପ କରି ସଫଳ ହୋଇ ଅଛନ୍ତି । ବଙ୍ଗୀୟ ମାସିକ ପତ୍ରିକାରେ 'କ୍ଷୁଦ୍ରଗଳ୍ପ'ର ପ୍ରାଚୁର୍ଯ୍ୟ ଲକ୍ଷିତ ହୁଏ । ତନ୍ମଧ୍ୟରୁ ଅନେକ ଉଲ୍ଲେଖଯୋଗ୍ୟ ନୁହନ୍ତି । କିନ୍ତୁ ଉତ୍କଳସାହିତ୍ୟ ଆଜି ସବୁ ବିଷୟ ପରି ଏ ବିଷୟରେ ମଧ୍ୟ ନିତାନ୍ତ ପଶ୍ଚାତ୍ ପଦ । କେହି କେହି ଉତ୍କଳ ସାହିତ୍ୟସେବୀ ଏ ବିଷୟରେ ଅଗ୍ରସର ହେବା ବାଞ୍ଛନୀୟ ।"

ଚନ୍ଦ୍ରଶେଖରଙ୍କ ଏହି ଆଲୋଚନା ଦ୍ୱାରା ସେକାଳର ଓଡ଼ିଆ ଗଳ୍ପ ସାହିତ୍ୟ, ତାହାର ପାଠକ ଏବଂ ଲେଖକମାନଙ୍କ ସମ୍ପର୍କରେ ସମ୍ୟକ୍ ଆଲୋକପାତ କରିଥାଏ ।

ତେବେ ଫକୀରମୋହନ ଏବଂ ଚନ୍ଦ୍ରଶେଖରଙ୍କ ପରେ ପରେ ଓଡ଼ିଆ ସାହିତ୍ୟରେ ଲକ୍ଷ୍ମୀକାନ୍ତ ମହାପାତ୍ର, ଗୋଦାବରୀଶ ମିଶ୍ର, ବୈଷ୍ଣବ ଚରଣ

ଦାସ, ବାଙ୍କନିଧି ପଟ୍ଟନାୟକ ପ୍ରଭୃତି ଗଳ୍ପ ରଚନାରେ ମନୋନିବେଶ କରିଥିଲେ । ବିଂଶ ଶତାବ୍ଦୀର ପ୍ରଥମ ଦୁଇଟି ଦଶକରେ ବିଶେଷତଃ ୧୯୦୮ ଠାରୁ ୧୯୧୫ ମଧ୍ୟରେ ମୁକୁର ପତ୍ରିକାରେ କେତେକ ନବୀନ ଲେଖକ ଗଳ୍ପ ସାହିତ୍ୟ ସୃଷ୍ଟିପାଇଁ ସାହସିକ ପଦକ୍ଷେପ ଗ୍ରହଣ କରିଥିଲେ । ଏହି ପତ୍ରିକାରେ ଫକୀରମୋହନଙ୍କ ରାଣ୍ଡୀପୁଅ ଅନନ୍ତା, ବାଲେଶ୍ୱରୀ ରାହାଜାନୀ, ଶ୍ରୀ ଜଗନ୍ନାଥ ବଲ୍ଲଭ ଘୋଷଙ୍କ 'ବିମାତା' 'ନିଶୀଥସ୍ୱପ୍ନ' । ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ 'ପରୀକ୍ଷାର ଫଳ','ବୁଢ଼ା ଶଙ୍ଖାରି','ଭଦ୍ରକାଳୀ', ଦିବ୍ୟସିଂହ ପାଣିଗ୍ରାହୀଙ୍କ 'ପିତୃ ଶ୍ରାଦ୍ଧ', 'ମାଳୀ', ଶ୍ରୀ ଚନ୍ଦ୍ରଶେଖର ପଟ୍ଟନାୟକଙ୍କ 'ଅକାରଣ ବ୍ୟସ୍ତ', ଜଣେ ଛଦ୍ମବେଶୀ ଲେଖକଙ୍କର "ବୋହୂରୋଗ" 'ସୁନା ନାକଚଣା', ବ୍ରହ୍ମାନନ୍ଦ ଷଡ଼ଙ୍ଗୀଙ୍କର 'ପାବଣ' ପ୍ରଭୃତି ଗଳ୍ପ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ କେତେକ ଲେଖକ ଇଂରେଜୀ ନାଟକ ଉପନ୍ୟାସର କଥାବସ୍ତୁକୁ ସଂକ୍ଷିପ୍ତ କରି ଏହି ପତ୍ରିକାରେ କାହାଣୀ ଆକାରରେ ପରିବେଷଣ କରିଥିଲେ । ଅନେକ ଲେଖକ ଇଂରେଜୀ କମ୍ବା ବଙ୍ଗଳାଗଳ୍ପର ଅବଲମ୍ବନରେ ଗଳ୍ପ ରଚନା କରୁଥିଲେ । ଲକ୍ଷ୍ମୀକାନ୍ତଙ୍କ ପ୍ରସିଦ୍ଧ ଗଳ୍ପ "ବୁଢ଼ା ଶଙ୍ଖାରି" ଗୋଟିଏ ବଙ୍ଗଳା ଗଳ୍ପର ଅବଲମ୍ବନରେ ଲିଖିତ ବୋଲି ଘୋଷଣା କରାଯାଇଥିଲା । ତେବେ ଏହି କାଳର ଗଳ୍ପ ଲେଖକମାନଙ୍କ ମଧ୍ୟରେ ଲକ୍ଷ୍ମୀକାନ୍ତ ଉଜ୍ଜ୍ୱଳ ଭବିଷ୍ୟତର ସଙ୍କେତ ପ୍ରଦାନ କରୁଥିବାରୁ ଶ୍ରୀ ସଚ୍ଚୀଦାନନ୍ଦ ନାଥ "ଉତ୍କଳ ସାହିତ୍ୟର ଆଧୁନିକ ଅବସ୍ଥା" ଶୀର୍ଷକ ଆଲୋଚନାରେ କ୍ଷୁଦ୍ରଗଳ୍ପ ବିଷୟରେ ଏପରି ମତବ୍ୟକ୍ତ କରିଥିଲେ — "ସୁନ୍ଦର ସୁନ୍ଦର ଶ୍ରେଷ୍ଠଗଳ୍ପ ଲେଖିବାକୁ ପୂର୍ଣ୍ଣତାପ୍ରାପ୍ତ ଗଦ୍ୟର ଆବଶ୍ୟକ । ସେହିପରି ସୁଲେଖକ ନହେଲେ ଶ୍ରେଷ୍ଠ ଗଳ୍ପ ଲେଖାରେ କେବେହେଁ କୃତକାର୍ଯ୍ୟ ହୋଇ ପାରିବ ନାହିଁ । କାରଣ ସ୍ୱଳ୍ପ କେତୋଟି ଚରିତ୍ର ନେଇ ଅଳ୍ପ ସୀମା ମଧ୍ୟରେ ଉପନ୍ୟାସର କାର୍ଯ୍ୟ କରିବା ବଡ଼ ଦୁଷ୍କର । ସାମାନ୍ୟ କେତେ ପୃଷ୍ଠା ମଧ୍ୟରେ ଚରିତ୍ରଗୁଡ଼ିକୁ ଭଲରୂପେ ଫୁଟାଇ ପାରିବା ବହୁ ଅଭ୍ୟାସ ସାପେକ୍ଷ । ଉତ୍କଳୀୟ ନବୀନ ଲେଖକମାନଙ୍କ ମଧ୍ୟରେ ଲକ୍ଷ୍ମୀକାନ୍ତ ଉକ୍ତ ସାଧନାରେ ବ୍ରତୀ ହୋଇଅଛନ୍ତି—ଏହା କମ ସୁଖର ବିଷୟ ନୁହେଁ । ବୃଦ୍ଧ ଫକୀର ମୋହନଙ୍କ ଗଳ୍ପ ଗୁଡ଼ିକ କି ଭାଷା ସୌଷ୍ଠବରେ କି ଚରିତ୍ର ଚିତ୍ରଣରେ ଯେପରି ନୈପୁଣ୍ୟର ପରିଚୟ ଦିଏ,

ତାହା ଯେ କୌଣସି ଭାଷାର ଫକୀର ମୋହନଙ୍କ ତୁଲ୍ୟ ଅନନ୍ୟମନା ସାହିତ୍ୟ ସେବକଙ୍କୁ ଶୋଭା ପାଇପାରେ ।" ୧୯୧୪ ଖ୍ରୀଷ୍ଟାବ୍ଦ "ଉତ୍କଳ ସାହିତ୍ୟ"ର ନବମ ଓ ଦଶମ ସଂଖ୍ୟାରେ ଏହି ଲେଖାଟି ପ୍ରକାଶିତ ହୋଇଥିଲା । ବାସ୍ତବିକ ଅନୁଶୀଳନ କଲେ ଜଣାଯାଉଛି ଯେ ପ୍ରଥମ ମହାଯୁଦ୍ଧ ପରବର୍ତ୍ତୀ କାଳରେ ହିଁ ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର ବିକାଶପାଇଁ ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତ ହୋଇଥିଲା । ନଚେତ୍ ଅଳ୍ପ କେତେକ ଲେଖାଙ୍କୁ ବାଦଦେଲେ ପ୍ରଥମ ମହାଯୁଦ୍ଧ କାଳ ପର୍ଯ୍ୟନ୍ତ ରଚିତ ଗଳ୍ପଗୁଡ଼ିକରେ କାହାଣୀ ଧର୍ମ, ଅନ୍ୟ ସାହିତ୍ୟର ଅବଲମ୍ବନ ବା ଅନୁକରଣ ବିଦ୍ୟମାନ ଥିଲା । ଏହିକାରଣରୁ ଆଧୁନିକ ଗଳ୍ପ ସାହିତ୍ୟର ବିଚାର ପାଇଁ ୧୯୨୦ ସାଲ ପରବର୍ତ୍ତୀ ଓଡ଼ିଆ ସାହିତ୍ୟକୁ ବିଶ୍ଳେଷଣ କରିବାକୁ ହେବ ।

---

# ସୃଷ୍ଟି ଚିନ୍ତନର ଚେତନା

ନାଟକ ଏକ ବାସ୍ତବଧର୍ମୀ କଳା । ସାହିତ୍ୟର ପ୍ରତ୍ୟେକ ବିଭାଗରେ ସାମାଜିକ ଜୀବନର ପ୍ରତିଫଳନ ଅତ୍ୟନ୍ତ ସ୍ୱାଭାବିକ ହେଲେହେଁ ମନୁଷ୍ୟ ଜୀବନକୁ ରୂପାୟିତ କରିବାରେ ନାଟକର ଏକ ସ୍ୱତନ୍ତ୍ର ସ୍ଥାନ ରହିଅଛି । ନାଟକର ସଫଳତା ପାଇଁ ଏକ ମନୋହର କାହାଣୀ ଯେପରି ଆବଶ୍ୟକ, ସେହିପରି ବହୁରଙ୍ଗୀ ଜୀବନର ସୁଷ୍ଠୁ ଏବଂ ସ୍ୱାଭାବିକ ପ୍ରତିଫଳନ ଓ ସାର୍ଥକ ଚିତ୍ରଣ ମଧ୍ୟ ସେତିକି ଦରକାର । ବିଷୟ ବସ୍ତୁର ଐକ୍ୟ ପ୍ରତିଷ୍ଠିତ ନହେଲେ ନାଟକ ଉପଭୋଗ୍ୟ ହେବ ନାହିଁ । ବିଶ୍ୱ ସାହିତ୍ୟର ଯେ କୌଣସି ପ୍ରସିଦ୍ଧ ନାଟକର କଥାବସ୍ତୁ ଆଲୋଚନା କଲେ ଏହାର ସତ୍ୟତା ଉପଲବ୍ଧି କରାଯାଇ ପାରିବ । ନାଟକରେ ଆଉ ଏକ ପ୍ରଧାନ କଥା ହେଲା ପ୍ରତ୍ୟେକଟି ଘଟଣାର ବା ଚରିତ୍ରର ସାର୍ଥକତା । ମୁଖ୍ୟ ଚରିତ୍ର ବା ମୁଖ୍ୟ ଘଟଣାକୁ ସାହାଯ୍ୟ ନକଲା ଭଳି କୌଣସି ଅବାନ୍ତର ଚରିତ୍ର ବା ଘଟଣାର ସଂଯୋଜନା ବା ଅବତାରଣା ନାଟକରେ ଆଦୌ କାମ୍ୟ ନୁହେଁ । ଏହା ନାଟ୍ୟକାରର ପ୍ରଧାନ ଦୁର୍ବଳତା ବୋଲି ପରିଗଣିତ ହୁଏ । ନାଟକର କୌଣସି ଚରିତ୍ର ସରଳ ରେଖା ପରି ବୈଚିତ୍ର୍ୟହୀନ ନୁହନ୍ତି । ପ୍ରତ୍ୟେକଟି ଚରିତ୍ର ସମସ୍ୟମାଣ ଜୀବନ ପରି ଅତ୍ୟନ୍ତ ବୈଚିତ୍ର୍ୟପୂର୍ଣ୍ଣ । ନାନା ଘାତ ପ୍ରତିଘାତ ଏବଂ ସଙ୍କଟ ମଧ୍ୟରେ ସେହି ଚରିତ୍ରଗୁଡ଼ିକ ସଂସାରର ରଙ୍ଗମଞ୍ଚରେ ଉପନୀତ ହୁଅନ୍ତି ।

ନାଟକ ମଧ୍ୟ ଏକ ରମ୍ୟ କଳା । ଦର୍ଶକର ମନୋରଞ୍ଜନ କରିବା ହେଲା ଏହାର ମୁଖ୍ୟଧର୍ମ । ତେଣୁ ଆନନ୍ଦ ଉତ୍ପାଦନ ପାଇଁ ଯାବତୀୟ କଳାଗତ ଉପାଦାନ ନାଟକ ମଧ୍ୟରେ ଗର୍ଭିତ ହେବା ସ୍ୱାଭାବିକ । ଯେ କୌଣସି ନାଟକର ଆଲୋଚନା କଲାବେଳେ ନାଟକର ଶିଳାଖଣ୍ଡ, କାଳ ଓ

ଧର୍ମ, ସାମାଜିକ ଚେତନାବୋଧ ସମ୍ପର୍କରେ ଆଲୋଚକଙ୍କର ଯଥେଷ୍ଟ ଧାରଣା ରହିବା ଆବଶ୍ୟକ ।

ସମାଜରେ ମନୁଷ୍ୟ ବେଳେବେଳେ ମନଖୁସିଆ ଗୀତ ଗାଏ । ତେବେ କାହାର ରଚିତ ଗୀତ ଶୁଣିଲେ ସେ ମୁଗ୍ଧ ହୋଇଯାଏ । ସେହି କାରଣରୁ ଅତି ପ୍ରାଚୀନ କାଳରୁ ସଭ୍ୟ ମନୁଷ୍ୟ ନିଜର ଉପଭୋଗ ପାଇଁ ସଙ୍ଗୀତ ଓ ନୃତ୍ୟ ପ୍ରତି ଆକୃଷ୍ଟ ହୋଇ ଆସିଛି । କାଳକ୍ରମେ ଏହି ସଙ୍ଗୀତ ଓ ନୃତ୍ୟରୁ ସବୁ ଦେଶରେ ନାଟକର ସୃଷ୍ଟି ହୋଇଛି ବୋଲି ଆଲୋଚକମାନେ ମତ ବ୍ୟକ୍ତ କରି ଥାଆନ୍ତି । ତେଣୁ ନାଟକରେ ସଙ୍ଗୀତର ପ୍ରାଧାନ୍ୟକୁ ସ୍ୱୀକାର କରାଯାଏ ।

## ନାଟକର ପ୍ରାଚୀନ ରୂପ—

ଭାରତର ଦୁଇଟି ପ୍ରାଚୀନତମ ମହାକାବ୍ୟ ହେଲା ବାଲ୍ମୀକଙ୍କର ରାମାୟଣ ଏବଂ ବ୍ୟାସଦେବଙ୍କର ମହାଭାରତ । ପରବର୍ତ୍ତୀ କାଳରେ ସଂସ୍କୃତ, ପ୍ରାକୃତ ଏବଂ ଆଧୁନିକ ଭାରତୀୟ ଭାଷାର ସାହିତ୍ୟରେ ଦୀର୍ଘକାଳର ପରମ୍ପରାରେ ଏହି ପୁରାଣର କଥାବସ୍ତୁ ଅବଲମ୍ବନରେ ଅସଂଖ୍ୟ ନାଟକ ରଚିତ ହୋଇଥିବା ଜଣାଯାଏ । ଭାରତୀୟ ନାଟ୍ୟ ସାହିତ୍ୟର ବିକାଶରେ ରାମାୟଣ, ମହାଭାରତର ପ୍ରେରଣା ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ଏହି ପୁରାଣ ସେବତ ଭାରତୀୟ ସମାଜରେ ଏବେ ସୁଦ୍ଧା ପୌରାଣିକ ନାଟକର ଅପୂର୍ବ ମୂଲ୍ୟବୋଧ ଲକ୍ଷ୍ୟ କରାଯାଇଥାଏ ।

ଭାରତର ଏହି ପୁରାଣ ପରି ଇଉରୋପର ସାହିତ୍ୟରେ ହୋମରଙ୍କ ରଚିତ 'ଇଲିଅଡ଼' ଓ 'ଓଡ଼େସୀ' ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ପ୍ରାଚୀନ ଗ୍ରନ୍ଥ । ଇଉରୋପୀୟ ନାଟ୍ୟସାହିତ୍ୟକୁ ଏହି ଦୁଇଟି ଗ୍ରନ୍ଥର ଦାନ ଅବିସ୍ମରଣୀୟ ।

## ଗ୍ରୀକ୍ ଓ ଭାରତୀୟ ନାଟକ—

କେତେକ ଆଲୋଚକ ଗ୍ରୀକ୍ ନାଟକ ଭାରତୀୟ ନାଟକକୁ ପ୍ରଭାବିତ କରିଛି ବୋଲି ମତ ବ୍ୟକ୍ତ କରିଥାଆନ୍ତି । ପୂର୍ବେ ଯବନ କହିଲେ ଆର୍ଯ୍ୟେତର

ଜାତିକୁ ବୁଝାଉଥିଲେ । ତେଣୁ କେତେକ ଅନୁମାନ କରନ୍ତି ଯେ ଭାରତୀୟ ନାଟକରେ ବ୍ୟବହୃତ 'ଯବନିକା' ଶବ୍ଦଟି ଗ୍ରୀକ୍ ସାହିତ୍ୟରୁ ଆନୀତ । ମାତ୍ର ଏପରି ମତ ସର୍ବଜନ ଗ୍ରାହ୍ୟ ନୁହେଁ । ଗ୍ରୀକ୍ ମଞ୍ଚରେ ପର୍ଦ୍ଦା ପ୍ରଥା ନ ଥିଲା । ଭାରତୀୟ ନାଟ୍ୟ ସାହିତ୍ୟର ସୃଷ୍ଟି ବୈଚିତ୍ର୍ୟ ଅତ୍ୟନ୍ତ ସ୍ୱତନ୍ତ୍ର ବୋଲି ବିଶ୍ୱବିଖ୍ୟାତ ଗ୍ରନ୍ଥ ଇଂରାଜୀ ବିଶ୍ୱକୋଷ ସ୍ୱୀକାର କରିଅଛନ୍ତି । ସେ ଭାରତୀୟ ନାଟକ ସମ୍ପର୍କରେ ଆଲୋଚନା କରି କହିଛନ୍ତି—

"The Origin of the Indian drama may be unhesitatingly be described as purely native. The Mohommedans, when they overran India, brought no drama with them, the Persians, the Arabs and Egyptians were without a national Theatre. It would be absured to suppose the Indian drama to have owed anything to the Chinese or its offshoots. On the other hand there is no real evidence for assuming any influence of Greek examples upon the Indian drama at any stage of its progress Finally, it had passed into its decline before the dramatic literature of modern Europe had sprung into being."

(The Encyclopaedia Britanica—Eleventh Edition —Vol, VIII P. 480)

ତେବେ ଗ୍ରୀକ୍ ନାଟକ ଓ ଭାରତୀୟ ନାଟକ ମଧ୍ୟରେ ଯେ କେତେକ ମୌଳିକ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ, ଏଥିରେ ସନ୍ଦେହର ଅବକାଶ ନାହିଁ । ଗ୍ରୀକ୍ ନାଟକ ସାଧାରଣତଃ ବିୟୋଗାନ୍ତକ । ମିଳନାନ୍ତକ ଗ୍ରୀକ୍ ନାଟକ ଦେଖିବାକୁ ମିଳେ ନାହିଁ । ପୁନଶ୍ଚ ଐକ୍ୟତାନିକ ସଙ୍ଗୀତ ସଂଯୋଜନା ଗ୍ରୀକ୍ ନାଟକର ଏକ ପ୍ରଧାନ ବିଶେଷତ୍ୱ । ଏହି ସ୍ଥାନ କାଳ ଏବଂ ଘଟଣାର ଐକ୍ୟ ସର୍ବତ୍ର ପ୍ରତିଷ୍ଠିତ ହୋଇଥାଏ । ଗ୍ରୀକ୍ ନାଟକରେ

ସାଧାରଣତଃ ମାନବଜାତି ସହିତ ଭାଗ୍ୟବାନର ସଂଘର୍ଷ ଦର୍ଶାଇ ଦିଆଯାଇଛି । ନାଟ୍ୟକାର ସୋଫୋକ୍ଲିସଙ୍କ ସର୍ବଶ୍ରେଷ୍ଠ ରଚନା ହେଉଛି "ଓଡ଼ିପସ" । ଏହା ପୃଥିବୀର ଅନ୍ୟତମ ଶ୍ରେଷ୍ଠ ଭାଗ୍ୟବାଦୀ ନାଟକ କହିଲେ ଅତ୍ୟୁକ୍ତି ହେବ ନାହିଁ । ଦୁରନ୍ତ ଭାଗ୍ୟର ଅଟ୍ଟହାସ୍ୟ ଚରିତ୍ରଗୁଡ଼ିକୁ କ୍ରୀଡ଼ନକ ପରି ନିୟନ୍ତ୍ରଣ କରିଅଛି । ଓଡ଼ିପସ କୌଣସି ଦୈବବାଣୀରେ ମୁଗ୍ଧ ହୋଇ ନିଜ ପିତାକୁ ହତ୍ୟା କରନ୍ତି ଏବଂ ଭ୍ରମବଶତଃ ନିଜମାତାଙ୍କୁ ବିବାହ କରନ୍ତି । ପରସ୍ପରର ଅଜ୍ଞାତରେ ଏହିପରି ଦୁର୍ଘଟଣା ଘଟି ଚାଲିଛି । ସମସ୍ତ ଘଟଣା ପ୍ରକାଶିତ ହେଲାପରେ ନାଟକର ମାତା ଆତ୍ମହତ୍ୟା କରନ୍ତି ଏବଂ ଶେଷରେ ନିଜେ ଓଡ଼ିପସ ଚକ୍ଷୁ ଫୁଟାଇ ଅନ୍ଧ ହୋଇ ଯାଇଛନ୍ତି । ଗ୍ରୀସର ଅନ୍ୟ ଦୁଇଜଣ ପ୍ରଖ୍ୟାତ ନାଟ୍ୟକାର ଆଟେଲସ ଓ ଇଉରିପିଡ଼ିସ ମଧ୍ୟ ସେମାନଙ୍କ ନାଟକରେ ଦୁରନ୍ତ ଭାଗ୍ୟବାଦକୁ ଅତ୍ୟନ୍ତ ଚମତ୍କାର ଭାବରେ ଚିତ୍ରଣ କରିଛନ୍ତି ।

ତେବେ ତୁଳନାତ୍ମକ ବିଚାରରେ ଭାରତୀୟ ନାଟକ ସାଧାରଣତଃ ମିଳନାତ୍ମକ; ଭାରତୀୟ ନାଟକ କାବ୍ୟଧର୍ମୀ ହେଲେହେଁ ତହିଁରେ ଗ୍ରୀକ୍ ନାଟକର ଐକ୍ୟତାନକ ସଙ୍ଗୀତ ଦୃଷ୍ଟିଗୋଚର ହୁଏ ନାହିଁ । ପୁନଶ୍ଚ, ଭାରତୀୟ ନାଟ୍ୟ ସାହିତ୍ୟରେ କେବଳ ଘଟଣାର ଐକ୍ୟ ଛଡ଼ା ଅନ୍ୟ ଦୁଇଟି ନାଟକୀୟ ଐକ୍ୟକୁ ସ୍ୱୀକାର କରାଯାଇ ନାହିଁ । ଭାରତୀୟ ସାହିତ୍ୟରେ ଭାଗ୍ୟବାଦକୁ ସ୍ୱୀକାର କରି ଅନେକ ନାଟକ ଲେଖା ଯାଇଛି । ସେମାନଙ୍କ ମଧ୍ୟରେ ଦ୍ରୌପଦୀ, ନଳଦମୟନ୍ତୀ, ହରିଶ୍ଚନ୍ଦ୍ର ଏବଂ ରାମସୀତାଙ୍କ ଚରିତ ଅତ୍ୟନ୍ତ ଉଲ୍ଲେଖ ଯୋଗ୍ୟ । ଏମାନେ ସମସ୍ତେ ଭାଗ୍ୟର କ୍ରୀଡ଼ନକ ହୋଇଛନ୍ତି ତେବେ ଭାଗ୍ୟବାଦକୁ ଆଶ୍ରୟ କରି ଏହି କଥାବସ୍ତୁର ନାଟକଗୁଡ଼ିକ ପରିଶେଷରେ ମିଳନାତ୍ମକ ହୋଇଛନ୍ତି । ଅବଶ୍ୟ ଇଂରେଜୀ ସାହିତ୍ୟର ସର୍ବଶ୍ରେଷ୍ଠ ନାଟ୍ୟକାର ସେକ୍ସପିୟର ନିଜର ନାଟକାବଳୀରେ ଏହି ଭାଗ୍ୟବାନ ବିରୁଦ୍ଧରେ ପ୍ରତିବାଦ କରିଥିଲେ । ତାଙ୍କ ମତରେ ମନୁଷ୍ୟର କାର୍ଯ୍ୟକଳାପ ଅନୁସାରେ ଫଳାଫଳ ଭୋଗ ହୋଇଥାଏ । ଏଥିପାଇଁ ସେହିଁ ମୁଖ୍ୟତଃ ଦାୟୀ । ଭାଗ୍ୟର ବୁଝାମଣା ଉପରେ ନିର୍ଭର ନକରି ମନୁଷ୍ୟ ନିଜର ଶକ୍ତିକୁ ମାପିବା ପାଇଁ ପ୍ରଥମେ ଏହି ଯୁଗରେ ଚେଷ୍ଟା କଲା । ନିଜର ଦୁର୍ଭାଗ୍ୟ ପାଇଁ କୌଣସି ପ୍ରଚ୍ଛନ୍ନ ଅଲୌକିକ ଶକ୍ତିକୁ ସେ ଆଉ ଦାୟୀ କରି ପାରିଲା ନାହିଁ । ତେଣୁ ସେକ୍ସପିୟର କହିଲେ—

"The fult, deat Bruts, is not in our stars, but in ourselves, that we are underlings."

**ଆଧୂନିକ ନାଟକର ଅଭ୍ୟୁଦୟ—**

କ୍ଲାସିକାଲ ଯୁଗ ପରେ ସାହିତ୍ୟରେ ଆସେ ରୋମାଣ୍ଟିକ ଯୁଗ। ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ରୋମାଣ୍ଟିକ ଭାବଧାରା ସାହିତ୍ୟ ସଂସାରକୁ ଆଚ୍ଛନ୍ନ କରି ରଖିଥିଲା। ମାତ୍ର ହଠାତ୍ ପୃଥିବୀର ସମାଜରେ ଏକ ଭୟଙ୍କର ଅର୍ଥନୈତିକ, ସାଂସ୍କୃତିକ ଓ ସାମାଜିକ ପ୍ଲାବନ ଉପସ୍ଥିତ ହେଲା। ପାରମ୍ପରିକ ଚିନ୍ତାଧାରା ସମ୍ପୂର୍ଣ୍ଣ ଓଲଟ ପାଲଟ ହୋଇଗଲା। କାରଣ ବିଜ୍ଞାନର ଅଦ୍ଭୁତ ପୂର୍ବ ଉଦ୍ଭାବନ ଏବଂ ଆଚମ୍ବିତ ଯୋଗେ ଶିଳ୍ପ ବିପ୍ଳବ ଉପସ୍ଥିତ ହେଲା। ଉତ୍ପାଦନ ଏବଂ ମାଲିକାନାର ରୂପ ସମାଜରେ ଅଭିନବ ରୂପ ଧାରଣ କରି ବହୁ ରାଜନୈତିକ ତଥା ସାମାଜିକ ସମସ୍ୟା ସୃଷ୍ଟି କଲା। ବୋଧହୁଏ ସେ ଯୁଗର ମନୁଷ୍ୟ ଏହି ଅଭାବନୀୟ ପରିବର୍ତ୍ତନ ପାଇଁ ହଠାତ୍ ପ୍ରସ୍ତୁତ ହୋଇ ପାରି ନ ଥିଲା। ତେଣୁ ବୁଦ୍ଧିଜୀବୀର ଚିନ୍ତାଧାରାରେ ଉପସ୍ଥିତ ହେଲା ଏକ ଯୁଗାନ୍ତକାରୀ ବିପ୍ଳବ। ଏହି ବିପ୍ଳବର ସ୍ୱର ଅନୁସରଣ କରି ସାହିତ୍ୟ ହେଲା ସମ୍ପୂର୍ଣ୍ଣ ବାସ୍ତବଧର୍ମୀ। ତେଣୁ ପୃଥିବୀର ନାଟ୍ୟ ସାହିତ୍ୟ ମଧ୍ୟ ରୋମାଣ୍ଟିକ ଚିନ୍ତାଧାରା ପରିହାର କରି ଅଧିକ ବାସ୍ତବତା ଅଭିମୁଖୀ ହେବାକୁ ଶ୍ରେୟ ମନେକଲା। ଆଧୁନିକ ଜୀବନଜଗତ ହେଲା ଅତ୍ୟନ୍ତ ସଂଘର୍ଷ ବହୁଳ। ବ୍ୟକ୍ତିଗତ ଜୀବନର ସମସ୍ୟା ସହିତ ସମଗ୍ରଭାବରେ ସମାଜ ଓ ରାଷ୍ଟ୍ରର ସମସ୍ୟା ସହିତ ମନୁଷ୍ୟ ଅଧିକ ଜଡ଼ିତ ହୋଇ ପଡ଼ିଲା। ମନୁଷ୍ୟ ପ୍ରଥମ ଥର ପାଇଁ ଅନୁଭବ କଲା ଯେ ସମାଜର ସାମୂହିକ ସମସ୍ୟାର ସମାଧାନ ନକଲେ ବ୍ୟକ୍ତି ଜୀବନର ଦୁଃଖ, ଅଶାନ୍ତି ଦୂରୀଭୂତ ହୋଇ ପାରିବ ନାହିଁ। ଜୀବନର ନାନାବିଧ ସଂଘର୍ଷକୁ ରୂପାୟିତ କରି ନାଟକ ସାହିତ୍ୟ ହେଲା ଅଧିକ ବାସ୍ତବଧର୍ମୀ। ଏ ଯୁଗର ନାଟକରେ ପ୍ରକାଶିତ ହେଲା ସମାଜ ଓ ରାଷ୍ଟ୍ରର ନାନା ସମସ୍ୟା। ପୁନଶ୍ଚ ନାଟକ ହେଲା ଉଦ୍ଦେଶ୍ୟଧର୍ମୀ।

**ଚଳଚିତ୍ର ଯୁଗର ନାଟକ—**

ଏ କଥା ସତ୍ୟ ଯେ ଏ ଯୁଗର ଚଳଚିତ୍ର ରଙ୍ଗମଞ୍ଚକୁ ବହୁ ଭାବରେ ପ୍ରଭାବିତ କରିଛି। ଆଧୁନିକ ନାଟ୍ୟକାର ରଙ୍ଗମଞ୍ଚ ଉପରେ ରେଳ-ମଟର

ଦୁର୍ଘଟଣା, ଝଡ଼ତୋଫାନ, ବନ୍ୟା, ଇତ୍ୟାଦି ଦର୍ଶାଇବାକୁ ଚେଷ୍ଟା କରିଛନ୍ତି । କେହି କେହି ନୈରାଶ୍ୟବାଦୀ ମତ ଦେଇ ଥାଆନ୍ତି ଯେ ଚଳଚ୍ଚିତ୍ର ଯୁଗରେ ନାଟକର ମୃତ୍ୟୁ ଅବଶ୍ୟମ୍ଭାବୀ । କିନ୍ତୁ ନାଟକ ଓ ଚଳଚ୍ଚିତ୍ର ଦୁଇଟି ସ୍ୱତନ୍ତ୍ର କ୍ଷେତ୍ରରେ ଆବଦ୍ଧ ଥିବାରୁ ଏପରି ଆଶଙ୍କା ଅମୂଳକ । ଚଳଚ୍ଚିତ୍ର ଜୀବନର ଗତିମୂଳକ ସୌନ୍ଦର୍ଯ୍ୟକୁ ପ୍ରକାଶ କରିବା ପାଇଁ ପ୍ରଯତ୍ନ କରିଥାଏ । ମାତ୍ର ଗତି ମୂଳକ ଅନୁଭୂତି ବଂଚିତ ଜୀବନର ସ୍ଥିତିମୂଳକ ସୌନ୍ଦର୍ଯ୍ୟର ମୂଲ୍ୟବୋଧ ଆମକୁ ସ୍ୱୀକାର କରିବାକୁ ହେବ । ଚଳଚ୍ଚିତ୍ରରେ ଏହି ସ୍ଥିତିଶୀଳ ସୌନ୍ଦର୍ଯ୍ୟ ଆଦୌ ଉପଭୋଗ୍ୟ ହୋଇ ପାରିବ ନାହିଁ । ଏଥିପାଇଁ ଏକମାତ୍ର ରଙ୍ଗମଞ୍ଚରେ ଅଭିନୀତ ନାଟକ ହେଉଛି ସର୍ବଶ୍ରେଷ୍ଠ ମାଧ୍ୟମ । ବୋଧହୁଏ ଏହି କାରଣରୁ ଅତ୍ୟାଧୁନିକ ନାଟକ ଗୁଡ଼ିକ ଅଧିକ ପରିମାଣରେ ଉଦ୍ଦେଶ୍ୟଧର୍ମୀ ନାଟକ । ଆଧୁନିକ ନାଟ୍ୟକାର ଗୋଟିଏ ନିର୍ଦ୍ଦିଷ୍ଟ ଅବସ୍ଥାକୁ କେନ୍ଦ୍ର କରି ନାଟକ ରଚନା କରିଥାଏ । ତେଣୁ ଏ ଯୁଗର ନାଟକ ହେଲା ତନ୍ତ୍ରମୂଳକ ।

ଆଲୋକରଶ୍ମିର ପ୍ରୟୋଗ ଯୋଗୁଁ ରଙ୍ଗମଞ୍ଚର ସଜ୍ଜୀକରଣ ଅଧିକ ପ୍ରାକୃତିକ ହେଲା । ଏ ଯୁଗର ଦର୍ଶକ ମନରେ ବାସ୍ତବତା ପ୍ରତି ପ୍ରବଳ ଆଗ୍ରହ ପ୍ରକାଶିତ ହେବାରୁ ପ୍ରାଚୀନ ପୁରାଣର ଆକର୍ଷଣ ଆଉ ରହିଲା ନାହିଁ । ତେବେ ଶିକ୍ଷାର ପ୍ରସଙ୍ଗ ସଙ୍ଗେ ଏହି ରୂପଗତ ପରିବର୍ତ୍ତନ ଯେ ଆହୁରି ଅଧିକ ପ୍ରସାରିତ ଓ ବ୍ୟାପକ ହେବ, ଏଥିରେ ସନ୍ଦେହ ନାହିଁ ।

## ଓଡ଼ିଆ ନାଟକର ଅଭ୍ୟୁଦୟ—

ଓଡ଼ିଆ ନାଟକର ଜନ୍ମ ଇତିହାସ ବିଶେଷ ପ୍ରାଚୀନ ନୁହେଁ । ଊନବିଂଶ ଶତାବ୍ଦୀର ଶେଷ ଦୁଇଟି ଦଶକରେ ଓଡ଼ିଆ ଭାଷାର ନାଟକ ରଚନା ପାଇଁ ପ୍ରଥମେ ଉଦ୍ୟମ କରାଯାଇଥିଲା । ଜଗନ୍ମୋହନ ଲାଲା, ରାମଶଙ୍କର, କାମପାଳ ମିଶ୍ର, ଭିକାରୀଚରଣ, ଚିକିଟି, ପାରଳା, ବାମଣ୍ଡା ପ୍ରଭୃତିର ସାହିତ୍ୟିକ ନରପତିଗଣ ପ୍ରଥମେ ଓଡ଼ିଆ ନାଟ୍ୟ ସାହିତ୍ୟର ବିକାଶ କ୍ଷେତ୍ରରେ ବଳିଷ୍ଠ ପଦକ୍ଷେପ ଗ୍ରହଣ କରିଥିଲେ ।

ଓଡ଼ିଆ ନାଟ୍ୟସାହିତ୍ୟ ସମ୍ପର୍କରେ ଏକ ବିହଙ୍ଗାବଲୋକନ କଲେ ଜଣାଯାଏ ଯେ ଓଡ଼ିଆ ନାଟକ ସାହିତ୍ୟ ମୋଟାମୋଟି ତିନିଗୋଟି

ପର୍ଯ୍ୟାୟରେ ବିଭକ୍ତ ହୋଇପାରେ । ରାମଶଙ୍କର ରାୟ ଓଡ଼ିଆ ନାଟ୍ୟ ସାହିତ୍ୟର ଆଦ୍ୟଯୁଗର ପ୍ରବର୍ତ୍ତକ । ମଧ୍ୟଯୁଗ ଓଡ଼ିଆ ନାଟ୍ୟ ସାହିତ୍ୟର ସର୍ବଶ୍ରେଷ୍ଠ କଳାକାର ହେଉଛନ୍ତି ଅଶ୍ୱିନୀକୁମାର ଘୋଷ । ତୃତୀୟ ଯୁଗ ବା ଆଧୁନିକ ଓଡ଼ିଆ ନାଟ୍ୟସାହିତ୍ୟରେ କାଳିଚରଣ ପଟ୍ଟନାୟକ ବିପ୍ଳବ ଆନୟନ କରି ଅଛନ୍ତି । ଅବଶ୍ୟ ସ୍ୱାଧୀନତା ପରେ ଓଡ଼ିଆ ନାଟ୍ୟ ସାହିତ୍ୟ ଅଧିକ ପ୍ରଗତିଶୀଳ ହୋଇଅଛି । ଏ ଯୁଗର ନାଟ୍ୟକାରଗଣ ବହୁ ନୂତନ ପରୀକ୍ଷା କରିବାରେ ବ୍ୟସ୍ତ ହୋଇଛନ୍ତି । ତେବେ ମୋଟାମୋଟି ବିଚାର କଲେ ଜଣାଯାଏ ଯେ ପ୍ରଥମ କାଳର ଓଡ଼ିଆ ନାଟକ ସର୍ବତୋଭାବରେ ସଂସ୍କୃତ ନାଟକ ଓ ଟୀକା ଟିପ୍ପଣୀ ଓ ବଙ୍ଗଳା ସାହିତ୍ୟର ପରମ୍ପରା ଦ୍ୱାରା ପ୍ରଭାବିତ ହୋଇଥିଲା । ଏହି ପ୍ରାରମ୍ଭିକ କାଳରେ ବହୁ ସଂସ୍କୃତ ନାଟକ ଅନୂଦିତ ହୋଇଥିଲା । ଏ ଯୁଗର ନାଟକ ହେଲା ଅତ୍ୟନ୍ତ ଭାବ ପ୍ରଧାନ । ସଂସ୍କୃତ ମିଳନାନ୍ତକ ନାଟ୍ୟ ସାହିତ୍ୟର ପ୍ରଭାବରୁ ଏ ଯୁଗର ଲେଖକ ମୁକ୍ତ ହେବା ସମ୍ଭବ ନଥିଲା । ସଂସ୍କୃତ ନାଟକ ପରି ଏ ଯୁଗର ପ୍ରତ୍ୟେକ ନାଟକ ଥିଲା ମିଳନାନ୍ତକ ଏବଂ ଆଦର୍ଶଧର୍ମୀ । ନାଟକ ଗୁଡ଼ିକ ସଙ୍ଗୀତ ଦ୍ୱାରା ଭାରାକ୍ରାନ୍ତ ହୋଇଥିଲା ଏବଂ ଘଟନାବୈଚିତ୍ର୍ୟତଃ କଥାବସ୍ତୁ ଗୁଡ଼ିକର ସଙ୍ଗତ ସଂଯୋଜନାରେ ଅଭାବ ଲକ୍ଷ୍ୟ କରା ଯାଇଥିଲା ।

ଆଧୁନିକ ନାଟ୍ୟ ସାହିତ୍ୟର ଆଲୋଚନା କଲାବେଳେ କେତେକ ସାଧାରଣ ନୀତି ପ୍ରତି ପ୍ରାଧାନ୍ୟ ଦେବାକୁ ହୋଇଥାଏ । ଯେ କୌଣସି ନାଟକରେ ଭାବର ସଂଯୋଜନାରେ ଅଧିକ ଚମତ୍କାରିତା ଏବଂ ସତର୍କତା ଆବଶ୍ୟକ । ସଂଳାପ ଯୋଜନା ଅତ୍ୟନ୍ତ ସାର୍ଥକ ହେବା ବାଞ୍ଛନୀୟ । ନାଟକରେ ମୁଖ୍ୟ ଚରିତ୍ର ଓ ମୁଖ୍ୟ ଘଟଣା ସହିତ ଗୌଣ ଚରିତ୍ର ଏବଂ ଅପ୍ରଧାନ ଘଟଣା ଗୁଡ଼ିକର ଉପଯୁକ୍ତ ସଂଯୋଗ ସ୍ଥାପିତ ହେବା ଆବଶ୍ୟକ । ଏମାନେ ମୁଖ୍ୟ କଥାବସ୍ତୁର କିମ୍ବା ଚରିତ୍ରର ଅଭିବୃଦ୍ଧିରେ ସାହାଯ୍ୟ ନ କରୁଥିଲେ ମଧ୍ୟ ତାହା ନାଟକୀୟତ୍ୱ ବଜାୟ ରଖି ପାରିବ ନାହିଁ । ପ୍ରତ୍ୟେକ ନାଟକର ପ୍ରାରମ୍ଭରେ ଚମତ୍କାରିତା, ପରିଣତିରେ ସନ୍ଦେହ, ଘଟଣା ଓ ଚରିତ୍ରର ସଂଘର୍ଷ ଏବଂ ପରିସମାପ୍ତିରେ ମନୋହାରିତା ଅକ୍ଷୁର୍ଣ୍ଣ ରହିବା ସ୍ୱାଭାବିକ । ନାଟ୍ୟ ସାହିତ୍ୟର ଆଦି ଯୁଗର ନାଟ୍ୟକାର ରାମଶଙ୍କରଙ୍କର ନାଟକ ଗୁଡ଼ିକ ସାଧାରଣତଃ ଆଦର୍ଶମୂଳକ । ବଙ୍ଗସାହିତ୍ୟର ବିଖ୍ୟାତ

ଲେଖକ ମାଇକେଲ ମଧୁସୂଦନଙ୍କ ପ୍ରେରଣାରେ ସେ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତନ କରିଥିଲେ । ଅନେକ ଆଲୋଚକଙ୍କର ମତ ଯେ, ରାମଶଙ୍କର ହିଁ ଓଡ଼ିଆ ସାହିତ୍ୟରେ ଅମିତ୍ରାକ୍ଷର ଛନ୍ଦର ଆଦ୍ୟ ପ୍ରବର୍ତ୍ତକ । ମାତ୍ର ଏପରି ମତ ଗ୍ରହଣୀୟ ନୁହେଁ । ରାମଶଙ୍କର ଲେଖମା ରଚନା କରିବା ପୂର୍ବରୁ ରୁଦ୍ରନାରାୟଣ ପଟ୍ଟନାୟକଙ୍କର ଅମିତ୍ରାକ୍ଷର ଛନ୍ଦରେ ଲିଖିତ "ଅଙ୍ଗଦ ବିଜୟ କାବ୍ୟ" ବାଲେଶ୍ୱର ସମ୍ବାଦ ବାହିକାରେ ୧୨।୬।୧୮୭୯ ଓ ୧୯।୬।୧୮୭୯ ତାରିଖ ସଂଖ୍ୟା ଦ୍ୱୟରେ ପ୍ରକାଶିତ ହୋଇଥିଲା । ସମ୍ବାଦ ବାହିକାର କଲେବର କ୍ଷୁଦ୍ର ଥିବା'ରୁ ଏହି କାବ୍ୟ "ଉତ୍କଳମଧୁପ" ମାସିକ ସାହିତ୍ୟ ପତ୍ରିକାରେ ପ୍ରକାଶ କରିବା ପାଇଁ 'ବାହିକା' ଅନୁରୋଧ ଜଣାଇଥିଲେ । ତେବେ ସେ ଯାହା ହେଉ, ଏ ଯୁଗରେ ନାଟକ ଗୁଡ଼ିକରେ ଚରିତ୍ରର ବିକାଶପାଇଁ ସଂଳାପ ଯୋଜନାରେ ଉଭୟ ମିତ୍ରାକ୍ଷର ଏବଂ ଅମିତ୍ରାକ୍ଷର ଛନ୍ଦର ଆଶ୍ରୟ ଗ୍ରହଣ କରାଯାଇଛି ।

ଅଶ୍ୱିନୀକୁମାର ଓଡ଼ିଆ ନାଟ୍ୟସାହିତ୍ୟକୁ ଅଧିକ ଆଧୁନିକ ଆଦର୍ଶରେ ସମୃଦ୍ଧ କଲେ । ନାଟକ ଗୁଡ଼ିକ କ୍ରମଶଃ ଘଟଣାପ୍ରଧାନ ଏବଂ କ୍ରିୟାଶୀଳ ହେଲା । ଏଥିରେ ଚରିତ୍ରର ପ୍ରାଧାନ୍ୟ ରହିଲେହେଁ କ୍ରମଶଃ ଜୀବନର ନାନାବିଧ ସମସ୍ୟା ଓ ପାରିପାର୍ଶ୍ୱିକ ଘଟଣା ରଚିତ ହେଲା । ପ୍ରାଚୀନର ବହୁ ପ୍ରଚଳିତ ରୀତିକୁ ଅସ୍ୱୀକାର କରି କାଳୀଚରଣ ଓଡ଼ିଆ ନାଟ୍ୟସାହିତ୍ୟକୁ ଅଧିକ ସାମାଜିକ, ସ୍ୱାଭାବିକ ଏବଂ ସମସ୍ୟାମୂଳକ କରିବାରେ ସଫଳ ହେଲେ । ତାଙ୍କର ସଙ୍ଗୀତ ଏବଂ ସଂଳାପ ଯୋଜନାର ଯାଦୁକରୀ ସ୍ପର୍ଶ, ଅଙ୍କ ଓ ଦୃଶ୍ୟର ଅଭିନବ ସନ୍ନିକରଣ ଓଡ଼ିଶାର ଦର୍ଶକ ପ୍ରାଣରେ ଗଭୀର ଭାବରେ ରେଖାପାତ କଲା । ଇତିହାସ ଓ ପୁରାଣକୁ ଅବଲମ୍ବନ କରି ସେ କେବଳ ନାଟକ ଲେଖିନାହାନ୍ତି, ଜୀବନୀମୂଳକ ନାଟକ ରଚନାରେ ସେ ନୂତନ ପଦକ୍ଷେପ ଗ୍ରହଣ କଲେ । ଏ ଗୁଡ଼ିକରେ କ୍ଲାସିକ ଯୁଗର ଭାବାବେଗ ଅପେକ୍ଷା ଏଯୁଗର ଦେଶପ୍ରୀତି, ବ୍ୟକ୍ତି-ସ୍ୱାତନ୍ତ୍ର୍ୟବୋଧ ଏବଂ ସାମାଜିକ ଚେତନଶୀଳତା ଅଧିକ ପ୍ରକଟିତ ହୋଇପାରିଲା । ଦ୍ୱିତୀୟ ମହାଯୁଦ୍ଧ ଏବଂ ତାର ପରବର୍ତ୍ତୀ କାଳରେ ଓଡ଼ିଆ ନାଟ୍ୟ ସାହିତ୍ୟ ଉଭୟ ସଂଖ୍ୟା ଓ ଗୁଣାତ୍ମକ ବିଚାରରେ ବହୁ ତରୁଣ ଓ ପ୍ରତିଭାସମ୍ପନ୍ନ ନାଟ୍ୟକାରମାନଙ୍କ ଦ୍ୱାରା ସମୃଦ୍ଧ ହୋଇଅଛି ।

ଜାତୀୟ ଜୀବନରେ ନାଟକର ପ୍ରଭାବ ଅବସମ୍ବାଦିତ । ଏହା କେବଳ ପ୍ରମାଦ ବର୍ଦ୍ଧକ ନୁହେଁ, ଅତ୍ୟନ୍ତ ଶିକ୍ଷଣୀୟ ଏବଂ ସଂସ୍କାରମୂଳକ ମଧ୍ୟ । ସମାଜର ଚିନ୍ତାଧାରାକୁ ନିୟନ୍ତ୍ରଣ କରିବାରେ ନାଟ୍ୟକାରର ଯଥେଷ୍ଟ ଦାୟିତ୍ୱବୋଧ ରହିଅଛି । ସେହି କାରଣରୁ ନାଟ୍ୟ ସାହିତ୍ୟର ବୈଜ୍ଞାନିକ ଅନୁଶୀଳନ ପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି ହେବା ଆବଶ୍ୟକ । ଏହି କ୍ଷେତ୍ରରେ ଓଡ଼ିଆ ସାହିତ୍ୟର "ସମାଲୋଚନା" ଅତ୍ୟନ୍ତ ପ୍ରଗତିଶୀଳ ବୋଲି କହିହେବ ନାହିଁ ।

# ଆଧୁନିକତାର ଆଲୋଡ଼ନ

୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ଏହି ଘଟଣାର ବହୁକାଳ ପୂର୍ବରୁ ବଙ୍ଗଳା, ମାନ୍ଦ୍ରାଜ ଏବଂ ବମ୍ବେ ପ୍ରଦେଶରେ ଇଂରେଜ ଶାସକଙ୍କ ନେତୃତ୍ୱରେ ଶୃଙ୍ଖଳିତ ଶାସନ ଏବଂ ପାଶ୍ଚାତ୍ୟ ଶିକ୍ଷାନୀତି ପ୍ରବର୍ତ୍ତିତ ହୋଇ ସାରିଥିଲା । ଏହି ପ୍ରଦେଶ ଗୁଡ଼ିକରେ ପାଶ୍ଚାତ୍ୟ ସଂସ୍କୃତି ଏବଂ ସାହିତ୍ୟ ଚର୍ଚ୍ଚା ହେବା ଯୋଗୁ ଏ ଦେଶର ଚିନ୍ତାଧାରାରେ ପ୍ରକଟିତ ହେଲା ଅଭାବନୀୟ ପରିବର୍ତ୍ତନ । ବଙ୍ଗ ଦେଶର ଇଂରେଜ ଶାସକ ୧୭୮୮ ଖ୍ରୀଷ୍ଟାବ୍ଦରେ କଲିକତାରେ ଯେଉଁ ମଦ୍ରାସା ପ୍ରତିଷ୍ଠା କଲେ, ସେଠାରେ ପାର୍ସି ଭାଷା ପଠିତ ହେବା ପାଇଁ ଯତ୍ନ କରାଯାଇଥିଲା; ବନାରସ ଏବଂ ପୁନା ପ୍ରଭୃତି ଅଞ୍ଚଳରେ ଇଂରେଜ ଶାସକଗଣ ସଂସ୍କୃତ ଶିକ୍ଷାର ପ୍ରସାର ପାଇଁ ଉଦ୍ୟମ କରିଥିଲେ । ଇଂରେଜଙ୍କ ଆଗମନ ପୂର୍ବରୁ ଏ ଦେଶରେ ଯେଉଁ ଶିକ୍ଷା ନୀତି ପ୍ରଚଳିତ ଥିଲା, ତାହା ଥିଲା ଅତ୍ୟନ୍ତ ପ୍ରାଚୀନ ଧରଣର । ଅବଶ୍ୟ ପ୍ରଥମ ଅବସ୍ଥାରେ ଇଂରେଜୀ ଶିକ୍ଷା ପାଇଁ ଇଂରେଜ ଶାସକଗଣ ପ୍ରଥମେ ବିଶେଷ ଧ୍ୟାନ ଅର୍ପଣ କରି ନଥିଲେ । ୧୭୯୨ ଖ୍ରୀଷ୍ଟାବ୍ଦରେ ଚାର୍ଲସ ଗ୍ରାଣ୍ଟ ନାମରେ ଜଣେ ମାତ୍ର ଇଂରେଜ କର୍ମଚାରୀ ଇଂରେଜୀ ଶିକ୍ଷାର ପ୍ରବର୍ତ୍ତନ ପାଇଁ ଯୁକ୍ତି କରିଥିଲେ ହେଁ ତାହା ବହୁକାଳ ପର୍ଯ୍ୟନ୍ତ ଫଳପ୍ରଦ ହୋଇ ନଥିଲା । ତତ୍କାଳୀନ ବଙ୍ଗ ଦେଶର ବିଖ୍ୟାତ ନେତା ରାଜାରାମମୋହନ ୧୮୨୩ ଖ୍ରୀଷ୍ଟାବ୍ଦ ଡିସେମ୍ବର ୧୧ ତାରିଖରେ ଲର୍ଡ଼ ଆମହର୍ଷ୍ଟଙ୍କୁ ଏକ ପତ୍ରଲେଖି ଏ ଦେଶରେ ଇଂରେଜୀ ଶିକ୍ଷା ପ୍ରଚଳନ କରିବା ପାଇଁ ଦୃଢ଼ ଭାବରେ ଦାବି ଜଣାଇ ଥିଲେ । ସେ ବିଶ୍ୱାସ କରୁଥିଲେ ଯେ, ଇଂରେଜୀ ଶିକ୍ଷା ଜରିଆରେ ଏ ଦେଶରେ ଜନସାଧାରଣ ପାଶ୍ଚାତ୍ୟ ଗଣିତ, ଦର୍ଶନ, ବିଜ୍ଞାନ ପ୍ରଭୃତି ଶିକ୍ଷା ଲାଭ କରି

ଜୀବନ କ୍ଷେତ୍ରରେ ଅଧିକ ଉପକୃତ ହୋଇ ପାରିବେ । ରାଜାରାମମୋହନଙ୍କ ଏହି ପ୍ରସ୍ତାବକୁ ମାକଲେ ସାହେବ ପୂର୍ଣ୍ଣପ୍ରାଣରେ ସମର୍ଥନ କରିଥିଲେ । ସେ ବିଶ୍ୱାସ କରୁଥିଲେ ଯେ, ଏହି ନୀତି ଫଳରେ ଯେଉଁ ନୂତନ ଶିକ୍ଷିତ-ଗୋଷ୍ଠୀର ଉଦୟ ହେବ, ସେମାନେ ଇଂରେଜ ଶାସକ ଏବଂ ଅସଂଖ୍ୟ ଶାସିତ ପ୍ରଜାବର୍ଗଙ୍କ ମଧ୍ୟରେ ଉପଯୁକ୍ତ ଯୋଜକ ହୋଇ ପାରିବେ । ଏଥି ସହିତ ମାକଲେ ମଧ୍ୟ ଅତ୍ୟନ୍ତ ଦୂରଦୃଷ୍ଟିର ସହିତ ଅନୁଭବ କରି ପାରିଥିଲେ ଯେ, ଏହି ନବୀନ ଶିକ୍ଷିତଗୋଷ୍ଠୀ ଏ ଦେଶର ଅସମୃଦ୍ଧ ଦେଶୀୟ ଭାଷା ଓ ସାହିତ୍ୟରେ ସଂସ୍କାର ଆନୟନ କରି ନବଯୁଗର ସୃଷ୍ଟି କରି ପାରିବେ । ଏହି ଶିକ୍ଷିତ ଶ୍ରେଣୀଙ୍କର ସାହାଯ୍ୟରେ ପାଶ୍ଚାତ୍ୟ ଭାବଧାରା, ବୈଜ୍ଞାନିକ ଅନୁଚିନ୍ତା ଦେଶୀୟ ସାହିତ୍ୟରେ ପ୍ରବେଶ ଲାଭ କରି ଦେଶର କୋଟି କୋଟି ଜନସାଧାରଣଙ୍କୁ ଅବଶ୍ୟ ଉନ୍ମେଷିତ କରିବ ।

ଆଧୁନିକ ଓଡ଼ିଆ ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ମାକଲେ ସାହେବଙ୍କର ଏହି ଉକ୍ତିଟି ସ୍ମରଣ କରିବାକୁ ଇଚ୍ଛା ହୋଇଥାଏ । ଊନବିଂଶ ଶତାବ୍ଦୀର ପ୍ରାୟ ଶେଷ ଭାଗରେ ଓଡ଼ିଶାରେ ଯେଉଁ ଇଂରେଜୀ ଶିକ୍ଷାପ୍ରାପ୍ତ ଶିକ୍ଷିତ-ଗୋଷ୍ଠୀର ଅଭ୍ୟୁଦୟ ହେଲା, ସେମାନଙ୍କ ଉଦ୍ୟମରେ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ସୂତ୍ରପାତ ହୋଇଥିଲା ବୋଲି ସ୍ୱୀକାର କରିବାକୁ ହେବ । ଏହି ନୂତନ ସାହିତ୍ୟିକ ଗୋଷ୍ଠୀର ନେତୃସ୍ଥାନୀୟ ଥିଲେ "ଚିଲିକା"ର କବି ରାଧାନାଥ ରାୟ । ରାଧାନାଥ ଥିଲେ ଊନବିଂଶ ଶତାବ୍ଦୀର ଇଂରେଜ ଶିକ୍ଷା-ପ୍ରାପ୍ତ ଯୁବକମାନଙ୍କ ମଧ୍ୟରେ ଅନ୍ୟତମ । ଉଭୟ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ସାହିତ୍ୟରେ ସେ ଗଭୀର ପାଣ୍ଡିତ୍ୟ ହାସଲ କରିଥିଲେ ହେଁ ପାଶ୍ଚାତ୍ୟ ସାହିତ୍ୟର ଆଦର୍ଶରେ ସେ ଲେଖନୀ ଚାଳନା କରିଥିଲେ ।

ଊନବିଂଶ ଶତାବ୍ଦୀରେ ମିସନାରୀମାନଙ୍କ ନେତୃତ୍ୱରେ ପ୍ରଥମେ ଓଡ଼ିଆ ଭାଷାରେ ମୁଦ୍ରିତ ପତ୍ରିକା ଏବଂ ପୁସ୍ତକ ପ୍ରକାଶିତ ହୋଇଥିଲା । ପ୍ରାଚୀନ ଗତାନୁଗତିକ-ଅନୁଧ୍ୟାୟୀ ଉତ୍କଳୀୟ ସମାଜରେ ମୁଦ୍ରାଯନ୍ତ୍ରର ଆବିର୍ଭାବ ଏକ ବୈପ୍ଳବିକ ପରିବର୍ତ୍ତନ ଆନୟନ କଲା । କ୍ରମେ ଦେଶରେ ଉଚ୍ଚ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠିତ ହେଲା । ସେତେବେଳେ ମୁଖ୍ୟ ଉଚ୍ଚଶିକ୍ଷାର ଉଦ୍ଦେଶ୍ୟ ଥିଲା ଇଂରେଜ ସରକାରଙ୍କ ଦସ୍ତରରେ ଉଚ୍ଚ ବେତନଭୋଗୀ କର୍ମଚାରୀ ହେବା

ପାଇଁ ଯୋଗ୍ୟ ବିବେଚିତ ହେବା । ଓଡ଼ିଶାରେ ଇଂରେଜୀ ଶିକ୍ଷା ପ୍ରତି ବହୁକାଳ ପର୍ଯ୍ୟନ୍ତ ଆଗ୍ରହ ପ୍ରକାଶ ପାଇ ନଥିବାରୁ ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ମଧ୍ଯ ସରକାରୀ ଦପ୍ତରରେ ବଙ୍ଗାଳୀଙ୍କାରୁ ଅଧିକ ବେତନପ୍ରାପ୍ତ ଜଣେ ହେଲେ ଓଡ଼ିଆ ଲୋକ ନଥିଲେ । ସେ ଯାହା ହେଉ, ବଙ୍ଗ ଦେଶରେ କଲିକତା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ବଙ୍ଗ ଭାଷା ଓ ସାହିତ୍ୟର ଉନ୍ନତି କରିବା ନୂତନ ପ୍ରଚେଷ୍ଟା ଆରମ୍ଭ ହେଲା । ଏହା ଫଳରେ ଓଡ଼ିଶାରେ ମଧ୍ୟ ଆଧୁନିକ ଭାଷା ଓ ସାହିତ୍ୟର ଆଦର ପାଇଁ ପ୍ରେରଣା ଜାତ ହୋଇଥିଲା । ଏହି ସମ୍ପର୍କରେ ସେ କାଳରେ ଗୋଟିଏ ସାମୟିକ ପତ୍ରିକାରେ ଯାହା ଆଲୋଚନା ହୋଇଥିଲା, ତାହା ଏଠାରେ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ।

"ବର୍ତ୍ତମାନ କଲିକତା ବିଶ୍ୱବିଦ୍ୟାଳୟରେ ଯେପରି ପ୍ରସ୍ତାବମାନ ହେଉଅଛି, ସେଥିରେ ଦେଶୀୟ ଭାଷାମାନଙ୍କର ଉନ୍ନତି ହେବାର ସମ୍ଭାବନା ବୋଧ ହେଉଅଛି । ଭାରତ ବର୍ଷର ବିଶ୍ୱବିଦ୍ୟାଳୟମାନଙ୍କରେ ଆଜଯାଏଁ କେବଳ ବିଦେଶୀୟ ଭାଷା ଏବଂ ମୃତପ୍ରାୟ ସଂସ୍କୃତ ଭାଷାର ପୁସ୍ତକମାନ ପଠିତ ହେଉଅଛି । ଦେଶୀୟ କୌଣସି ଭାଷାରେ ଆଶାନୁରୂପ ଆଲୋଚନା ହେଉନାହିଁ । ମାତୃଭାଷାରେ ପାଠ ଏବଂ ପରୀକ୍ଷୋପଯୋଗୀ ଉଚ୍ଚ ଦରର ସଦ୍‌ଗ୍ରନ୍ଥ ନାହିଁ କହିଲେ ଚଳେ । ଏହା ଅବଶ୍ୟ ଭାରତ ଅନୁନ୍ନତିର ଗୋଟିଏ କାରଣ ।

ଯାହା ହେଉ ଭାରତ ବନ୍ଧୁ ହଣ୍ଟର ସାହେବ ପ୍ରସ୍ତାବ କରି ଅଛନ୍ତି ଯେ, ବିଶ୍ୱବିଦ୍ୟାଳୟର ପ୍ରତିବର୍ଷ ଯେଉଁ ଟଙ୍କା ଉଦ୍‌ବୃତ୍ତ ହୁଏ, ସେହି ଟଙ୍କାରେ ବଙ୍ଗଳାର ନୂତନ ଏବଂ ପୁରାତନ ଭଲ ପୁସ୍ତକ ସବୁ ମୁଦ୍ରିତ କରି ତାହା ବିଶ୍ୱବିଦ୍ୟାଳୟରେ ପ୍ରଚଳିତ କରାଯାଉ । ଏ ପ୍ରସ୍ତାବଟି ଉତ୍ତମ । ମାତ୍ର ଏଥିରେ କେବଳ ବଙ୍ଗଳା ଭାଷାର ଉଲ୍ଲେଖ ଥିବାରୁ ଆମ୍ଭମାନଙ୍କର ଭୟ ହେଉଅଛି, ହୁଏତ ଓଡ଼ିଆ ଭାଷା ପ୍ରତି ଆଉ କାହାରି ଦୃଷ୍ଟି ପଡ଼ିବ ନାହିଁ । ଆମ୍ଭେମାନେ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟଙ୍କୁ ସବିନୟ ପ୍ରାର୍ଥନା କରୁଅଛୁ ଯେ, ସେମାନେ ହଣ୍ଟର ସାହେବଙ୍କ ପ୍ରସ୍ତାବକୁ ବିଚାର କଲାବେଳେ ଓଡ଼ିଆ ଭାଷା ପ୍ରତି ଦୃଷ୍ଟି ରଖିବେ ।" ❊

❊ ନବ ସମ୍ବାଦ—୧୪।୩।୧୮୮୭—ପୃ: ୩୩

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ରୀତିକାଳର ସଙ୍ଗୀତ-କବିଗଣ ଆଧିପତ୍ୟ ବିସ୍ତାର କରିଥିଲେ । ସେତେବେଳେ କବିସୂର୍ଯ୍ୟ, ବନମାଳୀ, ଗୋପାଳକୃଷ୍ଣ ପ୍ରଭୃତିଙ୍କର ମଧୁର ଭକ୍ତି-ସଙ୍ଗୀତ ଜନସାଧାରଣଙ୍କ ପ୍ରାଣକୁ ଆକ୍ରାନ୍ତ କରି ରଖିଥିଲା । ଊନବିଂଶ ଶତାବ୍ଦୀରେ ଆଧୁନିକ ଯୁଗର ଉଦୟ ପାଇଁ ପାଣି ପାଗ ପ୍ରସ୍ତୁତ ହେଉଥିଲେ ହେଁ ରୀତି ଓ ଧର୍ମ ଦୃଷ୍ଟିରୁ ଏହି କବିଗଣ ଆଧୁନିକ ନ ଥିଲେ । ଓଡ଼ିଆ ଭାଷାରେ ପ୍ରକାଶିତ ସାମୟିକ ପତ୍ରିକାରେ କ୍ରମଶଃ ଆଧୁନିକ ସାହିତ୍ୟ ସୃଷ୍ଟି ପାଇଁ ଆନ୍ଦୋଳନ ଆରମ୍ଭ ହେଲା । ଅତିଶୟ ଆଧୁନିକ ପନ୍ଥୀ ହୋଇ ପଡ଼ିବା ଯୋଗୁ ଆଲୋଚନା କାଳରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରତି ସେମାନଙ୍କର ଉଦାର ଦୃଷ୍ଟି-ଭଙ୍ଗୀର ପରିଚୟ ମିଳୁ ନଥିଲା । "ଉତ୍କଳ ସାହିତ୍ୟ" ଶୀର୍ଷକ ଏକ ଆଲୋଚନାରେ 'ନବ ସମ୍ବାଦ' ପ୍ରାଚୀନ ଉତ୍କଳୀୟ ସମାଜ ଏବଂ ଓଡ଼ିଆ ସାହିତ୍ୟର ଆଲୋଚନା କରି ତାହା ବାସ୍ତବିକ ଆଧୁନିକ-ଧର୍ମୀ ସାହିତ୍ୟ ସୃଷ୍ଟି ପାଇଁ ଅନୁକୂଳ ନ ଥିଲା ବୋଲି ମତବ୍ୟକ୍ତ କରିଥିଲେ । ତାଙ୍କ ମତରେ ସେ କାଳରେ ଓଡ଼ିଶାର ଚାରିଆଡ଼େ ବଣ ପାହାଡ଼ ବିସ୍ତୃତ ହୋଇଥିଲା । ଦେଶର ବିଭିନ୍ନ ପ୍ରାନ୍ତକୁ ରାସ୍ତାଘାଟର ସୁବିଧା ନ ଥିଲା । ତେଣୁ ଲୋକ ଏବଂ ଗୋଷ୍ଠୀ ମଧ୍ୟରେ ନିବିଡ଼ ସମ୍ପର୍କ ସ୍ଥାପନ ହେବା ଅସମ୍ଭବ ଥିଲା । ଏହି ପ୍ରଦେଶଟି ବହୁ ଦେଶୀୟ ରାଜ୍ୟରେ ବିଭକ୍ତ ହୋଇଥିଲା ଏବଂ ପ୍ରତ୍ୟେକେ ଶାସନ ଦୃଷ୍ଟିରୁ ସ୍ୱତନ୍ତ୍ର ଥିଲେ । ତେଣୁ ଏହି ଦେଶରେ ଏକ ବୃହତ୍ତର ସମାଜ ଜୀବନ ନ ଥିଲା ବୋଲି ସ୍ୱୀକାର କରିବାକୁ ହେବ । ଯେଉଁଠାରେ ବିଶାଳ ସମାଜ-ଜୀବନର ଅଭାବ ଥାଏ, ସେଠାରେ ସାହିତ୍ୟ ହୁଏ ବ୍ୟକ୍ତିସ୍ୱାତନ୍ତ୍ର୍ୟ-ଧର୍ମୀ ଏବଂ ଲିରିକ-ଧର୍ମୀ । ସାମାଜିକତାର ଅଭାବରେ ସ୍ୱାତନ୍ତ୍ର୍ୟ ଏବଂ ଆତ୍ମପରାୟଣତା ବୃଦ୍ଧି ପାଏ । ସେ କାଳର କବିମାନେ ପ୍ରାୟଶଃ ରାଜ-ପୃଷ୍ଠପୋଷକତା ଲାଭ କରୁଥିଲେ, ରାଜଦରବାରରେ ଆବଦ୍ଧ ଥାଇଁ ମାନବ ଚରିତ୍ରର ଧାରଣା, ଏକ ସୀମିତ ବେଷ୍ଟନୀ ମଧ୍ୟରେ ରଖିବା ପାଇଁ ବାଧ୍ୟ ହୋଇଥିଲେ । ତେଣୁ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ସଙ୍ଗୀତମୟ ଏବଂ ପାଣ୍ଡିତ୍ୟପୂର୍ଣ୍ଣ । ଏହି ଯୁଗର କାବ୍ୟମାନଙ୍କରେ ଚରିତ୍ରର ସରଳ ସ୍ୱାଭାବିକ ବିକାଶ ହୋଇ ପାରିନାହିଁ । ଭାବର ଉଚ୍ଛ୍ୱାସ ନାହିଁ । ଭାଷାର ଅବିରାମ ନିର୍ବିରୋଧ ଗତି ନାହିଁ । ଅନେକ କ୍ଷେତ୍ରରେ କବିତ୍ୱ ଶକ୍ତି ଅପେକ୍ଷା

ବିଦ୍‌ବିଷୟର ଅଧିକ ପରିଚୟ ଦିଆ ଯାଇଛି । ତେଣୁ ଏହି କବିମାନେ କ୍ଷୁଦ୍ର ସଙ୍ଗୀତ ରଚନାରେ ଯେପରି ସଫଳତା ଅର୍ଜନ କରିଅଛନ୍ତି, ବୃହତ୍ତର ଜୀବନର ସମ୍ପର୍କ ଅଭାବରେ ବୃହତ୍ ରଚନାରେ ସଫଳ ହୋଇପାରି ନାହାନ୍ତି ।

କାରଣ ଏହି ଆଲୋଚନାରେ ପ୍ରାଚୀନ ଗ୍ରନ୍ଥପ୍ରତି ଦୃଷ୍ଟି ଆକର୍ଷଣ କରି କୁହାଯାଉଛି ଯେ, ସେଗୁଡ଼ିକରେ ମାନବାକାଙ୍‌କ୍ଷାର ପ୍ରତିମୂର୍ତ୍ତି ନାହିଁ, ଚରିତ୍ରର ବିଶ୍ଳେଷଣ ନାହିଁ, ଜୀବନର ସମାଲୋଚନା ନାହିଁ । ଯେଉଁ ରୂପ ବର୍ଣ୍ଣନା କରାଯାଉଛି, ତାହା ଚରିତ୍ର ଚିତ୍ରଣ ନୁହେଁ, ସେହିପରି ବିଳାସ କେଳି ବର୍ଣ୍ଣନା ଜୀବନର ପ୍ରତିଛବି ନୁହେଁ । ସେହିପରି ବେଶଭୂଷାର ପ୍ରବୃତ୍ତି ମାନବର ଆକାଙ୍‌କ୍ଷା ନୁହେଁ, ତାଙ୍କ ମତରେ ପ୍ରାଚୀନ କାଳରେ ଏ ଦେଶରେ ବିସ୍ତୃତ ସମାଜ ନ ଥିଲା, ଜୀବନର ଯଥାର୍ଥ ଅଭିଜ୍ଞତା ମଧ୍ୟ ନ ଥିଲା । କେବଳ ରାଜସଭାର ଆଡ଼ମ୍ବର ଥିଲା ମାତ୍ର । ସୁନ୍ଦର ପ୍ରକୃତ କବିତାର ସ୍ୱାଭାବିକ ବିକାଶ ଦେଖିବାକୁ ମିଳେ ନାହିଁ । ସମୁଦାୟ କେବଳ ଛନ୍ଦ ଶୃଙ୍ଖଳ୍ୟ, ବାକ୍ୟାଡ଼ମ୍ବରରେ ପର୍ଯ୍ୟବସିତ ହୋଇଅଛି । ପୁନଶ୍ଚ ଓଡ଼ିଶାର ଏ ସବୁଜ ପ୍ରକୃତି ତମାଳ-ତାଳୀ ବନରାଜୀ ଲୀଳା, ତରଙ୍ଗ ଚଞ୍ଚଳ ନୀଳପାରାବାର ଅଥବା ପର୍ବତର ଅବିଚଳ ମୂର୍ତ୍ତି ଭଙ୍ଗୀ, ଏମାନଙ୍କ କବିତାରେ ଦେଖିବା ସ୍ୱପ୍ନ ହୋଇଅଛି । ଏମାନେ ଥିଲେ ରାଜସଭାର କବି । ତେଣୁ ପ୍ରାଚୀନ କବିତା ଅଧିକ ପରିମାଣରେ ବାହ୍ୟିକ ଶୃଙ୍ଗାରିକ ବିଳାସ ବେଶ ରୂପାୟିତ ହୋଇ-ଅଛି । ବସ୍ତୁତଃ ସମାଜ ନ ଥିବାରୁ ସାଧାରଣ ସହାନୁଭୂତିର ପରିଚାୟକ କବିତାର ସୃଷ୍ଟି ହୋଇ ପାରିନାହିଁ । ଆତ୍ମପରିତୃପ୍ତି ଫଳ ଯୋଗୁ ନିକୃଷ୍ଟ ଇନ୍ଦ୍ରିୟ ଲାଳସା ପ୍ରକାଶିତ ହୋଇଅଛି । ※

ସୁଖର କଥା ଯେ, 'ଓଡ଼ିଆ ଓ ନବସମ୍ବାଦ'ରେ ଏହି ଆଲୋଚନା ପ୍ରକାଶିତ ହେବାର ପ୍ରାୟ ବର୍ଷକ ମଧ୍ୟରେ ଓଡ଼ିଆ ଭାଷାର ଉନ୍ନତିକଳ୍ପେ ଏକ ପତ୍ରିକା ପ୍ରକାଶିତ ହେବାପାଇଁ ବିଜ୍ଞାପନ ପ୍ରଚାରିତ ହେଲା । ଏହା ଥିଲା ଉତ୍କଳ ପ୍ରଭା ସମ୍ପର୍କରେ ବିଜ୍ଞାପନ ପତ୍ର ଏବଂ ମୟୂରଭଞ୍ଜ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓଙ୍କ ତରଫରୁ ଏହି ନିବେଦନ ପ୍ରକାଶିତ ହୋଇଥିଲା । "An

※ ଓଡ଼ିଆ ଓ ନବ ସମ୍ବାଦ – ୧୬।୨।୧୮୮୯ ଏବଂ ୨୩।୨।୧୮୮୯ ।

appeal to the educated Orissa" ଉତ୍କଳବାସୀ କୃତବିଦ୍ୟ ମହାତ୍ମାଙ୍କଠାରେ ନିବେଦନ । ସେଥିରେ ଏକ ସ୍ଥାନରେ କୁହାଯାଇଥିଲା, "ଯଦି ଉତ୍କଳବାସୀ କୃତବିଦ୍ୟ ଧନୀ ଓ ମଧ୍ୟବିତ୍ତ ସଂପ୍ରଦାୟ ଦେଶୀୟ ସାହିତ୍ୟ ଓ ମାତୃଭାଷାର ଉନ୍ନତି ନିମନ୍ତେ ଏକାନ୍ତ ଯତ୍ନବାନ୍ ହୁଅନ୍ତେ, ତେବେ କି ଆଜି ଏହାର ଅବସ୍ଥା ଏତେଦୂର ଶୋଚନୀୟ ହୋଇଥାନ୍ତା । ପ୍ରସ୍ତାବିତ ପତ୍ରିକାରେ ପ୍ରାଞ୍ଜଳ ଓଡ଼ିଆ ଭାଷାରେ ସାହିତ୍ୟ, ବିଜ୍ଞାନ, ଦର୍ଶନ, ସମାଜନୀତି ଓ ସାଧାରଣ ଧର୍ମନୀତିର ପ୍ରଭୃତି ଆଲୋଚନା ହେବ ବୋଲି ସୂଚନା ଦିଆ-ଯାଇଥିଲା । ଓଡ଼ିଆ ଭାଷାର ଉନ୍ନତିକଳ୍ପେ ଏହି ନିବେଦନ ଥିଲା ଅତ୍ୟନ୍ତ ଆନ୍ତରିକତାପୂର୍ଣ୍ଣ । ଲେଖକମାନେ କିପରି ଅଧିକ ଆକୃଷ୍ଟ ହେବେ, ସେଥିପାଇଁ ପୁରସ୍କାର ଦେବାପାଇଁ ଉଦ୍ୟୋକ୍ତାଗଣ ବ୍ୟବସ୍ଥା କରିଥିଲେ । ଗୋଟିଏ ବର୍ଷ ମଧ୍ୟରେ ଯେଉଁମାନେ ଛ'ଗୋଟି ଉତ୍କୃଷ୍ଟ ଗଦ୍ୟମୟ ପ୍ରବନ୍ଧ ଲେଖିଦେବେ, ସେମାନଙ୍କ ମଧ୍ୟରୁ ଶ୍ରେଷ୍ଠ ବ୍ୟକ୍ତିଙ୍କୁ ୬୦ ଟଙ୍କା ଏବଂ ପଦ୍ୟମୟ ପ୍ରବନ୍ଧ ଲେଖକଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ବ୍ୟକ୍ତିଙ୍କୁ ୧୨୦ ଟଙ୍କା ପୁରସ୍କାର ଦିଆଯିବ ବୋଲି ଘୋଷଣା କରାଯାଇଥିଲା । ଏହି ପୁରସ୍କାରଯୋଗ୍ୟ ପ୍ରବନ୍ଧ ମୌଳିକ ଏବଂ ଉଚ୍ଚକୋଟୀର ହେବା ଆବଶ୍ୟକ । ଇଂରେଜୀ ବା ବଙ୍ଗଳାରୁ ଭାଷାନ୍ତରିତ ହେବା ଉଚିତ ନୁହେଁ । ନାଟକ, ଆଖ୍ୟାୟିକା ଅଥବା ବୈଜ୍ଞାନିକ ପୁସ୍ତକ ଉତ୍କଳ ପ୍ରଭାରେ ପ୍ରକାଶିତ ହେଲେ ଏବଂ ପୁରସ୍କାର ଯୋଗ୍ୟ ବିବେଚିତ ହେଲେ ଦୁଇଶତ ଟଙ୍କା ପୁରସ୍କାର ପାଇବେ । ଲେଖକମାନେ ପ୍ରକାଶିତ ପ୍ରବନ୍ଧକୁ ପୁସ୍ତକାକାରରେ ଦେଖିବାକୁ ଇଚ୍ଛା କଲେ ଉକ୍ତ ପୁସ୍ତକର ପାଞ୍ଚଶହ ଖଣ୍ଡ କାଗଜ ଓ କାଳି ଦାମ ଗ୍ରହଣ କରି ମୟୂରଭଞ୍ଜ ମୁଦ୍ରାଯନ୍ତ୍ରରେ ବିନା ମୂଲ୍ୟରେ ଛପାଇ ଦିଆଯିବ । ପରିଶେଷରେ ଏହି ପ୍ରବନ୍ଧ ନିର୍ବାଚନୀ ମଣ୍ଡଳରେ ଥିଲେ ସେ କାଳର କୃତୀ ସନ୍ତାନବର୍ଗ—ସର୍ବଶ୍ରୀ ରାଧାନାଥ ରାୟ, ନନ୍ଦକିଶୋର ଦାସ, ମଧୁସୂଦନ ରାଓ, ପ୍ୟାରିମୋହନ ସେନ, ଭଗବତୀ ଚରଣ ସେନ, ଚତୁର୍ଭୁଜ ପଟ୍ଟନାୟକ, ଫକୀରମୋହନ ସେନାପତି, ଗୌରୀଶଙ୍କର ରାୟ, ଗୋବିନ୍ଦଚନ୍ଦ୍ର ମହାପାତ୍ର, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ । *

* ଓଡ଼ିଆ ଓ ନବ ସମ୍ବାଦ—୩୧।୧୨।୧୮୯୦

୧୮୯୧ ଖ୍ରୀଷ୍ଟାବ୍ଦର ପ୍ରଥମ ଭାଗରେ ରାଜ-ପୃଷ୍ଠପୋଷକତା ଲାଭକରି 'ଉତ୍କଳପ୍ରଭା' ଆତ୍ମପ୍ରକାଶ କଲା । ସତେ ଯେପରି ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ଅଭ୍ୟୁଦୟ ପାଇଁ ଏତେକାଳ ଅପେକ୍ଷା କରିବାକୁ ପଡ଼ିଥିଲା । ଏହି ପତ୍ରିକାର ପ୍ରାପ୍ତି ସ୍ୱୀକାର କରି 'ଓଡ଼ିଆ ଓ ନବସମ୍ବାଦ' (୨୯।୪।୧୮୯୧ ଓ ୬।୫।୧୮୯୧) ବିସ୍ତୃତ ଆଲୋଚନା କରିଥିଲେ । 'ଉତ୍କଳପ୍ରଭା' ପ୍ରଥମ ସଂଖ୍ୟାର ସୂଚନାରେ ଲେଖିଥିଲେ—ଓଡ଼ିଆ ଭାଷାରେ ପ୍ରକୃତତଃ ସାହିତ୍ୟ ନାହିଁ ବୋଲିଲେ ଅତ୍ୟୁକ୍ତି ହେବ ନାହିଁ । ଉତ୍କଳ ସାହିତ୍ୟ ମଧ୍ୟରେ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଦାସ, କବିସୂର୍ଯ୍ୟ ବ୍ରହ୍ମା ପ୍ରଭୃତିଙ୍କ ରଚିତ ଖଣ୍ଡ ଦଶ ବାକ୍ୟ, ଜଗନ୍ନାଥ ଦାସଙ୍କ ଭାଗବତ ଏବଂ ସାରଳାଦାସଙ୍କ ରାମାୟଣ ଓ ମହାଭାରତ ଏହା କି ଗୋଟିଏ ଜାତିର ସାହିତ୍ୟକୁ ଲକ୍ଷ୍ୟ ? ପୁଣି ଯେଉଁ ସମସ୍ତ ଗ୍ରନ୍ଥର ନାମ କଲୁ, ସେମାନଙ୍କ ମଧ୍ୟରୁ କେବଳ ଜଗନ୍ନାଥ ଦାସଙ୍କ ଶ୍ରୀମଦ୍ଭାଗବତକୁ ଛାଡ଼ି ଆଉ ସବୁଦ୍ୱାରା ସମାଜର ଉନ୍ନତି ହେବା ଦୂରେ ଥାଉ ବରଂ ଅଧୋଗତି ହେଉଅଛି । ଅବଶ୍ୟ ସ୍ୱୀକାର କରାଯାଏ ଯେ, ଉପେନ୍ଦ୍ର, ଦୀନକୃଷ୍ଣ ପ୍ରଭୃତି ଉଚ୍ଚଦରର କବି ଥିଲେ । ସେମାନଙ୍କର କଳ୍ପନାଶକ୍ତି ଓ ନିପୁଣ ଦର୍ଶନ ଉତ୍କୃଷ୍ଟ ଏବଂ ସେମାନଙ୍କ ରଚିତ ଗ୍ରନ୍ଥରେ ମୌଳିକତା ଏବଂ ଭାବଗାମ୍ଭୀର୍ଯ୍ୟର ଅଭାବ ନାହିଁ । କିନ୍ତୁ ଭଞ୍ଜକବି ସ୍ୱୀୟ ଗ୍ରନ୍ଥମାନଙ୍କରେ ଆଦିରସ ରୂପ ହଳାହଳ ସମୁଦ୍ର ମନ୍ଥନ କରିଅଛନ୍ତି । ଏଭଳି ଗ୍ରନ୍ଥ ସମାଜର ବୈଗୁଣ୍ୟ ଜନ୍ମାଇବାକୁ ହିଁ ସକ୍ଷମ । ଯେଉଁ ଗ୍ରନ୍ଥ ପାଠକଲେ ସମାଜସ୍ଥ ସ୍ୱ ସ୍ୱ କର୍ତ୍ତବ୍ୟବୋଧ ଜନ୍ମେ ଏବଂ ଯାହା ସମସ୍ତଙ୍କୁ ନୀତିଶିକ୍ଷା, ଚରିତ୍ର ଗଠନ ଓ ସାମାଜିକତା ଶିକ୍ଷା ନିମନ୍ତେ ସାହାଯ୍ୟ କରିପାରେ, ତାହା ପ୍ରକୃତ ସାହିତ୍ୟ ଅଟେ । ଏଭଳି ସାହିତ୍ୟ ଓଡ଼ିଆଙ୍କର ନାହିଁ । ସୁତରାଂ ଉତ୍କଳ ସମାଜରେ ଉନ୍ନତିର ଉପାୟ ନାହିଁ । ଏହି ଅଭାବ ପୂରଣ କରିବା ଉଦ୍ଦେଶ୍ୟରେ 'ଉତ୍କଳ ପ୍ରଭା'ର ଉତ୍କଳବକ୍ଷରେ ଆବିର୍ଭାବ । *

ରୀତିଯୁଗ ଓଡ଼ିଆ ସାହିତ୍ୟ ସମ୍ପର୍କରେ 'ଉତ୍କଳ ପ୍ରଭା'ଙ୍କର ମତ ସହିତ ଏକମତ ନ ହେବାପାଇଁ ଅନେକ କାରଣ ରହିଅଛି । ମାତ୍ର ଏହାର ଆଭିମୁଖ୍ୟରୁ ଏତିକି ପ୍ରତିପାଦିତ ହେଉଅଛି ଯେ, ରୀତିଯୁଗ ଆଦର୍ଶର

* 'ଉତ୍କଳ ପ୍ରଭା'—ପ୍ରଥମ ଭାଗ—ପ୍ରଥମ ସଂଖ୍ୟା

ବନ୍ଧନରେ ଖଣ୍ଡ଼ିଗ ଉତ୍ତୋଳନ କରି ସମ୍ପୂର୍ଣ୍ଣ ଏକ ନୂତନ ମୂଲ୍ୟବୋଧର ପ୍ରଚାର ପାଇଁ ଯେଉଁ ଉଦ୍ୟମ ହୋଇଥିଲା, ତାହାର ନେତୃତ୍ୱ ଗ୍ରହଣ କରିଥିଲେ 'ଉତ୍କଳ ପ୍ରଭା' । କିଛି କାଳ ପରେ ପ୍ରାଚୀନ ଓ ନୂତନ ସାହିତ୍ୟର ସଂଘର୍ଷକୁ କେନ୍ଦ୍ର କରି ଇନ୍ଦ୍ରଧନୁ ଓ ବିଜୁଳି ପତ୍ରିକା ଆତ୍ମପ୍ରକାଶ କରିଥିଲେ । ମୋଟ ଉପରେ ଊନବିଂଶ ଶତାବ୍ଦୀର ଏହି ଶେଷ ଦଶକରେ ଏକ ସାହିତ୍ୟିକ ଆନ୍ଦୋଳନ ଆରମ୍ଭ ହୋଇ ଓଡ଼ିଆ ସାହିତ୍ୟର ମୂଳ ଭିତ୍ତିପ୍ରସ୍ତର ପ୍ରତିଷ୍ଠା ହୋଇଥିଲା ।

'ଉତ୍କଳ ପ୍ରଭା'ର ଧାରାବାହିକ ଲେଖକ ମଧ୍ୟରେ ଥିଲେ ଚନ୍ଦ୍ରମୋହନ ମହାରଣା, ବିଶ୍ୱନାଥ କର, ରାମନାରାୟଣ ରାୟ, ରାମଶଙ୍କର ରାୟ, ଗୋବିନ୍ଦଚନ୍ଦ୍ର ମହାପାତ୍ର, ରାଧାନାଥ ରାୟ, ମଧୁସୂଦନ ରାଓ, ଗଣପତି ଦାସ । ଏହି ପତ୍ରିକାରେ 'ଚିଲିକା' କାବ୍ୟ ପ୍ରକାଶ କରି ରାଧାନାଥ ପୁରସ୍କୃତ ହୋଇଥିଲେ । ବିଶ୍ୱନାଥ କରଙ୍କ ପ୍ରବନ୍ଧଗୁଡ଼ିକ ମଧ୍ୟ 'ପ୍ରଭା'ରେ ପ୍ରକାଶିତ ହୋଇ ପୁରସ୍କାର ଲାଭ କରିଥିଲା । ଭକ୍ତକବି ମଧୁସୂଦନଙ୍କ 'ଋଷିପ୍ରାଣେ ଦେବାବତରଣ' ପ୍ରକାଶ କରି 'ପ୍ରଭା' ପ୍ରଥମେ ପାଠକର ଦୃଷ୍ଟି ଆକର୍ଷଣ କରିଥିଲେ । ଉକ୍ତ କବି ଏଥିପାଇଁ ପୁରସ୍କୃତ ମଧ୍ୟ ହୋଇଥିଲେ । ରାମଶଙ୍କରଙ୍କ ଉପନ୍ୟାସ 'ବିବାସିନୀ' ମଧ୍ୟ 'ଉତ୍କଳ ପ୍ରଭା'ରେ ପ୍ରକାଶିତ ହୋଇ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ବାର୍ତ୍ତା ପ୍ରଚାର କରିଥିଲା ।

କବି ରାଧାନାଥ ୧୮୮୭ ଖ୍ରୀଷ୍ଟାବ୍ଦରେ ତାଙ୍କର ପ୍ରଥମ ଓଡ଼ିଆ କାବ୍ୟ କେଦାରଗୌରୀ ପ୍ରକାଶ କରିଥିଲେ । ତତ୍‌ପରବର୍ଷ 'ନନ୍ଦିକେଶରୀ' ଏବଂ ୧୮୯୧ ଖ୍ରୀଷ୍ଟାବ୍ଦରେ 'ପାର୍ବତୀ' ପ୍ରକାଶିତ ହେଲେହେଁ 'ଉତ୍କଳ ପ୍ରଭା' ୧୮୯୨ ଖ୍ରୀଷ୍ଟାବ୍ଦରେ 'ଚିଲିକା' କାବ୍ୟ ପ୍ରକାଶ କରି ରାଧାନାଥଙ୍କ ଉଜ୍ଜ୍ୱଳ ପ୍ରତିଭାର ସମ୍ୟକ୍ ପ୍ରଦର୍ଶନ କରିବାକୁ କ୍ଷମ ହୋଇଥିଲେ । ମହାଯାତ୍ରାକୁ ବାଦ ଦେଲେ ବୋଧହୁଏ ରାଧାନାଥଙ୍କ ସର୍ବଶ୍ରେଷ୍ଠ କାବ୍ୟ ଭାବରେ 'ଚିଲିକା' ପରିଗଣିତ ହୋଇଥାଏ । ଅନ୍ୟାନ୍ୟ କାବ୍ୟକୃତିରେ ରାଧାନାଥ କେତେକ ପରିମାଣରେ ଓଡ଼ିଆ ଗାଡ଼ଯୁଗ ସାହିତ୍ୟର ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ହେଁ କେବଳ ଚିଲିକା କାବ୍ୟ ହିଁ ତାଙ୍କୁ ଆଧୁନିକ ଯୁଗ ସାହିତ୍ୟର ଆଲୋକବର୍ତ୍ତିକାରୂପେ ନିର୍ଦ୍ଦେଶ ପ୍ରଦାନ କରି ପାରିବ । ପୁନଶ୍ଚ ସେହି

'ଉତ୍କଳ ପ୍ରଭା'ରେ ୧୮୯୩ ଖ୍ରୀଷ୍ଟାବ୍ଦ ଜୁନ ସଂଖ୍ୟାଠାରୁ 'ମହାଯାତ୍ରା' କ୍ରମଶଃ ପ୍ରକାଶିତ ହୋଇ ଏହି ଆଧୁନିକ ଆନ୍ଦୋଳନର ଅନ୍ୟ ଏକ ଦିଗ ପ୍ରଦର୍ଶନ କରିଥିଲେ । ମୋଟ ଉପରେ ଉପନ୍ୟାସ, କାବ୍ୟ, କବିତା, ପ୍ରବନ୍ଧ, ସମାଲୋଚନା ପ୍ରଭୃତି ବିଭିନ୍ନ କ୍ଷେତ୍ରରେ 'ଉତ୍କଳ ପ୍ରଭା' ବାସ୍ତବିକ ନୂତନ ଯୁଗର ସନ୍ଦେଶ ପ୍ରଦାନ କରିଥିଲେ ।

ମାତ୍ର ଦୁଃଖର କଥା ଯେ, ଏପରି ରାଜ-ପୃଷ୍ଠପୋଷକତା ଏବଂ ଆର୍ଥିକ ପ୍ରଲୋଭନ ଥାଇ ସୁଦ୍ଧା ଉପଯୁକ୍ତ ଲେଖା ଅଭାବରେ 'ଉତ୍କଳ ପ୍ରଭା' ନିୟମିତ ପ୍ରକାଶ ପାଇ ପାରିଲା ନାହିଁ । ଏଥିପାଇଁ ଜଣେ ପତ୍ରପ୍ରେରକ ଛଦ୍ମନାମରେ ମୟୂରଭଞ୍ଜ ମହାରାଜାଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଏହି ପତ୍ରଟି 'ଓଡ଼ିଆ ଓ ନବ ସଂବାଦ' ପତ୍ରିକାର ୨୫।୧।୧୮୯୩ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । କେବଳ ଉପଯୁକ୍ତ ପ୍ରବନ୍ଧ ଅଭାବରେ 'ଉତ୍କଳ ପ୍ରଭା' ବନ୍ଦ ହେବାକୁ ବସିଥିଲା । ତେଣୁ ମୟୂରଭଞ୍ଜ ମୁଦ୍ରାଯନ୍ତ୍ରର ତତ୍ତ୍ୱାବଧାରକ ବାବୁ ଗୋବିନ୍ଦ ଚନ୍ଦ୍ର ମହାପାତ୍ର 'ପ୍ରଭା' ବନ୍ଦ ନ କରାଇ ତହିଁରେ ସଂସ୍କୃତ ମହାଭାରତର ଧାରାବାହିକ ପ୍ରକାଶ କରିବେ ବୋଲି ଘୋଷଣା କରିଥିଲେ । ଏଥିରୁ ଏହି ଆଧୁନିକ ଆନ୍ଦୋଳନରେ ଗଦ୍ୟ ସାହିତ୍ୟର ସୃଷ୍ଟି ପାଇଁ ଅଧିକ ଆଗ୍ରହ ପ୍ରକାଶିତ ହୋଇଥିବା ଜଣା ଯାଉଅଛି । ଅବଶ୍ୟ ରାଧାନାଥ, ମଧୁସୂଦନ, ଗଙ୍ଗାଧର ପ୍ରଭୃତି ମୁଖ୍ୟତଃ କବି ହେଲେହେଁ ଏମାନେ ସମସ୍ତେ ଗଦ୍ୟ ରଚନାରେ ମନୋନିବେଶ କରିଥିଲେ ।

ସୁଖର କଥା ଯେ, ଏହି ସମୟରେ 'ଉତ୍କଳ ସାହିତ୍ୟ' ଆଲୋଚନା, ଉତ୍କଳ ମଧୁପ ପ୍ରଭୃତି କେତେକ ସାହିତ୍ୟ ପତ୍ରିକାର ଅଭ୍ୟୁଦୟ ହୋଇଥିଲା ।

ପୂର୍ବରୁ ଇନ୍ଦ୍ରଧନୁ ଏବଂ ବିଜୁଳି ପତ୍ରିକାର ସଂଘର୍ଷ ଫଳରେ ଓଡ଼ିଆ ସାହିତ୍ୟର ପାଣିପାଗ ଅସ୍ୱାସ୍ଥ୍ୟକର ହୋଇଥିଲେ ହେଁ ସାହିତ୍ୟର ବୈଜ୍ଞାନିକ ସମୀକ୍ଷା ପାଇଁ ଏକ ଉଦାର ଦୃଷ୍ଟିଭଙ୍ଗୀର ପରିଚୟ ମିଳିଥିଲା । ତେଣୁ ବିଜୁଳିର ସମ୍ପାଦକ ଶ୍ରୀଯୁକ୍ତ ଦାଶରଥି ପଣ୍ଡିତ ଅନୁତପ୍ତ ହୋଇ 'ବିଜୁଳି' ସଂପାଦନାରୁ ବିଦାୟ ଗ୍ରହଣ କରିଥିଲେ । * ପରେ ପରେ ଇନ୍ଦ୍ରଧନୁ ମଧ୍ୟ ନୀରବ ହୋଇ ଯାଇଥିଲେ ।

* ଓଡ଼ିଆ ଓ ନବ ସମ୍ବାଦ—୩୧।୧୦।୧୮୯୪

ଊନବିଂଶ ଶତାବ୍ଦୀର ଶେଷଭାଗ ଓଡ଼ିଆ ଭାଷା ପକ୍ଷରେ ଥିଲା ଅତ୍ୟନ୍ତ ଦୁଃଖଦାୟକ । କଣ୍ଟକାଳ ପୂର୍ବରୁ ଓଡ଼ିଆ ଭାଷା ଲୋପ କରିବା ପାଇଁ ଯେଉଁ ଚକ୍ରାନ୍ତ ହୋଇଥିଲା, ସେହି ଦୁଃଖର କ୍ଷତ ଓଡ଼ିଆମାନେ ଭୁଲିଯିବା ପୂର୍ବରୁ ତେଣେ ସମ୍ବଲପୁରରେ ଓଡ଼ିଆ ଭାଷା ଲୋପ ପାଇଁ ଏକ ଚକ୍ରାନ୍ତ ଆରମ୍ଭ ହୋଇଗଲା । ଏହି ବିଷୟରେ 'ସମ୍ବଲପୁର ହିତୈଷିଣୀ' ଯେଉଁ ଆଲୋଚନା ପ୍ରକାଶ କରିଥିଲେ, ତାହା ଓଡ଼ିଆ ଓ ନବସମ୍ବାଦ ପ୍ରଚାର କରିଥିଲେ । ସେଥିରୁ ଜଣାଯାଏ ଯେ, ସମ୍ବଲପୁର ବିଭାଗର ପୋଲିସ ସମ୍ବନ୍ଧୀୟ କାଗଜ-ପତ୍ର ଓଡ଼ିଆ ଭାଷାରେ ଲିଖିତ ନ ହୋଇ ହିନ୍ଦୀ ଭାଷାରେ ଲିଖିତ ହେବା ବିଷୟରେ କମିସନର ସାହେବ ଏକ ପ୍ରସ୍ତାବ କରି ଚୀଫ୍ କମିସନରଙ୍କଠାକୁ ପଠାଇଥିଲେ । ଅତ୍ୟନ୍ତ ଦୁଃଖର କଥା ଯେ, ଚୀଫ୍ କମିସନର ସାହେବ ସେହି ପ୍ରସ୍ତାବ ଅନୁମୋଦନ କରିଥିଲେ । ପୋଲିସ କାଗଜ ଦେଶୀୟ ଭାଷାରେ ଲିଖିତ ହେବାଦ୍ୱାରା ଜନସାଧାରଣଙ୍କର ଯେ କେତେ ସୁବିଧା ହେବ, ଏହା କହିବା ବାହୁଲ୍ୟ ମାତ୍ର । ଯେତେବେଳେ ପ୍ରଦେଶର ଭାଷା ଓଡ଼ିଆ, ସେତେବେଳେ ଗୋଟିଏ ଭିନ୍ନ ଭାଷା ପ୍ରବର୍ତ୍ତାଇବା ପାଇଁ ଏତେ ବ୍ୟଗ୍ରତା ଯେଉଁଠାରୁ କେବଳ ଓଡ଼ିଆ ଭାଷା ପ୍ରଚଳନ ରହିତ କରିବା ଉଦ୍ୟମ ମାତ୍ର । ଏ ବିଷୟରେ କମିଶନର ବାହାଦୁର ବିଚାର କରିବା ପାଇଁ ଏବଂ ସମ୍ବଲପୁରବାସୀ ପ୍ରତିକାର ଲୋଡ଼ିବା ପାଇଁ ଆଶା କରାଯାଇଥିଲା । ✻

ଏହି ପରିପ୍ରେକ୍ଷୀରେ ଆଧୁନିକ ଓଡ଼ିଆ ଯୁଗସାହିତ୍ୟର ଅଭ୍ୟୁଦୟ ଏବଂ ପ୍ରସାର ହୋଇଥିଲା । କି ଆବେଗ ଏବଂ ଉନ୍ମାଦନାର ଅନୁରୋଧରେ ରାଧାନାଥ, ଫକୀରମୋହନ, ମଧୁସୂଦନ, ଗଙ୍ଗାଧର, ରାମଶଙ୍କର ପ୍ରଭୃତି ଆଧୁନିକ ସାହିତ୍ୟର ମୂଳଭିତ୍ତି ପ୍ରତିଷ୍ଠା କରିଥିଲେ, ତାହା ସ୍ୱତନ୍ତ୍ର ଭାବରେ ଆଲୋଚ୍ୟ । ତେବେ ଏକଥା ସତ୍ୟ ଯେ, ପ୍ରାଚୀନ ସାମାଜିକ ଜୀବନର ରକ୍ଷଣଶୀଳ ବନ୍ଧନରୁ ମୁକ୍ତ ହୋଇ ଆଧୁନିକ ସାହିତ୍ୟର ବଡ଼ ପଣ୍ଡିତଗଣ ଯେଉଁ ନୂତନ ଆଦର୍ଶର ପ୍ରତିଷ୍ଠା କଲେ, ସେଥିପାଇଁ ସେମାନେ ଅଭିନନ୍ଦନୀୟ । ତେବେ ଏହି ସଂଘର୍ଷପୂର୍ଣ୍ଣ ଯୁଗର ଅବସାନ ପରେ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠା ଲାଭ କରିଥିଲା ଆଧୁନିକ ଯୁଗ ବା ରାଧାନାଥ ଯୁଗ ଓଡ଼ିଆ ସାହିତ୍ୟ ।

✻ ଓଡ଼ିଆ ଓ ନବ ସମ୍ବାଦ— ୪।୭।୧୮୯୩

# ଓଡ଼ିଆ ଭାଷା ଓ ସାହିତ୍ୟ

## ସଂବାଦ-ସନ୍ଦେଶ

### ଭାରତରେ ଇଂରେଜୀ ଶିକ୍ଷାର ପ୍ରସାର :

ଅନେକ ଶିକ୍ଷିତ ବ୍ୟକ୍ତିଙ୍କର ଧାରଣା ଯେ, ଇଂରେଜମାନଙ୍କ ରାଜ୍ୟାଧିକାର ସଙ୍ଗେ ସଙ୍ଗେ ସେମାନେ ଭାରତବର୍ଷରେ ଇଂରେଜୀ ଭାଷାର ପ୍ରବର୍ତ୍ତନ କରିଥିଲେ । ଇଂରେଜୀ ଭାଷା ପ୍ରଚଳନ କରିବାରେ ସେମାନଙ୍କର ସତେ ଯେପରି ଲକ୍ଷ୍ୟ ଥିଲା ଏ ଦେଶର ଲୋକଙ୍କୁ ବିଜାତୀୟ ଆଦର୍ଶରେ ଅନୁପ୍ରାଣିତ କରିବା ।

ପ୍ରକୃତ ପକ୍ଷେ ଇଂରେଜ ଶାସକଗଣ ପ୍ରଥମରୁ ଭାରତୀୟ ଭାଷାର ଉନ୍ନତି ପାଇଁ ମନଧ୍ୟାନ ପ୍ରଦାନ କରିଥିଲେ । ସଂସ୍କୃତ, ଆରବୀ ଏବଂ ପାର୍ସି ଭାଷାର ଶିକ୍ଷାଦାନ ପାଇଁ ଇଂରେଜ ଶାସକମାନଙ୍କ ଉଦ୍ୟମରେ ଦେଶର ବିଭିନ୍ନ ସ୍ଥାନରେ ଶିକ୍ଷାନୁଷ୍ଠାନମାନ ପ୍ରତିଷ୍ଠିତ ହୋଇଥିଲା ।

ତେବେ ୧୭୯୨ ଖ୍ରୀଷ୍ଟାବ୍ଦରେ ଚାର୍ଲସ ଗ୍ରାଣ୍ଟ ନାମରେ ଜଣେ ଇଂରେଜ କର୍ମଚାରୀ ଏକ ସରକାରୀ ପ୍ରବନ୍ଧରେ ଇଂରେଜୀ ଶିକ୍ଷା ପାଇଁ ପ୍ରଥମେ ଯୁକ୍ତି ଉପସ୍ଥାପନ କରିଥିଲେ । କିନ୍ତୁ ସେତେବେଳେ ତାଙ୍କର ପ୍ରସ୍ତାବ କାହାରି ସମର୍ଥନ ଲାଭ କରି ନଥିଲା । ଊନବିଂଶ ଶତାବ୍ଦୀରେ ଭାରତୀୟ ନବଜାଗରଣର ସର୍ବଶ୍ରେଷ୍ଠ ପ୍ରବକ୍ତା ରାଜା ରାମମୋହନ ରାୟ ଇଂରେଜୀ ଭାଷାର ଶିକ୍ଷାପାଇଁ ଦାବୀ ନ କରାଇଲା ପର୍ଯ୍ୟନ୍ତ ଇଂରେଜମାନେ ଏ କ୍ଷେତ୍ରରେ କୌଣସି ପଦକ୍ଷେପ ଗ୍ରହଣ କରି ନଥିଲେ । ରାଜା ରାମମୋହନ ୧୮୨୩ ଖ୍ରୀଷ୍ଟାବ୍ଦ ଡିସେମ୍ବର ଏଗାର ତାରିଖରେ ତତ୍କାଳୀନ ଇଂରେଜ ଶାସକ ଲର୍ଡ଼ ଆମହର୍ଷ୍ଟଙ୍କୁ ଏକ ପତ୍ରରେ ଦାବି କରାଇ ଲେଖିଥିଲେ ଯେ,

୧୮୧୩ ସାଲରେ ଇଷ୍ଟଇଣ୍ଡିଆ କମ୍ପାନୀ ଭାରତରେ ପ୍ରତିବର୍ଷ ଶିକ୍ଷା ପାଇଁ ଅନ୍ୟୂନ ଏକଲକ୍ଷ ଟଙ୍କା ଖର୍ଚ୍ଚ କରିବେ ବୋଲି ନିଷ୍ପତ୍ତି କରିବାରୁ କଲିକତାରେ ସଂସ୍କୃତ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠିତ ହୋଇଥିଲା । ସେତେବେଳେ ଭାରତର ଲୋକେ ଆଶା କରୁଥିଲେ ଯେ ଇଂରେଜ ସରକାର ଶିକ୍ଷା ପାଇଁ ଅଧିକ ଅର୍ଥ ବିନିଯୋଗ କରିବେ ଏବଂ ଏ ଦେଶରେ ଉନ୍ନତ ଧରଣର ପାଶ୍ଚାତ୍ୟ ଶିକ୍ଷା ପ୍ରଚଳନ କରାଯିବ । ପାଶ୍ଚାତ୍ୟ ଭୂଖଣ୍ଡର ସୁଶିକ୍ଷିତ ଶିକ୍ଷକଗଣ ଅଙ୍କ, ଦର୍ଶନ, ବିଜ୍ଞାନ ପ୍ରଭୃତି ଶିକ୍ଷା ପ୍ରଦାନ କରି ଏ ଦେଶର ଜନସାଧାରଣଙ୍କୁ ପାଶ୍ଚାତ୍ୟ ଜ୍ଞାନାଲୋକ ଦ୍ୱାରା ଉଦ୍ଭାସିତ କରିବେ ।

ରାମମୋହନଙ୍କ ପରି ଜଣେ ଶ୍ରେଷ୍ଠ ଭାରତୀୟଙ୍କ ଏପରି ଦାବୀକୁ ତତ୍କାଳୀନ ବିଶିଷ୍ଟ ଇଂରେଜ କର୍ମଚାରୀ ଲର୍ଡ଼ ମାକଲେ ସାହେବ ସମର୍ଥନ କରି ସରକାରଙ୍କ ନିକଟରେ ପ୍ରସ୍ତାବ କଲେ । ତେଣୁ ୧୮୩୫ ସାଲ ପରେ ଏ ଦେଶରେ ଇଂରେଜ ଶିକ୍ଷାର ମୂଳଦୁଆ ପ୍ରତିଷ୍ଠିତ ହୋଇ ପାରିଥିଲା । ମାକଲେ ସାହେବଙ୍କ ଇଂରେଜ ଶିକ୍ଷାର ପ୍ରଚଳନରେ ଦୁରଭିସନ୍ଧି ଥିଲା ବୋଲି ଅନେକ ଲୋକ ଅନୁମାନ କରନ୍ତି । ସେମାନେ ସାଧାରଣତଃ ମାକଲେ ସାହେବଙ୍କର ନିମ୍ନୋକ୍ତ ଉକ୍ତିଟି ଏହି ପ୍ରସଙ୍ଗରେ ଉଦ୍ଧାର କରିଥାଆନ୍ତି । ମାକଲେ ସାହେବ କହିଥିଲେ—

"We must at present do our best to form a class who may be interpreters between us and the millions whom we govern—a class of persons Indian in blood and colour, but English in taste, in opinion, in morals and in the intellect"

ଇଂରେଜୀ ଶିକ୍ଷାର ପ୍ରସାର ଯୋଗେ ଭାରତୀୟମାନଙ୍କ ମଧ୍ୟରେ ପାଶ୍ଚାତ୍ୟ ଆଦର୍ଶ, ରୁଚିବୋଧ ଏବଂ ନୈତିକତାକୁ ଆଦର କରୁଥିବା ଗୋଟିଏ ବିଳକ୍ଷଣ ଗୋଷ୍ଠୀ ତିଆରି ହେବେ, ଯେଉଁମାନେ କି ଇଉରୋପୀୟ ଶାସକଗଣ ଏବଂ ଭାରତୀୟ ଶାସିତଙ୍କ ମଧ୍ୟରେ ଯୋଗସୂତ୍ର ଭାବରେ କାର୍ଯ୍ୟ କରିପାରିବେ । ଏହି ଭାବକୁ ଅନେକେ କଦର୍ଥ୍ୟ କରି ଭାବନ୍ତି ଯେ, ମାକଲେ ସାହେବ ଏପରି ଦଳେ ଲୋକ ଗଢ଼ିବାକୁ ଚାହୁଁଥିଲେ, ଯେଉଁମାନେ କି ଆମ ସଂସ୍କୃତିକୁ

ଯାଙ୍କି ଏଠାରେ ବ୍ରିଟିଶ ସଂସ୍କୃତ ଓ ସ୍ୱାର୍ଥକୁ ପ୍ରତିଷ୍ଠା କରିବେ । ମାତ୍ର ମାକଲେ ସାହେବ ଆଶା କରିଥିଲେ ଯେ, ଏହି ନବ୍ୟ ଇଂରେଜ ଶିକ୍ଷିତ ବ୍ୟକ୍ତିଗଣ ଦେଶୀୟ ଭାଷା ଓ ସାହିତ୍ୟର ଉନ୍ନତି ବିଧାନରେ ଅଗ୍ରସର ହୋଇ ପାରିବେ । ସେ କହିଥିଲେ—

"To that class we may leave it to refine the vernacular dialects of the country to enrich those dialects with terms of science borrowed from the western nomenclature, and to render them by degrees fit vehicles for conveying knowledge to the great mass of the population."

ମାତ୍ର ଦୁଃଖର କଥା ଯେ, ମାକଲେ ସାହେବଙ୍କର ଏ ଆଶା ଚରିତାର୍ଥ ହୋଇ ପାରି ନ ଥିଲା । ଇଂରେଜ ଶିକ୍ଷିତ ଭାରତୀୟଗଣ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ଅନ୍ଧାନୁସରଣ କରି ଉଗ୍ର ସ୍ତାବକରେ ପରିଣତ ହେଲେ ଏବଂ ସେହିମାନେ ଦେଶୀୟ ଭାଷାକୁ ଅଧିକ ଘୃଣା କରିବାକୁ ଲାଗିଲେ ।

## ସମାଜରେ ଇଂରେଜ ଶିକ୍ଷାର ପ୍ରତିକ୍ରିୟା :

ଇଂରେଜ ଶିକ୍ଷାପ୍ରାପ୍ତ ଲୋକେ ପାଶ୍ଚାତ୍ୟ ବସ୍ତୁବାଦୀ ସଭ୍ୟତାର ପ୍ରଭାବରେ କ୍ରମଶଃ ଅଧିକ ବିଳାସପ୍ରିୟ ହୋଇ ପଡ଼ିଲେ । ଏ ଦେଶର ପ୍ରାଚୀନ ନୀତିମୟ ଆଦର୍ଶ ସେମାନଙ୍କ ନିକଟରେ ମୂଲ୍ୟହୀନ ମନେ ହୋଇଥିଲା । ସେ କାଳର ସାମାଜିକ ଅବସ୍ଥା ସମ୍ପର୍କରେ ଆଲୋଚନା କରି ଗୋଟିଏ ସାପ୍ତାହିକ "ନବଭାରତର ଔଦାସିନ୍ୟ" ଶୀର୍ଷକ ପ୍ରବନ୍ଧରେ ଲେଖିଥିଲେ, ନବ ଶିକ୍ଷିତ ଦଳର ଅନେକେ ଆସ୍ତିକ କିମ୍ବା ନାସ୍ତିକ, ଧାର୍ମିକ କିମ୍ବା ଅଧାର୍ମିକ କୌଣସି ଆଡ଼କୁ ନ ହୋଇ ଏ ଦୁହିଁଙ୍କର ମଧ୍ୟସ୍ଥଳରେ ଥାଇଁ କୌଣସି ପ୍ରକାରେ ନିଜ ଚରିତ୍ର ନିର୍ମଳ ରଖି ଦେଶର ହିତ ସାଧନ କରିବାକୁ ଇଚ୍ଛା କରନ୍ତି । କିନ୍ତୁ ଅତିଶୟ ପରିତାପର ବିଷୟ ଯେ, ସେମାନେ ନିରୀଶ୍ୱର ଭାବରେ ଚରିତ୍ର ରକ୍ଷା କରିବାକୁ ଯାଇଁ ବାରମ୍ବାର ପତିତ ହେଉଅଛନ୍ତି । ବାରମ୍ବାର ପାନ ଦୋଷ ଏବଂ ବ୍ୟଭିଚାର ପଙ୍କରେ

ବୃଦ୍ଧି ପାଉଅଛନ୍ତି । ତଥାପି ସେମାନଙ୍କର ଜ୍ଞାନୋଦ୍ରେକ ହେଉନାହିଁ । ସେମାନେ ବୁଝି ସୁଦ୍ଧା ବୁଝୁନାହାନ୍ତି ଯେ, ନିଶ୍ଚିତ ଭାବରେ ଚରିତ୍ର ରକ୍ଷା ହେବା ଅସମ୍ଭବ । ହୁଏତ ସ୍ୱର୍ଗ ଆଡ଼କୁ ଯିବାକୁ ହେବ, ନଚେତ୍ ନିଶ୍ଚୟ ନରକରେ ବୁଡ଼ି ମରିବାକୁ ହେବ । ମଧ୍ୟରେ ଆଉ ତୃତୀୟ ପଥ ନାହିଁ । ହେ ଊନବିଂଶ ଶତାବ୍ଦୀର ମୋହାନ୍ଧ ଯୁବକ ! ତୁମେ କି ମନେ କରିଅଛ ଯେ, ସବୁ ବିଷୟରେ ଉଦାସୀନ ଥାଇ ନିଜ ଚରିତ୍ର ରକ୍ଷଣରେ ସକ୍ଷମ ହେବ । *

କେବଳ ସେତିକି ନୁହେଁ, ଏହି ନବ୍ୟ ଶିକ୍ଷିତଗଣ ଏ ଦେଶର ପ୍ରାଚୀନ ପରମ୍ପରାରେ ପ୍ରତିଷ୍ଠିତ ଅନୁଷ୍ଠାନମାନଙ୍କ ପ୍ରତି ଅବଜ୍ଞା ପ୍ରକାଶ କଲେ । ଯାହା ଥିଲା ଏକାନ୍ତ ଭାବରେ ଧର୍ମାନୁମୋଦିତ ଏବଂ ପବିତ୍ର ଅନୁଷ୍ଠାନ, ସେଠାରେ ଏହି ଶୁଭ ଉତ୍ସବମାନଙ୍କରେ ଇନ୍ଦ୍ରିୟ ବିଳାସପ୍ରିୟତା ଅଧିକ ପରିମାଣରେ ଲକ୍ଷ୍ୟ କରାଗଲା । ତଥାକଥିତ ବିଜ୍ଞ ବ୍ୟକ୍ତିମାନେ ଏହି ପ୍ରକାର ଦୋଷରୁ ମୁକ୍ତ ନଥିଲେ । ବରଂ ସେମାନେ ଏ କ୍ଷେତ୍ରରେ ନେତୃତ୍ୱ ପ୍ରଦାନ କରୁଥିଲେ । ଶୁଭଦିନମାନଙ୍କରେ ମଜଲିସମାନଙ୍କର ଆୟୋଜନ ହେଉଥିଲା ଏବଂ ସେଠାରେ ବାରାଙ୍ଗନାମାନେ ଉପସ୍ଥିତ ରହି ଆନନ୍ଦ ଦାନ କରୁଥିଲେ । ଏହି ବିଳାସପ୍ରିୟତା ସଂକ୍ରାମକ ରୋଗପରି ବ୍ୟାପ୍ତ ହେବାକୁ ଲାଗିଲା । ୨

ସେ କାଳରେ ଇଂରେଜୀ ଶିକ୍ଷା ପାଇଁ ଏକମାତ୍ର ଉଲ୍ଲେଖଯୋଗ୍ୟ ଅନୁଷ୍ଠାନ ଥିଲା କଲିଜିଏଟ୍ ସ୍କୁଲ । ଏହିଠାରେ ରେଭେନ୍ସା କଲେଜ ମଧ୍ୟ ଆରମ୍ଭ ହୋଇଥିଲା । ମାତ୍ର ଦୁଃଖର କଥା ଯେ, ଏହି ସ୍କୁଲର ଉଚ୍ଚଶ୍ରେଣୀର ଛାତ୍ରମାନେ ନାନା ଅସତ୍‌କାର୍ଯ୍ୟରେ ଲିପ୍ତ ରହିଥିଲେ । ସେମାନେ ସୁରାପାନ, ବ୍ୟଭିଚାର ଦୋଷରେ ଲିପ୍ତ ହୋଇ ନାନାବିଧ ରୋଗଗ୍ରସ୍ତ ହୋଇ ପଡ଼ୁଛନ୍ତି ବୋଲି ସମ୍ବାଦପତ୍ରରେ ଦୁଃଖ ପ୍ରକାଶ କରାଯାଉଥିଲା । ଏହି ଅନୁଷ୍ଠାନରେ କୁପଥଗାମୀ ହୋଇପଡ଼ୁଥିବାରୁ ଅନେକ ଛାତ୍ର କର୍ତ୍ତୃପକ୍ଷ ଦୃଢ଼ କାର୍ଯ୍ୟାନୁଷ୍ଠାନ କରନ୍ତୁ ବୋଲି ଦାବୀ ହେଉଥିଲା । ୩

---

* ନବ ସମ୍ବାଦ — ୨୩।୧।୧୮୮୭

୨ ନବ ସମ୍ବାଦ — ୧୭।୩।୧୮୮୭

୩ ନବ ସମ୍ବାଦ — ୩୧।୩।୧୮୮୭

ଇଂରେଜୀ ଶିକ୍ଷିତ ସମାଜର ଅନୁକରଣ-ପ୍ରିୟତା ଏବଂ ଅନୈତିକ ଆଚରଣ ସମ୍ପର୍କରେ ସମ୍ବାଦପତ୍ରମାନଙ୍କରେ ଆଲୋଚନା ଦେଖିବାକୁ ମିଳେ । ଶିକ୍ଷିତ ଲୋକେ ସୁରାପାନ ଦୋଷରେ ଲିପ୍ତ ରହି ନାନା କୁତ୍ସିତ କାର୍ଯ୍ୟ କରିବାକୁ ଲଜ୍ଜାବୋଧ କରୁ ନଥିଲେ । ପୁନଶ୍ଚ ଶିକ୍ଷିତମାନଙ୍କ ମଧ୍ୟରୁ କେହି କେହି ଏପରି ସାହସୀ ଥିଲେ ଯେ, ସେମାନେ ବେଶ୍ୟାଳୟକୁ ଯିବା ସତ୍‌କାର୍ଯ୍ୟ ବୋଲି ପ୍ରମାଣ କରୁଥିଲେ । ଅନୁକରଣ ପ୍ରବୃତ୍ତି ଦ୍ୱାରା ଅଧିକାଂଶ ଯୁବକ ଏବଂ ଅପ୍ରାପ୍ତବୟସ୍କ ଛାତ୍ର ଆକ୍ରାନ୍ତ ହେଉଥିଲେ । ତେଣୁ ନାନାଭାବରେ ପାଶ୍ଚାତ୍ୟ ଦେଶର ଫେସନ ଏ ଦେଶରେ ଆଦର ଲାଭ କରିବାକୁ ଲାଗିଲା । ⁂

ଏହି ଆଲୋଚନାରୁ ଏପରି ଅନୁମାନ କରିବା ଠିକ୍ ନୁହେ ଯେ, ସେମାନେ ଇଂରେଜୀ ଶିକ୍ଷା ସମ୍ପର୍କରେ ଆଗ୍ରହୀ ନଥିଲେ । ବରଂ ଇଂରେଜୀ ଶିକ୍ଷା ଏ ଦେଶରେ ପ୍ରଚଳିତ ହେଉ, ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରେ ଏ ଦେଶରେ ନବଜାଗରଣ ସୃଷ୍ଟି ହେଉ, ଏହା ଥିଲା ସେମାନଙ୍କର ଆନ୍ତରିକ କାମନା । ବ୍ରାହ୍ମଣମାନେ ସାଧାରଣତଃ ଭାରତୀୟ ସଂସ୍କାରର ପ୍ରଧାନ ପୃଷ୍ଠପୋଷକ ଥିଲେ । ତେଣୁ ଇଂରେଜୀ ଶିକ୍ଷାର ପ୍ରବର୍ତ୍ତନ କାଳରେ ସେମାନେ ତାହାକୁ ସ୍ୱାଗତ ନ କରିବା ସ୍ୱାଭାବିକ । କିନ୍ତୁ ଇଂରେଜୀ ଶିକ୍ଷା ପ୍ରାପ୍ତ ନ ହେଲେ ଦେଶରେ ନୂତନ ସଭ୍ୟତା ସହିତ ସମତାଳରେ ଗତିକରି ହେବ ନାହିଁ ବୋଲି ଉପଲବ୍ଧି କରାଯାଉଥିଲା । ତେବେ ଏହି ରକ୍ଷଣଶୀଳ ମନୋଭାବ ଯୋଗୁ ୧୮୮୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଜଣେ ହେଲେ ବ୍ରାହ୍ମଣ ପିଲା ଓଡ଼ିଶାରେ ଗ୍ରାଜୁଏଟ ହେବା ସମ୍ଭବ ହୋଇନଥିଲା । ସେହି ବର୍ଷ ପୁରୀର ଦିବ୍ୟସିଂହ ମିଶ୍ର ବି. ଏ. ପରୀକ୍ଷାରେ କୃତକାର୍ଯ୍ୟ ହୋଇଥିବାରୁ 'ନବସମ୍ବାଦ' ଅତ୍ୟନ୍ତ ଆନନ୍ଦ ପ୍ରକାଶ କରିଅଛନ୍ତି ଏବଂ ଉତ୍କଳ ବ୍ରାହ୍ମଣ ସମାଜ ଦିବ୍ୟସିଂହ ମିଶ୍ରଙ୍କୁ ଅନୁକରଣ କରି ଇଂରେଜୀ ଶିକ୍ଷା ନିମିତ୍ତ ପ୍ରୟାସୀ ହେଉନ୍ତୁ ବୋଲି କାମନା କରିଥିଲେ । ୪

---

⁂ ନବ ସମ୍ବାଦ—୨୧।୪।୧୮୮୭
୪ ନବ ସମ୍ବାଦ—୨।୬।୧୮୮୭

## ଓଡ଼ିଆ ଭାଷା ଓ ସାହିତ୍ୟର ଆଦର୍ଶ :

ଊନବିଂଶ ଶତାବ୍ଦୀକୁ ଓଡ଼ିଆ ସାହିତ୍ୟରେ ଅନ୍ଧକାର ଯୁଗ ବୋଲି କେହି କେହି ନାମିତ କରିଥାଆନ୍ତି । ଅନ୍ତତଃ ଊନବିଂଶ ଶତାବ୍ଦୀର ନଅଙ୍କ ଦୁର୍ଭିକ୍ଷ (୧୮୬୬) ପର୍ଯ୍ୟନ୍ତ ଓଡ଼ିଶାର ସାମାଜିକ ଜୀବନରେ ଆଦୌ ଜାଗରଣ ସମ୍ଭବ ହୋଇ ନଥିଲା । ଓଡ଼ିଶାର ସ୍କୁଲ କଲେଜରେ ବଙ୍ଗଳାଭାଷାର ପ୍ରଚଳନ ପାଇଁ ପ୍ରବଳ ଉଦ୍ୟମ ହୋଇଥିଲେ ହେଁ ଓଡ଼ିଆମାନଙ୍କର ଆନ୍ଦୋଳନ ଫଳରେ ତାହା ବିଫଳ ହୋଇଯାଇଥିଲା । କିନ୍ତୁ ଓଡ଼ିଆ ଭାଷାରେ ଉତ୍ତମ ପାଠ୍ୟପୁସ୍ତକର ଅଭାବ ଥିବାରୁ ନାନା ବିଶୃଙ୍ଖଳା ଘଟୁଥିଲା ।

ନଅଙ୍କ ଦୁର୍ଭିକ୍ଷ ସମୟରେ ଉତ୍କଳ ପ୍ରସିଦ୍ଧ 'ଦୀପିକା' ସାପ୍ତାହିକ ସମ୍ବାଦପତ୍ର ଜନ୍ମଲାଭ କରିଥିଲା । ପରେ ପରେ 'ଉତ୍କଳ ବାହିକା', 'ସଂସ୍କାରକ', 'ନବସମ୍ବାଦ'; 'ଓଡ଼ିଆ ଓ ନବସମ୍ବାଦ' ପ୍ରଭୃତି ପତ୍ରିକା ଆତ୍ମପ୍ରକାଶ କଲେ । ଏହି ସମୟରେ କଟକରୁ 'ସାମ୍ୟବାର୍ତ୍ତା' ନାମରେ ଏକ ମାସିକ ସାହିତ୍ୟ ପତ୍ର ମଧ୍ୟ ପ୍ରକାଶିତ ହେଲା । ଏହି ପତ୍ରିକାଗୁଡ଼ିକ ସମ୍ବାଦ ପରିବେଷଣ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ଦିଗରେ ଲେଖାମାନ ପ୍ରକାଶ କରିଥିଲେ ଏବଂ ପ୍ରକାଶିତ ପୁସ୍ତକମାନଙ୍କର ଆଲୋଚନାକୁ ସ୍ଥାନ ଦେଉଥିଲେ । ଓଡ଼ିଆ ଭାଷାରେ ମୁଦ୍ରିତ ପୁସ୍ତକର ସଂଖ୍ୟା ଅତ୍ୟନ୍ତ ଅବହେଳିତ ଥିଲା ।

୧୮୮୭ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସର ୨୩ ତାରିଖ ଦିନ 'ନବସମ୍ବାଦ' ନାମରେ ଏକ ସାପ୍ତାହିକ ପତ୍ର ପ୍ରକାଶିତ ହୋଇଥିଲା । ମାତ୍ର ଗୋଟିଏ ବର୍ଷ ପ୍ରଚ୍ଛରିତ ହେଲାପରେ 'ନବସମ୍ବାଦ' ଆତ୍ମଗୋପନ କରି "ଓଡ଼ିଆ ଓ ନବସମ୍ବାଦ'' ପତ୍ରିକା ସହିତ ନିଜକୁ ମିଶାଇ ଦେଲା । ଏହି ବର୍ଷକ ମଧ୍ୟରେ ଯେଉଁ କେତେଖଣ୍ଡି ପୁସ୍ତକର ପ୍ରାପ୍ତି ସ୍ୱୀକାର ବା ଆଲୋଚନା କରାଯାଇଛି, ଉଲ୍ଲେଖ କଲେ ସେ କାଳରେ ଓଡ଼ିଆ ସାହିତ୍ୟର ବିକାଶ ସମ୍ପର୍କରେ ଏକ ଧାରଣା କରାଯାଇ ପାରିବ । ୧୩।୨।୧୮୮୭ ସଂଖ୍ୟାରେ ନବସମ୍ବାଦ ଜଗନ୍ମୋହନ ଲାଲଙ୍କ 'ସତୀ' ନାଟକର ଆଲୋଚନା କରିଅଛନ୍ତି । ଏଥିରୁ ଜଣାଯାଉ ଅଛି ଯେ, କିଛିକାଳ ପୂର୍ବରୁ ତାଙ୍କର "ଭ୍ରମଭଞ୍ଜନ'' ଏବଂ "ବାବାଜି'' ନାଟକ ପ୍ରକାଶିତ ହୋଇ ଯାଇଅଛି । ୩୧।୩।୧୮୮୭ ତାରିଖରେ

ମାଇନର ଓ ଭର୍ଣ୍ଣାକୁଲର ପାଠ୍ୟପୁସ୍ତକ ଶିରୋନାମାରେ ଆଲୋଚନା କରି 'ନବସମ୍ବାଦ' ପତ୍ରିକା 'କବିତାବଳୀ' ଓ 'ପ୍ରବନ୍ଧାବଳୀ' ପୁସ୍ତକଦ୍ୱୟର ସମାଲୋଚନା କରିଅଛନ୍ତି । ପୁନଶ୍ଚ ହରିବାବୁଙ୍କ "ଜଡ଼ ବିଜ୍ଞାନ", ଷ୍ଟୁୟାର୍ଟ ସାହେବଙ୍କ କୃତ "ପଦାର୍ଥ ବିଜ୍ଞାନ" ପୁସ୍ତକ ରଚନା ସମ୍ପର୍କରେ ମତ ବ୍ୟକ୍ତ କରାଯାଇଅଛି ।

୫।୭।୧୮୮୭ ସଂଖ୍ୟା ନବସମ୍ବାଦରୁ ଜଣାଯାଏ ଯେ, 'କାକୁକ୍ତି କଳିକା' ନାମକ ଏକ ପୁସ୍ତକ ପ୍ରକାଶିତ ହୋଇଅଛି । ଏହାର ଲେଖକ ହେଉଛନ୍ତି ସଦାଶିବ ପ୍ରହରାଜ । ପୁସ୍ତକ ଖଣ୍ଡି ପଦ୍ୟରେ ଲିଖିତ ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ କଥା ଏବଂ ସୂତଲ ପ୍ରେସରେ ମୁଦ୍ରିତ ହୋଇଥିବା ଜଣାଯାଏ । ଡାକ୍ତର ରାମକୃଷ୍ଣ ସାହୁଙ୍କ ଲିଖିତ "ସରଳ ଶରୀରରକ୍ଷା" ନାମକ ପୁସ୍ତକ ବିଜ୍ଞାପିତ ହୋଇଅଛି । ଏହା ଉଚ୍ଚ ଓ ନିମ୍ନ ପ୍ରାଇମେରୀ ଉଦ୍ଦେଶ୍ୟରେ ଲିଖିତ ଏକ ପାଠ୍ୟପୁସ୍ତକ ମାତ୍ର । ସେହିପରି ବାବୁ ଶ୍ରୀ ଲଳିତ ମୋହନ ଚକ୍ରବର୍ତ୍ତୀଙ୍କ କର୍ତ୍ତୃକ ପ୍ରଣୀତ "ଉତ୍କଳଭୂମି" ପୁସ୍ତକର ଆଲୋଚନା ୨।୭।୧୮୮୭ ନବ ସମ୍ବାଦରେ ମୁଦ୍ରିତ ହୋଇଅଛି । ଏହି ପୁସ୍ତକର ଭାବ ବାଇବେଲରୁ ଗୃହୀତ ଏବଂ ମତଧର୍ମସମ୍ବଳିତ । ପୁନଶ୍ଚ ଜୁଲାଇ ମାସରେ 'ନବସମ୍ବାଦ'ରେ (୨୧।୭।୧୮୮୭) 'ଖଳକଣ୍ଟକ' ନାମକ ଏକ ପୁସ୍ତକର ଆଲୋଚନା ଦେଖିବାକୁ ମିଳେ । ଏହି ପୁସ୍ତକର ଲେଖକ ହେଉଛନ୍ତି ବୈକୁଣ୍ଠ ମହାପାତ୍ର । ଏଥିରେ ଅନେକଗୁଡ଼ିଏ ଧର୍ମ ବିଷୟକ ସଙ୍ଗୀତ ଏବଂ ଶରୀରଭେଦ ବିଷୟକ କେତେକ ସଙ୍ଗୀତ ରହିଅଛି । ତେବେ ଏହି ବର୍ଷକ ମଧ୍ୟରେ ଭାଷାଟୀକା ସହିତ ଦେବୀ ମହାତ୍ମ୍ୟ, ସଟୀସାର ଭାଗବତ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ଅଳଙ୍କାର ଚନ୍ଦ୍ରିକା, ପରାସର ସଂହିତା, ଅବନା ରସତରଙ୍ଗ, 'ଝାଡ଼ାକୋଇ ରୋଗର ଦେଶୀ ଓ ଡାକ୍ତରୀ ଚିକିତ୍ସା', 'ନନ୍ଦକେଶ୍ୱରୀ' ଓ 'ଚନ୍ଦ୍ରଭାଗା' ପ୍ରଭୃତି ସାମାନ୍ୟ କେତେଖଣ୍ଡି ପୁସ୍ତକ ପ୍ରକାଶିତ ହୋଇଥିଲା । ଗୋଟିଏ ସାହିତ୍ୟର ବର୍ଦ୍ଧିଷ୍ଣୁ ଆତ୍ମାର ପରିଚୟ ପାଇଁ ଏହା ଯେ ଅତ୍ୟନ୍ତ ନୈରାଶ୍ୟଜନକ ଅବସ୍ଥା ଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ ।

## ଓଡ଼ିଆ ଭାଷାର ମାଧ୍ୟମ :

ଏହି ସମୟରେ କଲିକତା ବିଶ୍ୱବିଦ୍ୟାଳୟର ଅନେକ ଛାତ୍ର ସଂସ୍କୃତ ଭାଷା ପରିବର୍ତ୍ତେ ମାତୃଭାଷା ବଙ୍ଗଳାରେ ପରୀକ୍ଷା ଦେବା ପାଇଁ ଦାବୀ

କରିଥିଲେ । ନବ ସମ୍ବାଦ ଏହି ଘଟଣାରେ ଅତ୍ୟନ୍ତ ଉତ୍ସାହିତ ହୋଇ ଓଡ଼ିଆ ଭାଷୀ ଅଞ୍ଚଳରେ ଓଡ଼ିଆ ଭାଷା 'ପରୀକ୍ଷାର ମାଧ୍ୟମ ହେଉ' ବୋଲି ଦାବୀ କରିଥିଲେ । ※ ଦୁଃଖର କଥା ଯେ ବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଆ ଭାଷାର ମାଧ୍ୟମ ପାଇଁ ଦାବୀ ହେଲାବେଳେ ଅନେକ ଶିକ୍ଷିତ ଓ ସମ୍ଭ୍ରାନ୍ତ ଓଡ଼ିଆ ଏହି ପ୍ରସ୍ତାବକୁ ସୁସ୍ଥ ମନରେ ସ୍ୱାଗତ କରି ପାରିନାହାନ୍ତି । ଏହାର ଅନ୍ତରାଳରେ ପରାଧୀନ ଅମଳର ହୀନମନ୍ୟତା କାର୍ଯ୍ୟକାରୀ ହେଉଛି ବୋଲି ସେମାନେ ଅନୁଭବ କରିପାରୁ ନଥିବା ଦୁଃଖର କଥା ।

ଓଡ଼ିଆ ଭାଷାର ବିକାଶ ପାଇଁ ବ୍ୟାକୁଳତା ପ୍ରଦର୍ଶନ କଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଓଡ଼ିଆ ଭାଷା ସମ୍ପର୍କରେ ତତ୍କାଳୀନ ବିଖ୍ୟାତ ସାପ୍ତାହିକ "ଓଡ଼ିଆ ଓ ନବ ସମ୍ବାଦ" ଏକ ବିଶ୍ଳେଷଣାତ୍ମକ ଅଗ୍ରଲେଖ ପ୍ରକାଶ କରିଥିଲେ । ସେ କହିଥିଲେ—ଯେବେ ଉକ୍ତ ପ୍ରଦେଶମାନଙ୍କରେ ଓଡ଼ିଆ ଭାଷାର ଉନ୍ନତି ପାଇଁ କୌଣସି ପ୍ରକାର ଉପାୟ ଅବଲମ୍ବିତ ନହୁଏ, ତାହାହେଲେ କିଛି ଦିନରେ ସେହି ସବୁ ସ୍ଥାନରୁ ଯେ ଓଡ଼ିଆ ଭାଷା ଏକାବେଳକେ ଲୋପ ପାଇଯିବ, ତାହା ସୂକ୍ଷ୍ମଦର୍ଶୀ ବ୍ୟକ୍ତି ମାତ୍ରକେଇ ବୁଝି ପାରୁଥିବେ । ଏକା ସେ ପ୍ରଦେଶ କାହିଁକି ? ବର୍ତ୍ତମାନ ଓଡ଼ିଶା ନାମ ପ୍ରାପ୍ତ ପ୍ରଦେଶରେ ସୁଦ୍ଧା ଓଡ଼ିଆ ଭାଷାର ଅବସ୍ଥା କି ଶୋଚନୀୟ ନୁହେଁ ? ଓଡ଼ିଆ ଭାଷାରେ ବର୍ତ୍ତମାନ ରୁଚି ସହିତ କେତେଖଣ୍ଡ ସାହିତ୍ୟ ଅଛି ? କେତେଖଣ୍ଡ ପୃଥ୍ବୀବିଷୟକ ଇତିହାସ ମିଳେ ? ଉପନ୍ୟାସ ଓ ନାଟକର ନାମରେ ଖଡ଼ ପଡ଼ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ !! ବିଜ୍ଞାନ ବା ଦର୍ଶନ ବ୍ୟବସ୍ଥା ବା ଧର୍ମଶାସ୍ତ୍ର, ଶିଳ୍ପ ବା ଅର୍ଥ ବିଦ୍ୟା, ଏ ସବୁର ତ ଗନ୍ଧ ସୁଦ୍ଧା ନାହିଁ । ଓଡ଼ିଆ ଭାଷାରେ ଲୋକ ଚରିତ ଦୁର୍ଲଭ, ସଙ୍ଗୀତ ବା ତୌର୍ଯ୍ୟତ୍ରିକ ସମ୍ବନ୍ଧୀୟ ପୁସ୍ତକ ଦୁଷ୍ପ୍ରାପ୍ୟ । ଓଡ଼ିଆ ଭାଷାରେ ଖଣ୍ଡେ ଅଭିଧାନ ନାହିଁ; ଜ୍ୟୋତିଷ ଗ୍ରନ୍ଥ ନାହିଁ, ବୀଜଗଣିତ ନାହିଁ, ତ୍ରିକୋଣମିତି ନାହିଁ ବା ଜ୍ୟାମିତି ନାହିଁ । ସଂକ୍ଷେପରେ କହିବାକୁ ଗଲେ ଓଡ଼ିଆ ଭାଷାରେ ଆଜକାଲି ଶିକ୍ଷିତ ବା ଶିକ୍ଷାର୍ଥୀଙ୍କର ସୁପାଠ୍ୟ ଖଣ୍ଡିଏ ସୁଦ୍ଧା ନାହିଁ । ନିମ୍ନ ଓ ଉଚ୍ଚ ପ୍ରାଇମେରୀ ପାଠଶାଳାର ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ସଂଖ୍ୟା ବୃଦ୍ଧି ହୋଇଅଛି ସତ; ମାତ୍ର

※ ନବ ସମ୍ବାଦ—୧୫।୨।୧୮୮୭

ଓଡ଼ିଆ ଭାଷାକୁ ସ୍ଥାୟୀ କରିପାରିବ, ଏପରି କୌଣସି ପୁସ୍ତକ ଆଜଯାଏ ହୋଇ ନାହିଁ, ହେଉ ନାହିଁ ଏବଂ ହେବାର ଆଶା ଦେଖାଯାଉ ନାହିଁ । ଏହାଠାରୁ ବଳି ଶୋଚନୀୟ ଅବସ୍ଥା କଣ ହୋଇ ପାରେ । *

ସାଂପ୍ରତିକ ଓଡ଼ିଆ ଭାଷା ଓ ସାହିତ୍ୟ ସମୃଦ୍ଧ ହେଲେହେଁ ଏବେ ସୁଦ୍ଧା ବହୁ ବିଭାଗରେ ଅଭାବ ପୂରଣ ହୋଇ ପାରି ନାହିଁ । ଯେଉଁ ସମୟର କଥା ଆଲୋଚନା କରାଯାଉଛି, ସେତେବେଳେ ଓଡ଼ିଆ ଭାଷା ଦାରୁଣ ସଙ୍କଟର ସମ୍ମୁଖୀନ ହୋଇଥିଲା । ଓଡ଼ିଆ ଭାଷାକୁ ଲୋପ କରି ଅନ୍ୟ ଭାଷାର ପ୍ରଚଳନ ପାଇଁ ଚକ୍ରାନ୍ତ ଏକ ପ୍ରକାର କାନାକାଣି ହୋଇ ଯାଉଥିଲା । ଓଡ଼ିଶାରେ ଓଡ଼ିଆ ଖବର କାଗଜ ଏବଂ ସାମୟିକ ପତ୍ର ଅପେକ୍ଷା ବଙ୍ଗଳା ଖବର କାଗଜ ଏବଂ ମାସିକ ପତ୍ରର ଅଧିକ କାଟତି ହେଉଥିଲା । ଏହା ଓଡ଼ିଆ ଭାଷା ଓ ସାହିତ୍ୟ ପକ୍ଷରେ ଶୁଭ ଖବର ନୁହେଁ ବୋଲି ପତ୍ର ପତ୍ରିକାରେ ଆଲୋଚନା କରାଯାଇଛି । ପୁନଶ୍ଚ ଆତ୍ମସମୀକ୍ଷା କରି ସେମାନେ ମତ ବ୍ୟକ୍ତ କରିଛନ୍ତି ଯେ, ସମ୍ଭବତଃ ଓଡ଼ିଆ ଭାଷାରେ ପ୍ରକାଶିତ କାଗଜରେ ଭଲ ପ୍ରବନ୍ଧ ପ୍ରକାଶିତ ହେଉ ନାହିଁ; ଅଥବା ଓଡ଼ିଆରେ ଭଲ ଲେଖକ ନାହାନ୍ତି । ୨

ଏ ଯୁଗର ଓଡ଼ିଆ ସମ୍ବାଦପତ୍ର ଏବଂ ତାର ପାଠକମାନଙ୍କ ସମ୍ପର୍କରେ ତୁଳନାତ୍ମକ ବିଚାର ପାଇଁ ଏହା ମୂଲ୍ୟବାନ ଉପାଦାନ ଯୋଗାଇ ଦିଏ । ତେବେ ଏତେ ମାନସିକ ଦାରିଦ୍ର୍ୟ ମଧ୍ୟରେ ସେକାଳରେ ଓଡ଼ିଆ ଭାଷା ଓ ସାହିତ୍ୟର ମୌଳିକତା ଅକ୍ଷୁଣ୍ଣ ରଖିବାପାଇଁ ଆନ୍ଦୋଳନ କରାଯାଉଥିଲା । ଅନେକ ଲେଖକ ସଂସ୍କୃତ, ଇଂରାଜୀ ଓ ପ୍ରାଚୀନ ଓଡ଼ିଆ ସାହିତ୍ୟ ନ ଜାଣି ବଙ୍ଗଳା ପଢ଼ି ବଙ୍ଗଳାରେ ଚିନ୍ତା କରି ଓଡ଼ିଆରେ ଲେଖୁଛନ୍ତି ବୋଲି ଅଭିଯୋଗ କରାଯାଉଥିଲା । ଏ ଯୁଗର ସାହିତ୍ୟରେ ଏହି ହୀନ ଅନୁକରଣ ପ୍ରବୃତ୍ତିର ସୀମା ନାହିଁ ।

## ଓଡ଼ିଆଙ୍କ ମୁହଁରେ ଅଣ-ଓଡ଼ିଆ ଭାଷା :

ଆଧୁନିକ ଶିକ୍ଷିତ ଲୋକେ ଓଡ଼ିଆ ଭାଷାରେ କହିବା ପାଇଁ ଗୌରବ ବୋଧ କରନ୍ତି ନାହିଁ । ଇଂରେଜୀ ଭାଷାରେ କହି ଲେଖି ପାରିଲେ ଗୌରବ

* ଓଡ଼ିଆ ଓ ନବ ସମ୍ବାଦ—୪।୪।୧୮୮୮
୨ ଓଡ଼ିଆ ଓ ନବ ସମ୍ବାଦ—୧।୫।୧୮୮୮

ଅର୍ଜନ କରି ସେମାନେ ବାହାବା ନେଅନ୍ତି । ଘରୋଇ ଆଳାପ ଆଲୋଚନା, ଚିଠି, ନିମନ୍ତ୍ରଣପତ୍ରରେ ସୁଦ୍ଧା ଇଂରେଜୀ ଭାଷାର ବ୍ୟବହାର କରାଯାଉଛି । ଗୋଟିଏ ସ୍ୱାଧୀନ ଜାତିର ଏପରି ଗ୍ଲାନିକର ମନୋଭାବ କେବେ ଯିବ କେଜାଣି !! ମାତ୍ର ବିଗତ ଶତାବ୍ଦୀରେ ଓଡ଼ିଆ ଭାଷାର ବ୍ୟଭିଚାର ନ ହେଉ ବୋଲି ଅତ୍ୟନ୍ତ ସତର୍କତା ଅବଲମ୍ବନ କରାଯାଇଥିଲା । ଭାଷା-ଜନନୀ ଶୁଦ୍ଧ ଓ ପବିତ୍ର ନ ରହିଲେ ତାର ସନ୍ତାନମାନେ ସମୃଦ୍ଧ ହୋଇପାରିବେ ନାହିଁ ବୋଲି ସେମାନେ ଅନୁଭବ କରୁଥିଲେ । ସେ କାଳରେ 'ଦର୍ପଣ' ନାମରେ ଏକ ମାସିକ ସାହିତ୍ୟ-ପତ୍ରିକା ପ୍ରକାଶିତ ହେଉଥିଲା । ଏହି ପତ୍ରିକାର ଭାଷା ବଙ୍ଗଳା-ପ୍ରଭାବିତ ହୋଇ ଯାଉଥିବାରୁ ଅନ୍ୟ ଏକ ସାହିତ୍ୟ ମାସିକ 'ଉତ୍କଳ ମଧୁପ' ୨୭।୭।୭୮ ଓ ୧୧।୭।୭୮ ତାରିଖରେ ପ୍ରକାଶିତ ଦୁଇଟି ସଂଖ୍ୟାରେ ଧାରାବାହିକ ଆଲୋଚନା କରି ଭ୍ରମ ପ୍ରଦର୍ଶନ କରିଥିଲେ । ପୁନଶ୍ଚ ବାଲେଶ୍ୱରର ଶିକ୍ଷିତ ଓଡ଼ିଆ ଯୁବକ କଥୋପକଥନ ସମୟରେ ବଙ୍ଗଳା ଶବ୍ଦ ମିଶାଇ କଥା କହୁଥିବାରୁ 'ଉତ୍କଳ ମଧୁପ' ଭୟଙ୍କର ସମାଲୋଚନା କରିଥିଲେ ।

## ଜଣେ ଇଂରେଜ ଶାସକଙ୍କର ଚେତାବନୀ :

ବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ଭାରତରେ ବ୍ରିଟିଶ ରାଜପ୍ରତିନିଧି ଲର୍ଡକର୍ଜନ ଭାରତୀୟ ଭାଷା ସମ୍ପର୍କରେ ଯେଉଁ ମତ ବ୍ୟକ୍ତ କରିଥିଲେ, ତାହା ଏ ଯୁଗର ଇଂରେଜୀ ପଣ୍ଡିତ ଭାରତୀୟମାନେ ଅବଧାରଣ କରିବା ଆବଶ୍ୟକ ।

ସିମଳା ସହରରେ ଭାରତର ମୁଖ୍ୟ ଶିକ୍ଷା କର୍ମଚାରୀମାନଙ୍କୁ ଯେଉଁ ଭାଷଣ ପ୍ରଦାନ କରିଥିଲେ, ତାହାର କେତେକାଂଶ ଶ୍ରୀ କୃଷ୍ଣପ୍ରସାଦ ଚୌଧୁରୀଙ୍କ ଦ୍ୱାରା 'ଭାରତୀୟ ଶିକ୍ଷା ସଂସ୍କାର' ଶିରୋନାମାରେ ଉତ୍କଳ-ସାହିତ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା । ପ୍ରସଙ୍ଗକ୍ରମେ ତହିଁର କେତେକାଂଶ ଏଠାରେ ପ୍ରଦତ୍ତ ହେଲା ।

ଯଦି ଇଂରେଜୀ ଶିକ୍ଷା କେବଳ କିରାଣୀ ତିଆରି କରୁଥାଏ, ତାହା ଦୁଃଖ କଥା ହେବ ବୋଲି କର୍ଜନ ମତପ୍ରକାଶ କରିଥିଲେ । ଇଂରେଜୀ

ପାଠ ପଢ଼ି ଭାରତୀୟଗଣ କେବଳ ଗୃହକର୍ମ ଧନ୍ଦାରେ ପ୍ରସ୍ତୁତ ହେଉଥିବା ଦେଖି ସେ କହିଥିଲେ—"It is of no use to turn out respectable clerks, or munsifs, or vokils, if this is done at the expenses of the intellect of the nation."

ଇଂରେଜୀ ଶିକ୍ଷା, ଶାସନ ଏବଂ ସଭ୍ୟତାର ସର୍ବଶକ୍ତିମାନ ପ୍ରବକ୍ତା ଲର୍ଡ କର୍ଜନ ଅତ୍ୟନ୍ତ ବଚନଜ୍ଞ ହୋଇ କହିଥିଲେ ଯେ, ଏ ଦେଶର ଲୋକେ ଇଂରେଜୀ ଶିକ୍ଷା କରିବା ପାଇଁ ଅତ୍ୟନ୍ତ ବ୍ୟାକୁଳ । ଦେଶୀୟ ଭାଷାମାନଙ୍କ ଉପରେ ସେମାନଙ୍କର ତେତେ ଆସ୍ଥା ନାହିଁ । ସେହି ହେତୁରୁ ଦେଶୀୟ ଭାଷାର ଉନ୍ନତି ହୋଇପାରୁ ନାହିଁ । ଯଦ୍ୟପି ରାଜକୋଷର ଅବସ୍ଥା ସ୍ୱଚ୍ଛଳ ହୋଇଥାଆନ୍ତା, ତାହେଲେ ଦେଶୀୟ ଭାଷାମାନଙ୍କର ଅନେକ ଉନ୍ନତି ସାଧନ କରିପାରନ୍ତେ । ବିଶେଷ କରି ଦେଶୀୟ ଭାଷାମାନଙ୍କ ସମ୍ପର୍କରେ ସେ କହିଥିଲେ—

"...the vernaculars are living languages of this great continent. English is a vehicle of learning and of advancement to a small minority, but for the vast bulk it is a foreign tongue, which they do not speak and rarely hear. If the vernaculars contained no literary models no classics. I might not be so willing to recommend them but we all know that in tnem are enshrined famous treasures of literature and art, while even the secrets of modern knowledge are capable of being communicated thereby in an idiom and in phrases which will be understood by millions of people, to whom our English terms and ideas will never be anything but an unintelligible Jargon." *

ଦେଶୀୟ ଭାଷାମାନଙ୍କର ଏ ଦୁଃଖ ଏବେ ମଧ୍ୟ ଅପସାରିତ ହୋଇ ନାହିଁ ।

* ଉତ୍କଳ ସାହିତ୍ୟ—୧୯୦୨—ପୃ ୧୫୯

# ଶତାବ୍ଦୀ-ସନ୍ଦେଶ

## ଓନବିଂଶ

ଭାରତବର୍ଷର ବିକାଶ ଦିଗରେ ଇଂରେଜ ସାମ୍ରାଜ୍ୟବାଦ ଯାହା କିଛି ଉପକାର କରିଥାଏ, ସେ ହେଉଛି ଏହି ବିଶାଳ ଦେଶରେ ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ସଂଯୋଗକାରୀ ରେଳପଥ ।

ବହୁ ଅର୍ଥ ବ୍ୟୟରେ ଏ ଦେଶର ଦୁର୍ଗମ ଅରଣ୍ୟ ଏବଂ ପାର୍ବତ୍ୟ ପ୍ରଦେଶକୁ ଭେଦକରି ରେଳପଥ ସ୍ଥାପିତ ହେବାଯୋଗୁ ସମଗ୍ର ଦେଶର ଶାସନଗତ ଐକ୍ୟ ପ୍ରତିଷ୍ଠିତ ହୋଇପାରିଲା ଏବଂ ଚଳପ୍ରଚଳର ଅବାଧ ସୁଯୋଗ ହେତୁ ସମୁନ୍ନତ ପାଶ୍ଚାତ୍ୟ ଭାବଧାରା ସମ୍ପର୍କରେ ଆସି ଏ ଦେଶରେ ନବଯୁଗର ସୂତ୍ରପାତ ହେଲା । ତେବେ ରେଳପଥର ବିକାଶ ଦୃଷ୍ଟିରେ ଏବେ ସୁଦ୍ଧା ଓଡ଼ିଶା ପ୍ରଦେଶ ଭାରତର ଅନ୍ୟ ପ୍ରାନ୍ତର ତୁଳନାରେ ଯଥେଷ୍ଟ ପଛରେ ପଡ଼ିଅଛି । ରେଳପଥର ବିକାଶ ହୋଇ ପାରିଲେ ଓଡ଼ିଶା ପ୍ରଦେଶରେ ଶିଳ୍ପର ବିକାଶ ହୋଇ, ଭାରତରେ ଏକ ଶକ୍ତିଶାଳୀ ଏବଂ ସମୃଦ୍ଧ ରାଜ୍ୟରେ ପରିଣତ ହୋଇପାରନ୍ତା ।

ବିଗତ ଶତାବ୍ଦୀରୁ ଏହି ରେଳପଥ ପାଇଁ ଓଡ଼ିଶାବାସୀ ଜନସାଧାରଣ ନାନାଭାବରେ ଦାବୀ କରି ଆସୁଅଛନ୍ତି ।

ସେକାଳରେ ରାସ୍ତାଘାଟ ଅତ୍ୟନ୍ତ ଦୁର୍ଗମ ଏବଂ ବିପଦପୂର୍ଣ୍ଣ ଥିଲା । ସ୍ଥାନେ ସ୍ଥାନେ ରାହାଜାନୀ ଏବଂ ଡକାୟତି ହେଉଥିଲା । ଯାତ୍ରୀମାନଙ୍କର ଧନ ଓ ଜୀବନ ଆଦୌ ନିରାପଦ ନଥିଲା । ସେକାଳରେ ଓଡ଼ିଶା ଆଗତ ଯାତ୍ରୀମାନଙ୍କ ପକ୍ଷରେ ବାଲେଶ୍ୱରର ନାରଣଗଡ଼ ଅତ୍ୟନ୍ତ ଭୟଙ୍କର ସ୍ଥାନ ଥିଲା । ସେହି ସମ୍ପର୍କରେ ଏକ ଚମତ୍କାର ଢଗ ପ୍ରଚଳିତ ଥିଲା—"ହଳଦି

ମଖାମଖି, ନାରଣଗଡ଼ ପାରହୋଇଲେ କୁଣ୍ଟୁମ୍ୱ ଦେଖାଦେଖି ।" ଦେଶରେ ବହୁ ସ୍ଥାନରେ ଡକାଯୂଡମାନେ ମିଳିତ ହୋଇ ଲୁଣ୍ଠତରାଜ ଏବଂ ଅତ୍ୟାଚାର ଚଳାଇଥିଲେ । ଧର୍ମପ୍ରାଣ ତୀର୍ଥଯାତ୍ରୀମାନେ ପଦବ୍ରଜରେ ମେଳବାନ୍ଧି ଯାତ୍ରା କରୁଥିଲେହେଁ ବାରମ୍ବାର ଉତ୍ପୀଡ଼ିତ ହେଉଥିଲେ । କଲିକତା ନଗରୀ ସେ କାଳରେ ଭାରତର ରାଜଧାନୀ ଏବଂ ଶିକ୍ଷା, ସଂସ୍କୃତି ତଥା ବାଣିଜ୍ୟର କେନ୍ଦ୍ରସ୍ଥଳ ଥିବାରୁ କଲିକତାକୁ ଓଡ଼ିଶାବାସୀ ନାଗରିକଗଣ କେବଳ ସମୁଦ୍ରଗାମୀ କ୍ଷୁଦ୍ର ବାଷ୍ପୀୟପୋତ ସାହାଯ୍ୟରେ ଯାତାୟାତ କରୁଥିଲେ । ବାଲେଶ୍ୱର ଜିଲାର ଚୂଡ଼ାମଣି ବନ୍ଦରରୁ ଷ୍ଟିମର ଯୋଗେ ଲୋକେ ଯାତ୍ରା କରୁଥିଲେ । ଆଜିକାଲିପରି ସେକାଳରେ ବାଷ୍ପଚାଳିତ ବଡ଼ ବଡ଼ ପୋତ ନଥିଲା । ସେଗୁଡ଼ିକ ପାଲଟଣା ଜାହାଜ ହୋଇଥିବାରୁ ସମୁଦ୍ର ମଧ୍ୟରେ ଅନେକ ସମୟରେ ଝଡ଼ତୋଫାନର ସମ୍ମୁଖୀନ ହୋଇ ଧ୍ୱଂସପ୍ରାପ୍ତ ହେଉଥିଲା ଏବଂ ସହ ସହ ସଂଖ୍ୟାରେ ଜାହାଜର ଯାତ୍ରୀ ପ୍ରାଣ ହରାଉଥିଲେ ।

ପୁରୀ ବା ପୁରୁଷୋତ୍ତମକ୍ଷେତ୍ର ଭାରତର ପ୍ରଧାନ ତୀର୍ଥସ୍ଥାନ ଥିବାରୁ ଧର୍ମପ୍ରାଣ ଭାରତୀୟଗଣ ବହୁଦୂରରୁ ପଦବ୍ରଜରେ ଆସି ଯାତ୍ରା ଦିନମାନଙ୍କରେ ହଜାର ହଜାର ସଂଖ୍ୟାରେ ପୁରୀରେ ଏକାଠି ହେଉଥିଲେ । ବହୁ ଜନସମାଗମ ଯୋଗୁ ଅସ୍ୱାସ୍ଥ୍ୟକର ପରିସ୍ଥିତି ଫଳରେ ହଇଜା ଓ ମହାମାରୀ କବଳରେ ଅସଂଖ୍ୟ ଲୋକ ପ୍ରାଣ ହରାଉଥିଲେ । ଜଗନ୍ନାଥ ସଡ଼କରେ ଏହି ରୋଗୀମାନେ ଯାତାୟାତ କରୁଥିବା ଯୋଗୁ ନିକଟବର୍ତ୍ତୀ ଗ୍ରାମମାନ ମଧ୍ୟ ଆକ୍ରାନ୍ତ ହୋଇପଡ଼ୁଥିଲେ ।

"ଅତି ଭୟଙ୍କର ଘଟନା" ଶୀର୍ଷକ ଏକ ସମ୍ବାଦ ସେତେବେଳେ ଦେଶରେ ଚହଳ ପକାଇ ଦେଇଥିଲା । କଲିକତାରୁ "ସର୍ଜନ ଲରେନ୍ସ" ନାମରେ ଏକ ଜାହାଜ ଅନେକ ଯାତ୍ରୀଙ୍କୁ ବହନ କରି କଟକ ଅଭିମୁଖେ ଯାତ୍ରା କରୁଥିଲା । ମାତ୍ର ପଥ ମଧ୍ୟରେ ପ୍ରବଳ ଝଡ଼ର ଚାପରେ ଜାହାଜଟି ଧ୍ୱଂସପ୍ରାପ୍ତ ହୋଇ ୭୫୦ ଜଣ ଯାତ୍ରୀ ମୃତ୍ୟୁ ମୁଖରେ ପତିତ ହେଲେ । କଟକଠାରୁ ଚୂଡ଼ାମଣି ପର୍ଯ୍ୟନ୍ତ ଷ୍ଟିମର ଚାଳନା ବନ୍ଦ ହୋଇଯାଇଥିଲା । ଏହି ପରିପ୍ରେକ୍ଷିରେ ତତ୍କାଳୀନ "ଉତ୍କଳ ସଭାର" ଏକ ସ୍ୱତନ୍ତ୍ର ଅଧିବେଶନରେ ପୁରୀ-ବନାରସ ରେଳପଥ ତୁରନ୍ତ କରିବାପାଇଁ ଦାବୀ କରାଯାଇଥିଲା ।

ସମୁଦ୍ରଯାତ୍ରାରେ ବହୁଲୋକ ପ୍ରାଣ ହରାଉଥିବାରୁ ରେଲପଥ ପାଇଁ ପ୍ରଥମେ ଦାବୀ କରାଯାଇଥିଲା । ତାହା ହେଉଛି ୧୮୮୭ ମସିହା ଜୁନ ମାସର କଥା । ❊

ରେଲପଥ ଦାବୀ କରିବାର ମଧ୍ୟ ଆଉ ଏକ ଐତିହାସିକ କାରଣ ଥିଲା । ସେହିବର୍ଷ ପୁରୀରେ ପ୍ରବଳ ହଇଜା ରୋଗ ବ୍ୟାପ୍ତ ହୋଇ ଅସଂଖ୍ୟ ତୀର୍ଥଯାତ୍ରୀଙ୍କୁ ଆକ୍ରାନ୍ତ କରିଥିଲା । ଜଗନ୍ନାଥ ସଡ଼କରେ ଯାତାୟାତରେ ଶହଶହ ଯାତ୍ରୀ ଓଳଉଠାରେ ପୀଡ଼ିତ ହୋଇ ମୃତ୍ୟୁ ବରଣ କରୁଥିଲେ । ସଡ଼କର ଦୁଇ ପାର୍ଶ୍ୱରେ ବୃକ୍ଷ ମୂଳରେ ଔଷଧ ଏବଂ ସାହାଯ୍ୟ ଅଭାବରୁ କେତେ ଯେ ପ୍ରାଣୀ ନଷ୍ଟ ହେଉଥିଲେ, ତାହାର ଇୟତ୍ତା ନାହିଁ । ଯାତ୍ରୀ-ମାନଙ୍କର ଶବ ସଡ଼କ କଡ଼ରୁ ଶୀଘ୍ର ଉଠାଇବାପାଇଁ କୌଣସି ବ୍ୟବସ୍ଥା ନଥିବାରୁ ଦୁର୍ଗନ୍ଧ ହୋଇ ପଥିକମାନଙ୍କର ଭୟଙ୍କର କଷ୍ଟ ହେଉଥିଲା । ଚତୁର୍ଦ୍ଦିଗ ଶ୍ମଶାନରେ ପରିଣତ ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଏଥିପାଇଁ ଉପଯୁକ୍ତ ବ୍ୟବସ୍ଥା ଗ୍ରହଣ କରିବାକୁ ସ୍ୱନାମଧନ୍ୟ ସାପ୍ତାହିକ ନବସମ୍ବାଦ ପତ୍ରିକା ସରକାରଙ୍କ ନିକଟରେ ଦାବୀ ଜଣାଇ ଅଗ୍ରଲେଖା ପ୍ରକାଶ କରିଥିଲେ । ଏହି ସମ୍ପର୍କରେ ନାନାଭାବରେ ଲୋକମତ ମଧ୍ୟ ପ୍ରକାଶ ପାଇଥିଲା । ୦

ସେ କାଳରେ କଟକର "ଉତ୍କଳ ସଭା" ଓଡ଼ିଶାର ଚେତନଶୀଳ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ଏକ ପ୍ରଧାନ ଅନୁଷ୍ଠାନ ଥିଲା । ଏହି ଅନୁଷ୍ଠାନ ନାନାଭାବରେ ଦାବୀ ଜଣାଇ ଆନ୍ଦୋଳନ କରିଥିଲେ । ସେତେବେଳେ ଓଡ଼ିଶା ଆସୋସିଏସନ ନାମରେ ଆଉ ଏକ ଅନୁଷ୍ଠାନ ଗଠିତ ହୋଇଥିଲା । ଏହି ଅନୁଷ୍ଠାନର ଜଣେ ପ୍ରଧାନ ନେତା ଏବଂ ଉପସଭାପତି ଥିଲେ ଉତ୍କଳ-କେଶରୀ ମଧୁସୂଦନ ଦାସ । ଉତ୍କଳ ସଭାର ଆବେଦନ ସମ୍ପର୍କରେ ଭାରତ ସରକାର କଟକ ଓଡ଼ିଶା ଆସୋସିଏସନର ଉପସଭାପତି ମି. ଦାସଙ୍କୁ ୧୮୮୮ ମସିହା ଜୁନ ୨୯ତାରିଖରେ ଯେଉଁ ପତ୍ର ଲେଖିଥିଲେ ତାହାର ଅବିକଳ ପ୍ରତିଲିପି ଏଠାରେ ପ୍ରଦତ୍ତ ହେଲା—

---

❊ ନବ ସମ୍ବାଦ—୯-୭-୧୮୮୭
୦ ନବ ସମ୍ବାଦ—୧୪-୬-୮୭

"In reply I am to say that the Govt. of India fully recognises the importances of railway communication in Orissa and will be glad to entertain favourable any scheme for its development which may be put forward by private enterprise."

ଏହି ପ୍ରତିଲିପିଟି ଉତ୍କଳ ଓ ନବସମ୍ବାଦ ନାମକ ଏକ ଶକ୍ତିଶାଳୀ ସାପ୍ତାହିକ ପତ୍ରିକାରେ ପ୍ରକାଶିତ ହୋଇଥିଲା । *

ରେଳପଥ ପାଇଁ ଦେଶରେ ଦାବୀ ହେଲେହେଁ ସରକାରଙ୍କ ପକ୍ଷରେ ଏହା ଥିଲା ଏକ ବ୍ୟାପକ ଅର୍ଥସାପେକ୍ଷ ଯୋଜନା । ସେଥିପାଇଁ କୋହି କେହି ରେଳପଥ ପରିବର୍ତ୍ତେ ଉତ୍କଳରେ ଟ୍ରାମ ଚଳାଚଳର ବ୍ୟବସ୍ଥା କରି କଲିକତା ସହିତ ସଂଯୋଗ ସ୍ଥାପନ କରିବାପାଇଁ ଦାବୀ ଜଣାଇଥିଲେ ।

ବୃନ୍ଦାବନର ଜଣେ ନାଗରିକ କଟକଠାରୁ ପୁରୀ ପର୍ଯ୍ୟନ୍ତ ଟ୍ରାମ ଲାଇନ ପାଇଁ ଦାବୀ କରି ଲେଖିଥିଲେ – କଟକଠାରୁ ପୁରୀ ଯାଏଁ ଯେଉଁ ସଡ଼କ ଅଛି, ତାହା ଗୋଟିଏ ଉତ୍ତମ ପଥ ଅଟେ । ଉକ୍ତ ପଥରେ ଗୋଟିଏ ଟ୍ରାମଓ୍ୱେ ବସିଲେ ଅତି ଉତ୍ତମ ହେବ । ଏହିପରି କୌଣସି ସୁବିଧା ନ ହେବାରୁ ଯାତ୍ରୀମାନଙ୍କର ଯେ କିପରି କ୍ଲେଶ ହେଉଅଛି, ତାହା କି ଦେଶର ସହୃଦୟ ମହାତ୍ମାଗଣ ବା ସରକାର ବାହାଦୂର ଦେଖୁନାହାନ୍ତି ? ଶ୍ରୀକ୍ଷେତ୍ରର ଗୋଟିଏ ଗୋଟିଏ ଯାତ୍ରା ହେଲେ ଯାତ୍ରୀଙ୍କର ଯେଉଁ ସମାଗମ ହୁଏ, ସେହି ସଙ୍ଗେ ହଇଜା ବେମାରୀ ବୃଦ୍ଧି ହୋଇ ଗ୍ରାମମାନଙ୍କରେ ପ୍ରବେଶ କରି କେତେ ଗ୍ରାମକୁ ଛାରଖାର କରିଦିଏ । ଏହି ଅକାଳମୃତ୍ୟୁ କବଳରେ କେତେ ମହାପ୍ରାଣୀଙ୍କ ଜୀବନଦୀପ ନିଭିଯାଏ, ତାହା ତ ସଦାସର୍ବଦା ଲୋକଙ୍କ ଦୃଷ୍ଟିପଥକୁ ଆକର୍ଷଣ କରୁଅଛି । ସମ୍ପାଦକ ମହାଶୟ, ମୁଁ ଏହା ନିଶ୍ଚୟ କହିପାରେ ଯେ, ଉକ୍ତ ପଥରେ ଟ୍ରାମଓ୍ୱେ ବସିଲେ ସେପରି ହରକତ ଓ ସଂହାରକ ରୋଗ ଝାଡ଼ାବାନ୍ତି ଘଟନ୍ତା ନାହିଁ । @

* ଉତ୍କଳ ଓ ନବସମ୍ବାଦ—୮-୮-୧୮୮୮

@ ଉତ୍କଳ ଓ ନବ ସମ୍ବାଦ—୧ । ୧ ।୧୮୯୦

୧୮୮୮ ମସିହା ଅକ୍‌ଟୋବର ମାସ ବେଳକୁ ଓଡ଼ିଆଭାଷୀ ଅଞ୍ଚଳରେ ବିଭିନ୍ନ ସ୍ଥାନରେ ଧୀରେ ଧୀରେ ଦୁର୍ଭିକ୍ଷ ପଡ଼ିଲାଣି ବୋଲି ସଂବାଦପତ୍ରର ଅଗ୍ରଲେଖାରୁ ଜଣା ପଡ଼ୁଅଛି । ବିଶେଷତଃ ଏହି ସମୟରେ ଖୋର୍ଦ୍ଧା ଏବଂ ଅନୁଗୁଳ ଅଞ୍ଚଳରେ ଏହି ଅନ୍ନକଷ୍ଟ ବ୍ୟାପକ ଭାବରେ ଦେଖା ଦେଇଥିଲି । ପୁନଶ୍ଚ ଏହି ସମୟରେ ବାସୁଦେବପୁର ଏବଂ ଚାନ୍ଦବାଲି ଥାନା ଇଲାକାରେ ଅତିବୃଷ୍ଟି ଓ ବନ୍ୟା ପ୍ରଯୁକ୍ତ ଫସଲ ନଷ୍ଟ କରି ଦେଇଥିବାରୁ ସେଠାର ଅଧିବାସୀଗଣ ଅତ୍ୟନ୍ତ କଷ୍ଟରେ କାଳାତିପାତ କରୁଥିଲେ । ଚାଉଳ ସେର ଦୁଇଅଣା ହୋଇଯିବା ଯୋଗୁଁ ନବସମ୍ବାଦ ଅତ୍ୟନ୍ତ ବିଚଳିତ ହୋଇ ପଡ଼ିଛନ୍ତି । ଏହି ସମୟରେ ଅନେକ ଲୋକ ଏକଓଳି ଖାଇବାକୁ ପାଉନଥିଲେ । ଲୋକେ ଜୀବନ ବିକଳରେ କର୍ମର ସନ୍ଧାନ ଉଦ୍ଦେଶ୍ୟରେ ଜଗନ୍ନାଥ ସଡ଼କବାଟେ କମ୍ବା ସମୁଦ୍ରପଥରେ ଜାହାଜରେ କଲିକତା ପଳାଉଥିଲେ । ଏହା ବ୍ୟତୀତ ଭେଗରାଇ ଏବଂ କମରଦା ପ୍ରଗନାର ଅବସ୍ଥା ଭଲ ନୁହେଁ ବୋଲି ସମ୍ବାଦ ପ୍ରକାଶିତ ହୋଇଛି । ତତ୍କାଳୀନ କଲେକ୍ଟର ମାଜିଷ୍ଟ୍ରେଟ ଶ୍ରୀ ଆର. ଏନ୍. କର୍ଷ୍ଟି ସାହେବ ଏହି ସବୁ ଅଞ୍ଚଳ ପରିଦର୍ଶନ କରି ସରକାରଙ୍କୁ ରିପୋର୍ଟ ପ୍ରଦାନ କରିଥିବା ଜଣାଯାଏ । ❊

ଧୀରେ ଧୀରେ ଦୁର୍ଭିକ୍ଷର କରାଳ ଛାୟା ଖୋର୍ଦ୍ଧା, ପୁରୀ, କଟକ, ବାଲେଶ୍ୱର, କେନ୍ଦୁଝର, ବାମଣ୍ଡା, ମୟୂରଭଞ୍ଜ ପ୍ରଭୃତି ଅଞ୍ଚଳରେ ବିସ୍ତାରିତ ହୋଇଥିଲି । ଚତୁର୍ଦ୍ଦିଗରେ ମହର୍ଗ ପଡ଼ିବ ବୋଲି ଲୋକେ ହାହାକାର କରିବାକୁ ଲାଗିଲେ । ଚାଉଳ ଟଙ୍କାରେ ଷୋଳସେର ମଧ୍ୟ ମିଳୁ ନଥିଲା । ଯେଉଁମାନଙ୍କ ପାଖରେ ଧାନ ଚାଉଳ ମହଜୁଦ ଥିଲା, ସେମାନେ ତତ୍କାଳ ସମୟ ଦେଖି ସେ ସବୁ ଆଉ ବାହାରକୁ ଛାଡ଼ିଲେ ନାହିଁ । ଏହି ସମସ୍ତ ବିଷୟ ପର୍ଯ୍ୟାଲୋଚନା କରି ଓଡ଼ିଶାର ପତ୍ର ପତ୍ରିକା ରେଲଲାଇନ ପଡ଼ିବା ପାଇଁ ଦାବି ଜଣାଇ ଅଗ୍ରଲେଖା ଲେଖିଛନ୍ତି । ସେମାନେ ଅନୁଭବ କରୁଥିଲେ ଯେ, ମାତ୍ର କିଛିକାଳ ପୂର୍ବରୁ ଯେଉଁ ଭୟାନକ ନଅଙ୍କ ଦୁର୍ଭିକ୍ଷ ଓଡ଼ିଶାରେ କଳାକନା ବୁଲାଇ ଦେଇ ଚାଲିଗଲା, ରେଲପଥ ଥିଲେ ତାହା ସମ୍ଭବ ହୋଇ ନ ଥାନ୍ତା । ରେଲଓ୍ୱେ ଅଭାବରେ

❊ ଓଡ଼ିଆ ଓ ନବ ସମ୍ବାଦ—୩ । ୧୦ । ୧୮୮୮

ଓଡ଼ିଶାର ଲୋକେ ଏତେ ବଡ଼ ଦୈବ ଦୁର୍ବିପାକ ନୀରବରେ ସହିବା ଛଡ଼ା ଅନ୍ୟ ଉପାୟ ନଥିଲା । ବର୍ତ୍ତମାନ ମଧ୍ୟ ଯେଉଁ ମହର୍ଗକାଳ ପଡ଼ୁଛି, ତାହା ରେଲପଥ ଥିଲେ ଅକ୍ଳେଶରେ ଦୂର ହୋଇ ଯାଇପାରନ୍ତା । ଏହାଛଡ଼ା ପୁରୀ ହେଲା ଭାରତର ପ୍ରଧାନ ପୀଠ । ଏହି ପୀଠକୁ ଭାରତର ସର୍ବାଞ୍ଚଳରୁ ଯାତ୍ରୀମାନେ ନାନା ଦୁଃଖ କଷ୍ଟ ଏବଂ ବିପଦକୁ ବରଣ କରି ସୁଦ୍ଧା ତୀର୍ଥ କରିବାପାଇଁ ଆସିଥାଆନ୍ତି । ରେଲପଥର ସୁବିଧା ଥିଲେ ପଣ୍ୟ ଦ୍ରବ୍ୟର କାରବାର ଏବଂ ବ୍ୟବସାୟ ବାଣିଜ୍ୟର ଅତ୍ୟନ୍ତ ସୁବିଧା ହୋଇଥାଆନ୍ତା । ଏହି ସବୁ କାରଣରୁ ରେଲପଥର ଅତ୍ୟନ୍ତ ଆବଶ୍ୟକତା ଅଛି ବୋଲି ସେମାନେ ଉପଲବ୍ଧି କରିଥିଲେ । *

ଆଶ୍ଚର୍ଯ୍ୟର କଥା ଯେ, ସେ କାଳରେ ରେଲପଥ ବିରୁଦ୍ଧରେ ମଧ୍ୟ ଅନେକ ଲେଖକ ଆନ୍ଦୋଳନ କରିବାକୁ କୁଣ୍ଠିତ ନ ଥିଲେ । ସେମାନେ ଦେଶର ଦରଦାମ ବୃଦ୍ଧି ସମ୍ପର୍କରେ ଆଶଙ୍କା କରିବା ସ୍ୱାଭାବିକ । ଜଳସ୍ଥଳପଥର ସରବରାହ ହେଲେ ଆଞ୍ଚଳିକ ଉତ୍ପନ୍ନ ଦ୍ରବ୍ୟ ମହର୍ଗ ହୋଇଯିବ ବୋଲି ଏହି ସମାଲୋଚକ ଗୋଷ୍ଠୀ ଆଶଙ୍କା କରୁଥିଲେ । ଜଣେ ପତ୍ର ପ୍ରେରକ ଛଦ୍ମ ନାମରେ ତତ୍କାଳୀନ ଅର୍ଥନୈତିକ ଅବସ୍ଥାକୁ ପର୍ଯ୍ୟାଲୋଚନା କରି ଏହିପରି ଲେଖିଥିଲେ—

ଆଜକାଲି ପରି ନଅଙ୍କ ପୂର୍ବେ ଏହି ଓଡ଼ିଶାରେ କଣିଖିଆ ଲୋକଙ୍କର ଏତେ ଦୁରବସ୍ଥା ନ ଥିଲା । ଏବେ କି ହେତୁ ଅଧିକ ହରକତ ହେଉଅଛନ୍ତି ? ଏହି ପ୍ରଶ୍ନର ଉତ୍ତର ମୋ ଜାଣିବାରେ କେବଳ ଗୃନ୍ଦବାଲିରେ ଷ୍ଟିମାର ଗତାଗତ ହବାରୁ ହେଲାଣି ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଆମ୍ଭେ ଉତ୍ତମ ରୂପେ ଜାଣୁ ଯେ, ପୂର୍ବେ ଏକଟଙ୍କା ବେତନରେ ଯେଉଁମାନେ ପରର ଗୃହକର୍ମ କରୁଥିଲେ, ସେମାନେ ଛଅ ପ୍ରାଣୀ କୁଟୁମ୍ବର ଭରଣ ପୋଷଣ ନିର୍ବାହ ଉକ୍ତ ମୁଦ୍ରାଟି ସାହାଯ୍ୟରେ କରୁଥିଲେ । ଏବେ ସେହି ସଂଖ୍ୟକ ପରିବାରଙ୍କ ସକାଶେ ନିତାନ୍ତ ପକ୍ଷେ ଟ୧୨ଙ୍କା ଲୋଡ଼ା ହେଉଅଛି । ଏହା କି ଗୃନ୍ଦବାଲି ପାଇଁ ଘଟିନାହିଁ ? ଧନ୍ୟ ଆଜିର ଶିବ ବେହେରା । ତୁମ୍ଭେ କପ୍ତାନ ମେକ୍ନିଲନ ସାହେବଙ୍କୁ ବାଟ

* ଓଡ଼ିଆ ଓ ନବ ସମ୍ବାଦ – ୨୬ । ୯ । ୮୮

କଡ଼ାଇ ଫ୍ରେଡବାଲକୁ ଷ୍ଟିମାର ନ ଆଣିଥିଲେ କ ଏପରି ହୋଇଥାଆନ୍ତା ? କାରଣ ଆମ୍ଭ ଦେଶର ଅନ୍ନ ଅନ୍ୟ କାହାଁକ ନଅନ୍ତେ ଯେ, ଆମ୍ଭେମାନେ ଦୁଃଖ ପାଆନ୍ତୁ । ପୁଣି ରେଲ ଲେଡ଼ୁଥିବା ଇଂରାଜୀ ଜାଣିବା ସଭ୍ୟ ଭାଇଙ୍କୁ ଆଜଯାଏ କତ୍ତୁ ଚେତନ ହେଉନାହିଁ । ଏହାଠାରୁ ବଳ କ ଦୁଃଖ ଅଧିକ ଅଛି ? ❊

ଉପରୋକ୍ତ ଚିଠିରୁ ଏ ଜାତିର ଆତ୍ମବଞ୍ଚିତର ପରିଚୟ ମିଳୁଅଛି । ଏକଦା ନୌବାଣିଜ୍ୟରେ ଓଡ଼ିଶାର ଲୋକେ ଭାରତବର୍ଷରେ ଆଗୁଆ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । "ଓଡ଼ିଶାର ବାଣିଜ୍ୟ" ଶିରୋନାମାରେ ଓଡ଼ିଆ ଓ ନବ ସମ୍ବାଦ ଧାରାବାହିକ ଆଲୋଚନା ପ୍ରକାଶ କରିଥିଲେ । ବ୍ୟବସାୟ ବାଣିଜ୍ୟରେ ଓଡ଼ିଆମାନେ ଆଉ ପୂର୍ବପରି ନେତୃତ୍ୱ ନେଇ ପାରୁନଥିବାରୁ ପତ୍ରିକା ଦୁଃଖ ପ୍ରକାଶ କରିଛନ୍ତି । ଓଡ଼ିଶାରେ ବାଣିଜ୍ୟର କେତେଗୁଡ଼ିଏ ସ୍ଥାନ ଅଛି । ସବୁଠି ପାର୍ସି, ମାରବାଡ଼ି, ମାନ୍ଦ୍ରାଜ ଏବଂ ବଙ୍ଗଳାର ପ୍ରଭାବ ଲକ୍ଷ୍ୟ କରାଯାଏ । ଏଥିରେ ଓଡ଼ିଶା-ବାସୀ ଦରିଦ୍ର ଜୀବନ ଯାପନ କରିବେ ନାହିଁ କାହିଁକ ? ଏ ଦେଶର କୃଷିଜାତ ଏବଂ ବନଜାତ ଦ୍ରବ୍ୟର କାରବାରରେ ଅଣ-ଓଡ଼ିଆମାନେ ସର୍ବଦା ଅଧିକାର କରି ବସିଅଛନ୍ତି ।

ଓଡ଼ିଶା ଗଡ଼ଜାତର ଘୋର ଅରଣ୍ୟ ମଧ୍ୟରେ ମଧ୍ୟ ସେମାନେ ଗୋଦାମମାନ କରି ବସିଅଛନ୍ତି । ନିଜ ଭୂମିରେ ଓଡ଼ିଆ କୁଲି ହୋଇ ଜୀବନ ଅତିବାହିତ କରୁଅଛି । ସମବେତ ପ୍ରଚେଷ୍ଟାର ଅଭାବରେ ଓଡ଼ିଆ ପୁଅ ବ୍ୟବସାୟ ବାଣିଜ୍ୟରେ ଅଗ୍ରସର ହୋଇ ପାରୁ ନାହିଁ । ଏକଦା ଓଡ଼ିଶାର ଉପକୂଳରେ ଅସଂଖ୍ୟ ବୃହତ୍କାୟ ବୋଇତମାନ ନିର୍ମିତ ହେଉଥିଲା ଏବଂ ଏହାରି ସାହାଯ୍ୟରେ କଲିକତାଠାରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ବ୍ୟବସାୟ କାରବାର ଚାଲିଥିଲା । ଉତ୍ସାହ ଓ ଯତ୍ନ ଅଭାବରୁ ଏ ଦେଶୀ ବୋଇତମାନ ଅବ୍ୟବହୃତ ଅବସ୍ଥାରେ ପଡ଼ିଅଛନ୍ତି । ବିଶେଷତଃ ଇଂରେଜମାନେ ଓଡ଼ିଆମାନଙ୍କର ଲବଣ ବ୍ୟବସାୟ ଉପରେ କୁଠାରାଘାତ

❊ ଓଡ଼ିଆ ଓ ନବ ସମ୍ବାଦ — ୭ । ୨ । ୯୩

କରିବାରୁ ଏପ୍ରକାର ଦୁର୍ଦ୍ଦଶା ସମ୍ଭବ ହୋଇଅଛି । ରେଲବାଟ ଫିଟିଗଲେ ଓଡ଼ିଶାର ଅର୍ଥନୈତିକ ପ୍ରଗତିର ନୂତନ ଯୁଗ ଉଦ୍‌ଘାଟିତ ହେବ ବୋଲି ଆଶା କରିବା ସ୍ୱାଭାବିକ।

ଅମୃତବଜାର ପତ୍ରିକାର ଏକ ସମ୍ବାଦ ଉଦ୍ଧାର କରି ନବସମ୍ବାଦ ରେଲପଥ ସଂପର୍କରେ ଏକ ଆଶାଜନକ ବାଣୀ ଶୁଣାଇଥିଲେ । ବେଙ୍ଗଲ ନାଗପୁର ରେଲ୍‌ଓଏର ଏକ ଶାଖା ମେଦିନୀପୁର ଠାରୁ କଟକ ପର୍ଯ୍ୟନ୍ତ ଖୋଲିବ ବୋଲି ବ୍ୟବସ୍ଥା ହୋଇଅଛି । ଏଥିପାଇଁ ଯାହା ଅର୍ଥ ବ୍ୟୟ ହେବ, ତାହା ଭାରତ ସରକାର ମାତ୍ର ଦୃଷ୍ଟିରୁ ମଞ୍ଜୁର କରିଛନ୍ତି । ଏହି ବାଟ ଉନ୍ମୁକ୍ତ ହେଲେ ସହସ୍ର ସହସ୍ର ଜଗନ୍ନାଥଯାତ୍ରୀଙ୍କର ତୀର୍ଥଯାତ୍ରାର ସୁବିଧା ହେବ ବୋଲି ନବସମ୍ବାଦ ମତ ପ୍ରଦାନ କରିଛନ୍ତି । ※

ଇଂରେଜମାନେ ଓଡ଼ିଆଭାଷୀ ଭୂଖଣ୍ଡକୁ ବିଭିନ୍ନ ଆଡ଼ୁ ଭିନ୍ନ ଭିନ୍ନ ସମୟରେ ଦଖଲ କରିଥିଲେ । ତେଣୁ ଏହାର ବହୁ ଅଂଶ ସେକାଳର ବଙ୍ଗଳା ଏବଂ ମାନ୍ଦ୍ରାଜ ପ୍ରଦେଶ ସହିତ ସଂଶ୍ଳିଷ୍ଟ ଥିଲା । ଏଣେ କଲିକତା ଆଡ଼ୁ କଟକ ପର୍ଯ୍ୟନ୍ତ ରେଲପଥ ପାଇଁ ଦାବୀ ହେବା ସଙ୍ଗେ ସଙ୍ଗେ ତେଣେ ଦକ୍ଷିଣର ମାନ୍ଦ୍ରାଜ ଆଡ଼ୁ ରେଲପଥ ସହିତ ଓଡ଼ିଶାକୁ ସଂଯୁକ୍ତ କରିବା ପାଇଁ ମଧ୍ୟ ବ୍ୟବସ୍ଥା ହେଉଥିଲା । ମେଦିନୀପୁରଠାରୁ କଟକ ପର୍ଯ୍ୟନ୍ତ ରେଲପଥ ବ୍ୟବସ୍ଥା କରିବାପାଇଁ ଭାରତ ସରକାର ଏକମତ ହେବାର ଠିକ୍ ବର୍ଷକ ପରେ ଦେଖାଗଲା ଯେ, ତେଣେ ସମୁଦ୍ର କୂଳେ କୂଳେ ଦକ୍ଷିଣଅଞ୍ଚଳର ଖୋରଧା ନିକଟବର୍ତ୍ତୀ ଜଟଣୀ ଷ୍ଟେସନ ପର୍ଯ୍ୟନ୍ତ ରେଲପଥ ପଡ଼ିଯାଇଅଛି । ବର୍ତ୍ତମାନ ଏହି ଜଟଣୀ ବା ଖୋର୍ଦ୍ଧାରୋଡ଼ ଏକ ରେଲପଥର କେନ୍ଦ୍ରସ୍ଥଳରେ ପରିଣତ ହୋଇଅଛି । ପଥିକମାନଙ୍କର ଗମନାଗମନ ନିମନ୍ତେ ଇସ୍ତାହାର ଘୋଷଣା କରାଯାଇଛି । ପୁନଶ୍ଚ ଜଟଣୀଠାରୁ ପୁରୀ ପର୍ଯ୍ୟନ୍ତ ରେଲପଥର କାର୍ଯ୍ୟ ଅତ୍ୟନ୍ତ ଜୋରସୋରରେ ଚାଲିଅଛି । ସମ୍ବାଦପତ୍ରରୁ ଜଣାଯାଇଛି ଯେ, ଆଗାମୀ ରଥଯାତ୍ରା ବେଳକୁ ଯାତ୍ରୀମାନେ ରେଲପଥରେ ପୁରୀରେ ବୋଧହୁଏ ପହଞ୍ଚି ଯାଇପାରିବେ । ⊙

---

※ ଓଡ଼ିଆ ଓ ନବସମ୍ବାଦ—୧୭-୩-୧୮୯୬

⊙ ଓଡ଼ିଆ ଓ ନବସମ୍ବାଦ—୨୨-୧-୧୮୯୬

ମେଦନୀପୁର ରେଲବାଟ ସମ୍ପର୍କରେ ଉତ୍କଳ ଦୀପିକାଙ୍କର ଏକ ଆଲୋଚନା ଓଡ଼ିଆ ଓ ନବସମ୍ବାଦ ଉଦ୍ଧାର କରିଛନ୍ତି ।

କଲିକତା ଓ କଟକ ମଧ୍ୟରେ ଅନେକ ବଡ଼ ବଡ଼ ନଦୀ ପ୍ରବାହିତ ହେଉଅଛି । ଏହି ନଦୀମାନଙ୍କ ଉପରେ ପୋଲ ନିର୍ମିତ ନ ହେଲେ ରେଳ ଆସିବା ଅସମ୍ଭବ ହୋଇ ପଡ଼ିବ । ସେଥିପାଇଁ ରେଳ କମ୍ପାନୀ ଏହି ବଡ଼ ବଡ଼ ନଦୀରେ ପୋଲ ନିର୍ମାଣ କରିବେ ବୋଲି ଆଲୋଚନା ହୋଇଅଛି । ଏହି ପୋଲ ନିର୍ମାଣ ପରେ ପଥିକମାନଙ୍କର ବିଶେଷ ମଙ୍ଗଳ ହେବ । ସେମାନେ ବର୍ଷାଦିନେ ପୋଲ ଉପରେ ଯାତାୟାତ କରିବେ ଏବଂ ଘାଟ ପାରିର କଷ୍ଟରୁ ଉଦ୍ଧାର ପାଇବେ । ଅନେକ ସମୟରେ ଘାଟବାଲା ପଥିକମାନଙ୍କୁ ହଇରାଣ କରୁଥିଲେ । ତେଣୁ ପୋଲ ଉପରେ ବାଟୋଇ-ମାନଙ୍କର ଚଲାପଥ ହେବ ବୋଲି ଜାଣିପାରି ସାଧାରଣ ଲୋକ ଆନନ୍ଦିତ ହୋଇଛନ୍ତି । †

କ୍ରମେ କ୍ରମେ ରେଳପଥ ନିର୍ମିତ ହେଲା । ମାଲଗାଡ଼ି ସାହାଯ୍ୟରେ ଆବଶ୍ୟକୀୟ ଜିନିଷମାନ ଆଣି ଜମା କରି ଦିଆଯାଉଥିଲା । କିନ୍ତୁ ମହାନଦୀ, କାଠଯୋଡ଼ି ଏବଂ ବିରୂପା ଉପରେ ପୋଲ ତିଆରି ହେବା କଷ୍ଟକର ବ୍ୟାପାର ଥିଲା । କାରଣ ଏହି ପୋଲ ତିଆରି ଲୌହ ସରଞ୍ଜାମ ବିଲାତରୁ ଆମଦାନୀ ହେଉଥାଏ । ତାହା ଏ ଦେଶକୁ ଆସିବା ପାଇଁ ଅନେକ ଦିନ ଅତିବାହିତ ହୋଇଯାଏ । ପୋଲ ତିଆରି ନ ହେବା ଯୋଗେ ରେଳପଥ ସଂଯୁକ୍ତ ହୋଇ ପାରିଲା ନାହିଁ କିମ୍ବା ଲୋକେ ହଠାତ୍ ବ୍ୟବହାର କରିପାରିଲେ ନାହିଁ ।

୧୮୯୯ ସାଲର ମାର୍ଚ୍ଚ ମାସରେ ରେଲରାସ୍ତା ସମ୍ପର୍କରେ ଏକ ଚମତ୍କାର ଘୋଷଣା ପ୍ରକାଶ ପାଇଥିଲା । ମାର୍ଚ୍ଚ ମାସ ସୁଦ୍ଧା କଲିକତାର କୋଲାଘାଟରୁ ବାରଙ୍ଗ ପର୍ଯ୍ୟନ୍ତ ରେଲରାସ୍ତା ପିଟିଗଲା । କଲିକତାର କୋଲା ପର୍ଯ୍ୟନ୍ତ ଧୂଆଁକଳ ଜାହାଜ ଚାଲିବ । ପ୍ରତି ମାଇଲ ଦୁଇ ପାହୁଲା ହିସାବରେ ଯାତ୍ରୀ-ମାନଙ୍କଠାରୁ ଭଡ଼ା ନିଆଯିବାର ନିୟମ ହୋଇଅଛି । ପୁନଶ୍ଚ ବେଙ୍ଗଲ ନାଗପୁର ରେଲପଥ ଦେଇ ଅନେକ ଯାତ୍ରୀ ଶ୍ରୀକ୍ଷେତ୍ର ଗମନ କରୁଅଛନ୍ତି । ତୀର୍ଥଯାତ୍ରାରେ ଏତେ ଉତ୍ସାହ ବଢ଼ିଅଛି ଯେ, ଯାତ୍ରୀଗାଡ଼ି ଗୁଡ଼ିକ

† ଓଡ଼ିଆ ଓ ନବସମ୍ବାଦ—୪-୭-୯୭

ପୂର୍ଣ୍ଣ ହୋଇ ଆସୁଅଛୁ । ତେଣୁ ବାଟ ଷ୍ଟେସନମାନଙ୍କରୁ ଯାତ୍ରୀମାନଙ୍କୁ ଆଣିବା ସମ୍ଭବ ହେଉନାହିଁ । ଏ ଦିଗରେ କମ୍ପାନୀ ବହୁତ ବ୍ୟବସ୍ଥା କରିବାପାଇଁ ଦାବୀ ହୋଇଅଛୁ । ରେଳଗାଡ଼ି ହେବା ଯୋଗୁ ସମୁଦ୍ରପଥରେ ଷ୍ଟିମର ଯୋଗେ ଯାତ୍ରୀମାନେ ଆସିବା ପାଇଁ ଆଉ ଉତ୍ସାହିତ ହେଉନାହାନ୍ତି । ପ୍ରତିଯୋଗିତା ସ୍ୱରୂପ ଷ୍ଟିମର-ଯାତ୍ରୀଭଡ଼ା ଆଶାନୁରୂପ କମାଇ ଦିଆଯାଇ-ଥିଲେ ମଧ୍ୟ ଲୋକେ ଆଉ ସେଥିପ୍ରତି ଆକୃଷ୍ଟ ହୋଇ ନାହାନ୍ତି । ତେବେ ରେଳଯାତ୍ରା ବୃଦ୍ଧିଲାଭ କରିବା ସଙ୍ଗେ ସଙ୍ଗେ ଅସାବଧାନତାବଶତଃ ଦୁର୍ଘଟନା ଜନିତ ମୃତ୍ୟୁ ଅଥବା ରେଲ ତଳେ ଆତ୍ମହତ୍ୟା ପ୍ରଭୃତି ବୃଦ୍ଧିଲାଭ କରିଅଛି । *

ଊନବିଂଶ ଶତାବ୍ଦୀ ବିଦାୟ ନେବାର ଅବ୍ୟବହିତ ପୂର୍ବରୁ ଓଡ଼ିଶାରେ ରେଳପଥର ମୂଳଦୂଆ ସ୍ଥାପିତ ହେଲା । ରେଳପଥ ଯୋଗୁ ବାହାର ପ୍ରଦେଶ ସହିତ ଅଧିକ ନିବିଡ଼ ସଂଯୋଗ ପ୍ରତିଷ୍ଠିତ ହୋଇ ସ୍ଥାନୀୟ ସାମାଜିକ ଏବଂ ଅର୍ଥନୈତିକ ଜୀବନରେ ଅଶେଷ ପରିବର୍ତ୍ତନର ସୂତ୍ରପାତ ହେଲା ।

---

* ଓଡ଼ିଆ ଓ ନବ ସମ୍ବାଦ—୨୨-୩-୧୮୯୯

## ପତ୍ରିକାର ପ୍ରତିଲିପି

## ନବସଂବାଦ

ଆଧୁନିକ ଯୁଗର ଅଭ୍ୟୁଦୟାରମ୍ଭ କାଳରେ ଯେଉଁ ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ବିପ୍ଳବ ଏ ଦେଶରେ ଦେଖା ଦେଇଥିଲା, ସେଗୁଡ଼ିକର ସମୁଚିତ ଆଲୋଚନା ଓ ବିଶ୍ଳେଷଣ ନ କଲେ ଆଧୁନିକ ସାହିତ୍ୟକୁ ଓ ଓଡ଼ିଆ ସମାଜର ପ୍ରଗତିର ଇତିହାସକୁ ଉପଯୁକ୍ତ ଭାବରେ ବିଚାର କରିବା ସମ୍ଭବ ନୁହେ । କାରଣ ଇତିହାସର ବିବର୍ତ୍ତନ ସହିତ ସାହିତ୍ୟର ବିକାଶ ଓତଃପ୍ରୋତ ଭାବରେ ଜଡ଼ିତ ।

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଇଂରେଜମାନେ ମରହଟ୍ଟା-ମାନଙ୍କ ହସ୍ତରୁ ଓଡ଼ିଶାର ଶାସନଭାର ଗ୍ରହଣ କରିଥିଲେ ଏବଂ ତତ୍କାଳୀନ ବଙ୍ଗ ପ୍ରେସିଡେନ୍‌ସି ସହିତ ଓଡ଼ିଶାକୁ ସାମିଲ କରି ଦିଆଯାଇଥିଲା । ଓଡ଼ିଶା ପ୍ରଦେଶ ନାନାକାରଣରୁ ଅବହେଳିତ ହୋଇ ଶିକ୍ଷା, ସ୍ୱାସ୍ଥ୍ୟ, ଶିଳ୍ପ ଇତ୍ୟାଦି ଦିଗରେ ଅନୁନ୍ନତ ଅବସ୍ଥାରେ ପଡ଼ିରହିଥିଲା । ସେହି ଦୁଃସମୟରେ ଅନୁଦାର ସାମ୍ରାଜ୍ୟବାଦୀ ଇଂରେଜ କର୍ମଚାରୀ ଏବଂ ଅଣ-ଓଡ଼ିଆ ଅହଂକାରୀ କଳା କର୍ମଚାରୀଙ୍କ ଅତ୍ୟାଚାର ଓ କୁଶାସନରେ ଓଡ଼ିଆ ଭୂ-ଖଣ୍ଡର ସ୍ୱାର୍ଥ ପଦେ ପଦେ ଅବହେଳିତ ହୋଇଥିଲା; କିନ୍ତୁ ଏ କଥା ସତ୍ୟ ଯେ, ଊନବିଂଶ ଶତାବ୍ଦୀରେ ଭାରତ ବର୍ଷରେ ରାଜା ରାମମୋହନ ରାୟଙ୍କ ଭଳି ନେତାମାନଙ୍କ ନେତୃତ୍ୱରେ ଏକ ସାଂସ୍କୃତିକ ବିପ୍ଳବ ଦେଖା ଦେଇଥିଲା । ବଙ୍ଗ ପ୍ରଦେଶ ସହିତ ପଡ଼ୋଶୀ ଭାବରେ ଏବଂ ଶାସନ-ତାନ୍ତ୍ରିକ-ସୂତ୍ରରେ ଏକାଠି ଥାଇ ବିପ୍ଳବର ସେହି ସ୍ପନ୍ଦନ ଓଡ଼ିଶା ଅନୁଭବ କରିବାକୁ ଲାଗିଲା । ସେହି ଅନ୍ଧକାର ଯୁଗରେ ଆଲୋକ ବର୍ତ୍ତିକା ଜାଳିବା ପାଇଁ ଯେଉଁ କେତେକ ମହା ମନୀଷୀ ସଂସ୍କାରକ, ସାହିତ୍ୟିକ, ଧର୍ମପ୍ରଚାରକ ଏବଂ ସର୍ବୋପରି ସମ୍ବାଦପତ୍ର

ସବୁ କାର୍ଯ୍ୟାନୁଷ୍ଠାନ କରୁଥିଲେ, ସେଗୁଡ଼ିକର ବିବରଣୀ ଲିପିବଦ୍ଧ ନ ହେଲେ ଆଧୁନିକ ଯୁଗର ଇତିହାସ ସଂକଳନ ଅପୂର୍ଣ୍ଣ ରହିଯିବ । ଏ କଥା ସତ୍ୟ ଯେ, ଆଧୁନିକ ଯୁଗରେ ଚିନ୍ତା ଓ ଭାବଧାରାର ବୈପ୍ଳବିକ ପରିବର୍ତ୍ତନରେ ଏ ଯୁଗର ପତ୍ରପତ୍ରିକା ସବୁଠାରୁ ଅଧିକ ସାହାଯ୍ୟ କରିଛନ୍ତି । ତେଣୁ ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ସହିତ ଊନବିଂଶ ଶତାବ୍ଦୀର ସାମ୍ବାଦିକତା ଓ ସଂବାଦପତ୍ରର ଇତିହାସ ଓତଃପ୍ରୋତ ଭାବରେ ବିଜଡ଼ିତ ।

ଊନବିଂଶ ଶତାବ୍ଦୀକୁ ଓଡ଼ିଆ ସମାଜ ଓ ସାହିତ୍ୟ କ୍ଷେତ୍ରରେ ଆଲୋଚକଗଣ ଅନ୍ଧକାର ଯୁଗ ନାମରେ ଆଖ୍ୟାତ କରି ଥାଆନ୍ତି; କାରଣ ସେ ଯୁଗର ପ୍ରକାଶିତ ପୁସ୍ତକ ଓ ପତ୍ର ପତ୍ରିକା ସମ୍ପର୍କରେ ବୈଜ୍ଞାନିକ ଆଲୋଚନା ବିଶେଷ ହୋଇନାହିଁ । ସେଥିପାଇଁ ସେ କାଳର ଦୁର୍ଲ୍ଲଭ ପ୍ରାଚୀନ ପତ୍ରିକାଗୁଡ଼ିକର ସମ୍ପାଦନା ଓ ସଂକଳନ ପ୍ରଥମେ ଆବଶ୍ୟକ । ହୁଏତ ଦୀର୍ଘକାଳର ଏହି ଅବହେଳା ମଧ୍ୟରେ ବହୁ ପ୍ରାଚୀନ ପତ୍ର ଧରାରୁ ସଂସାରରେ ଅଯତ୍ନତା ଦୋଷରେ ନଷ୍ଟ ହୋଇ ସାରିବଣି । ତେବେ ୧୮୬୬ସାଲ ପରେ ଯେଉଁ କେତେକ ପତ୍ରପତ୍ରିକା ଓଡ଼ିଶାର ଜାତୀୟ ଜୀବନରେ ଅଭୂତପୂର୍ବ ପରିବର୍ତ୍ତନ ଆନୟନ କରିବାରେ ନିୟାମକ ହୋଇ-ଥିଲେ, ସେମାନଙ୍କ ମଧ୍ୟରେ ଉତ୍କଳଦୀପିକା, ସମ୍ବାଦବାହିକା, ଉତ୍କଳ ହିତୈଷିଣୀ, 'ନବସମ୍ବାଦ', ଓଡ଼ିଆ ଓ ନବସମ୍ବାଦ, ଉତ୍କଳପ୍ରଭା, ଉତ୍କଳ ସାହିତ୍ୟ ପ୍ରଭୃତି ବିଶେଷ ଉଲ୍ଲେଖଯୋଗ୍ୟ ।

ଏଠାରେ କେବଳ ଗୋଟିଏ ପତ୍ରିକା 'ନବ ସମ୍ବାଦ'ର ବିଚାର କରାଯାଉଛି । ଏହି ପତ୍ରିକାଟି ୧୮୮୭ସାଲ ଜାନୁଆରୀ ୨୩ତାରିଖ ଦିନ ଶ୍ରୀଯୁକ୍ତ ନାଥବସୁଙ୍କ ସମ୍ପାଦନାରେ ପ୍ରଥମେ କଟକରୁ ଆତ୍ମପ୍ରକାଶ କରିଥିଲା । ଏହାର ବାର୍ଷିକ ମୂଲ୍ୟ ଥିଲା ଦେଢ଼ଟଙ୍କା । ଏହି ପତ୍ରିକାର ଶିରୋନାମାରେ ମୁଦ୍ରିତ ହେଉଥିଲା 'ସତ୍ୟମେବ ଜୟତେ ନାନୃତମ୍ ତସ୍ମିନ୍ ପ୍ରୀତିଃ ତସ୍ୟ ପ୍ରିୟକାର୍ଯ୍ୟ ସାଧନଂ ଚ ତଦୁପାସନ-ମେବ' । ଯେତେବେଳେ ଦୈନିକ ପତ୍ରିକା କେହି କଳ୍ପନା ସୁଦ୍ଧା କରିପାରୁ ନଥିଲେ । ଏହି ସାପ୍ତାହିକ ପତ୍ରିକାଟି ଧର୍ମନୀତି, ରାଜନୀତି, ସମାଜନୀତି, ସାହିତ୍ୟ, ଦର୍ଶନ, ବିଜ୍ଞାନାଦି ବିଷୟରେ ଆଲୋଚନା କରି ଦେଶର ସେବା କରିବେବୋଲି ଘୋଷଣା କରିଥିଲେ ।

ଊନବିଂଶ ଶତାବ୍ଦୀର ଅବହେଳିତ ଉତ୍କଳବାସୀ ବହୁତ ଦେଶୀୟ ଶତ୍ରୁ ତାହାର ପ୍ରଗତିର ପରିପନ୍ଥୀ ହୋଇଥିଲେ; ତେଣୁ ଉତ୍କଳରେ ଦେଶପ୍ରେମୀ ଆବଶ୍ୟକ ହେଉଥିଲେ । ଅତ୍ରେ ଦେଶାତ୍ମବୋଧ ଓ ଜାତୀୟ ପ୍ରୀତି, ନବ ସମ୍ବାଦର ପ୍ରକାଶନରେ ସେକାଳର ପ୍ରଗତିଶୀଳ ସଂସ୍କାରଭାବାପନ୍ନ ଉତ୍କଳୀୟ ବ୍ରାହ୍ମସମାଜର ସମର୍ଥନ ଥିଲେହେଁ ତାହା ସଂକୀର୍ଣ୍ଣତା ଦୋଷରେ ଆଦୌ ଦୁଷ୍ଟ ହୋଇ ନ ଥିଲା । ବରଂ ଉତ୍କଳର ସାମୂହିକ କଲ୍ୟାଣପାଇଁ ଏହି ପତ୍ରିକାରେ ବାରମ୍ବାର ଅଗ୍ରଲେଖା ପ୍ରକାଶ ପାଉଥିଲା । ନବସମ୍ବାଦ ପ୍ରଥମଭାଗ ପ୍ରଥମ ସଂଖ୍ୟାରେ ନିଜର ଲକ୍ଷ୍ୟ ଘୋଷଣା କରି ଲେଖିଥିଲେ "ସୁଷୁପ୍ତ ଉତ୍କଳରେ ଗମ୍ଭୀର ନିଦ୍ରାଭଙ୍ଗ କରି ଲକ୍ଷ ଲକ୍ଷ ନର ନାରୀର ନୟନକୁ ଚମକିତ କରି ନବୀନ ଭାବରେ, ନବ ତେଜରେ, 'ନବସମ୍ବାଦ' ପୃଥିବୀରେ ପ୍ରବିଷ୍ଟ ହେଲା । ଆଜିଠାରୁ ଉତ୍କଳର ରାଜନୈତିକ, ଧର୍ମ ନୈତିକ ଓ 'ସାମାଜିକ କ୍ଷେତ୍ରରେ ଧୀରେ ଧୀରେ ଭୀଷଣ ସଂଘର୍ଷଣର ସୂତ୍ରପାତ ହେଲା ।"

ଉତ୍କଳର ପ୍ରାଚୀନ ଗୌରବ, ପ୍ରାଚୀନ ଧର୍ମଭାବ, ପ୍ରାଚୀନ କୀର୍ତ୍ତିର କଥା ସ୍ୱର୍ଣ୍ଣାକ୍ଷରରେ ଲିଖିତ ହୋଇ ଅଦ୍ୟାପି ଇତିହାସର ପୃଷ୍ଠାକୁ ଉଜ୍ଜ୍ୱଳ କରୁଅଛି । ଆମ୍ଭେମାନେ ଉତ୍କଳର ସେହିସବୁ ପ୍ରାଚୀନ କୀର୍ତ୍ତି ସ୍ତମ୍ଭର ପଦତଳେ ଉପବିଷ୍ଟ ହୋଇ ନବସମ୍ବାଦ ଘୋଷଣା ଦ୍ୱାରା ନବ ଉତ୍କଳରୁ ପୂତିଗନ୍ଧମୟ ପାପ ଓ କଳଙ୍କର ନିଶାଣକୁ ଉତ୍ପାଟିତ କରିବା ନିମନ୍ତେ ଅଗ୍ରସର ହେଉଅଛୁ ।

ଏହି ସଂଖ୍ୟାରେ 'ନବସମ୍ବାଦ' ଶୀର୍ଷକ ଏକ କବିତା ରାମକେଶୀ ରାଗରେ ମୁଦ୍ରିତ ହୋଇଅଛି । ଏଥିରୁ ତତ୍କାଳୀନ ଭାରତୀୟ ସାଂସ୍କୃତିକ ଅଭ୍ୟୁଦୟ, ରାଜନୈତିକ ଓ ଜାତୀୟ ଐକ୍ୟ, କୁସଂସ୍କାର ବିରୁଦ୍ଧରେ ବିଦ୍ରୋହ ଏବଂ ସର୍ବୋପରି ବିଶ୍ୱପ୍ରେମିକତାର ଆଭାଷ ମିଳୁଅଛି । କବିତାଟି ଏହିପରି —

'ଶୁଣ ନରେ ନବସମ୍ବାଦ ବାରେ ଡେରି ଶ୍ରବଣ
ନବଯୁଗ ବିଭୂ ବିଧାନେ ଆସୁଅଛି ବହନ ।
ମଙ୍ଗଳ ବାଜଣା ବାଜୁଛି, ଶୁଣ ଭାରତ ଦ୍ୱାରେ
ଚୌଦିଗେ ଉଡ଼ୁଛି ବିଜୟ-ଧ୍ୱଜା ଅନାଅ ବାରେ,
ପ୍ରଭାତିଲା ଦୁଃଖ ଶର୍ବରୀ ଦେଖ ଭାରତାକାଶେ
ସ୍ୱରଗର ପ୍ରେମ ଆଲୋକ ଚଉଦିଗେ ପ୍ରକାଶେ

ହୃଦୟେ ପ୍ରେମ-କିରଣ ଦେଖ ଭାରତଭୂମିରେ
ବିଚ୍ଛିନ୍ନ ବିଭିନ୍ନ ଭାରତ ଏକ ହେଉଛି ଧୀରେ ।
ବର୍ଣ୍ଣଭେଦ ଧର୍ମଭେଦର ଦିନ ହେଉଛି ଶେଷ
ମହାଯୋଗେ ହେବ ଭାରତ ମହା ଭାରତଦେଶ ।
ପଞ୍ଜାବ ଅଯୋଧ୍ୟା ବଙ୍ଗଳା ରାଜବାଡ଼ା ଗୁର୍ଜର
ତୈଲଙ୍ଗ କର୍ଣ୍ଣାଟ ଉତ୍କଳ ମହାରାଷ୍ଟ୍ର ସଙ୍ଗର ।
ଗାଉଛନ୍ତି ମହା ସଂଗୀତ ଜୟ ଭାରତ ଜୟ
ଏକଜାତି ଆମ୍ଭେ ସରବେ ତେବେ ଆଉ କି ଭୟ ।
ପୁଣି ଶୁଣ, ନବସମ୍ବାଦ ସବେ ଉଲ୍ଲାସେ ମାତି
ଏକମାତ୍ର, ବିଶ୍ୱବିଧାତା ଏକ ମାନବ ଜାତି ।
ଆସିଆ ୟୁରୋପ ଆଫ୍ରିକା ଆମେରିକା ସଙ୍ଗତେ
ସମ୍ମିଳିତ ହେଉଅଛନ୍ତି ପ୍ରେମବିଧାନ ମତେ ।
ପୂରବ ପଶ୍ଚିମ ଉତ୍ତର ପୁଣି ଦକ୍ଷିଣ ଆଶା
ଗାଉଛନ୍ତି ପ୍ରେମ-ସଙ୍ଗୀତ କିବା ଅମୃତଭାଷା,
ପୃଥିବୀ ଡାକଇ ସକଳେ ଶୁଣ ଜଗତବାସୀ
ମୋ ଜନନୀ ତୁମ୍ଭ ଜନନୀ ହୁଅ ପ୍ରେମେ ବିଶ୍ୱାସୀ ।

ଏହି କବିତାଟି ସେକାଳର ଯୁଗବିପ୍ଲବର ଏକ ଆଭିମୁଖ୍ୟ ବୋଲି ଧାରଣା କଲେ କିଛି କ୍ଷତି ହେବ ନାହିଁ; ବରଂ ବହୁକାଳରୁ ପରାଧୀନ କୁସଂସ୍କାର-ବିଜଡ଼ିତ-ଉତ୍କଳ ପ୍ରାନ୍ତରେ ଏକ ନବଯୁଗର ସୂଚନା ମିଳୁଛି ଏହି କବିତାରୁ ।

ଊନବିଂଶ ଶତାବ୍ଦୀର ଶେଷଭାଗରେ ଓଡ଼ିଶାରେ କ୍ରମଶଃ ଉଚ୍ଚଶିକ୍ଷାର ପ୍ରସାର ହୋଇଥିଲା । ଯେଉଁମାନେ ପାଶ୍ଚାତ୍ୟ ଶିକ୍ଷାରେ ଆଲୋକିତ ହେଲେ; ସେମାନଙ୍କର ମନୋରାଜ୍ୟରେ ଅଭିବନୀୟ ଭାବବିପ୍ଳବ ଜାତ ହେବା ସ୍ୱାଭାବିକ; କିନ୍ତୁ ଏହି ଭାବବିପ୍ଳବ ଅନେକ କ୍ଷେତ୍ରରେ ଉଚ୍ଛୃଙ୍ଖଳତାରେ ପର୍ଯ୍ୟବସିତ ହୋଇଥିଲା । ସେ ଯୁଗର ବିଶିଷ୍ଟ ସାହିତ୍ୟିକ ବିଶ୍ୱନାଥ କରଙ୍କ ଦୃଷ୍ଟସୀଲୀଳା ପ୍ରବନ୍ଧ ଓ ଔପନ୍ୟାସିକ ଫକୀରମୋହନଙ୍କ 'ହାଣ୍ଡିବାହୁଡ଼ା' କବିତା ଏବଂ ଗଳ୍ପ ଉପନ୍ୟାସ ପାଠ କଲେ ଶିକ୍ଷିତ ଯୁବକମାନେ କିପରି

ନାନା ଅନୈତିକର କାର୍ଯ୍ୟରେ ଲିପ୍ତ ରହି ନାସ୍ତିକ ମନୋଭାବ ବରଣ କରୁଥିଲେ, ଭାରତୀୟ ଉଜ୍ଜ୍ୱଳ ପରମ୍ପରାକୁ ସମ୍ମାନ ନ ଜଣାଇ ପାଶ୍ଚାତ୍ୟ ସଭ୍ୟତାର ଅନ୍ଧାନୁସରଣ କରୁଥିଲେ, ବହୁକ୍ଷେତ୍ରରେ ତା'ର ପ୍ରମାଣ ମିଳେ । ଅଥଚ ଦେଶରେ ଏହି ନୂଆ ବାବୁଗୋଷ୍ଠୀଙ୍କଠାରୁ ଜାତି ଓ ସମାଜ ବହୁତ କିଛି ଆଶା କରୁଥିଲା । ଏହି ବାବୁମାନଙ୍କ ଉଦ୍ଦେଶ୍ୟରେ ବ୍ୟଙ୍ଗୋକ୍ତିପୂର୍ଣ୍ଣ, 'କଳିଯୁଗର ବାବୁରୂପୀ ଏକାଦଶ ଅବତାର' ଶୀର୍ଷକ ଏକ ରଚନା ଏଠାରେ ପ୍ରଣିଧାନ ଯୋଗ୍ୟ ।

× × ×

କଳିଯୁଗେ ବାବୁରୂପୀ ଅବତାର ହେବେ
ଏକାଦଶ ଅବତାର ନାମ ବୋଲାଇବେ ।

× × ×

ଶିଖିବେ ପାଶ୍ଚାତ୍ୟ ବିଦ୍ୟା ଶ୍ରୁତିସ୍ମୃତିମାନ
ଅର୍ଥକାରୀ ବିଦ୍ୟା ବୋଲି କରିବେ ଗ୍ରହଣ ।
ଶିକ୍ଷାଗୁରୁ ଦୀକ୍ଷାଗୁରୁ ବଳିତି ତାଙ୍କର
ଯେଉଁ ମନ୍ତ୍ର ଦେବେ କର୍ଣ୍ଣେ ସେହି ହେବ ସାର ।
କେହି ଅଧା, କେହି ପୂରା ଇଂରେଜୀ ଶିଖିବେ
ଭୋଜନେ, ଶୟନେ ସ୍ୱପ୍ନେ ବୋଲିକୁ ଝାଡ଼ିବେ ।
ଘରେ ବସି ବୋଲାଇବେ ବିଲାତଫେରନ୍ତା
ବିଧିବା କରିବେ ଇଂରେଜୀରେ କଥାବାର୍ତ୍ତା । ※

ଶିକ୍ଷିତ ବାବୁମାନଙ୍କର ଏ ପ୍ରକାର ଅବଗୁଣସତ୍ତ୍ୱେ ଦେଶରେ ଉଚ୍ଚଶିକ୍ଷା ପାଇଁ ପ୍ରବଳ ଆଗ୍ରହ ପ୍ରକାଶ ପାଇଥିଲା । ଉଚ୍ଚଶିକ୍ଷା ନ ପାଇଲେ ସରକାରୀ ଦପ୍ତରରେ ଉପଯୁକ୍ତ ମାନ ମିଳିପାରିବ ନାହିଁ ବୋଲି ପ୍ରତ୍ୟେକେ ଅନୁଭବ କରୁଥିଲେ । ତେଣୁ ଫକୀରମୋହନଙ୍କ ଉପନ୍ୟାସରେ ଜମିଦାରଙ୍କଠାରୁ ଆରମ୍ଭ କରି ସାଧାରଣ ଗୁମାସ୍ତା ଏବଂ ପୋଷ୍ଟପିଅନ ପର୍ଯ୍ୟନ୍ତ ସବୁ ଶ୍ରେଣୀର ଲୋକେ ନିଜେ ଇଂରେଜୀ ନ ପଢ଼ି ମଧ୍ୟ ସନ୍ତାନମାନଙ୍କୁ ଇଂରେଜୀ ପାଠ ପଢ଼ାଇବା ପାଇଁ ଯତ୍ନ କରି ଆସିଛନ୍ତି । ସେ କାଳରେ ଶିକ୍ଷା ସମ୍ପର୍କରେ

※ ଓଡ଼ିଆ ଓ ନବସମ୍ବାଦ—୧୮-୬-୧୮୯୧

ଆଲୋଚନା କରି ଲେଖାଯାଇଛି । ଉଚ୍ଚଶିକ୍ଷା ବୋଇଲେ ଏଣ୍ଟ୍ରେନ୍ସଠାରୁ ଆରମ୍ଭ କରି ଏମ.ଏ. ପର୍ଯ୍ୟନ୍ତ ଏବଂ ମେଡିକାଲ୍, ଇଞ୍ଜିନିୟରିଂ ପ୍ରଭୃତି କଲେଜ ଅବଶ୍ୟ ଆମ୍ଭମାନଙ୍କର ଏ ପ୍ରଦେଶରେ ଆଦୌ ନାହିଁ । ଏଣ୍ଟ୍ରେନ୍ସ ସ୍କୁଲ ସବସୁଦ୍ଧା ୧୧ଟି; କଟକ ସହରରେ ୫ ଏବଂ ଯାଜପୁର, କେନ୍ଦ୍ରାପଡ଼ା ବାଲେଶ୍ୱର ସହର, ଲକ୍ଷ୍ମଣନାଥ, ଭଦ୍ରଖ, ପୁରୀ ଏହି ସ୍ଥାନମାନଙ୍କରେ ପ୍ରତ୍ୟେକରେ ଗୋଟିଏ ଲେଖାଏଁ । କଲେଜ ମଧ୍ୟରେ କେବଳ କଟକ ରେଭେନ୍ସା କଲେଜ । ଉକ୍ତ କଲେଜରେ ଏମ.ଏ. କ୍ଲାସ ପର୍ଯ୍ୟନ୍ତ ଫିଟିଅଛି ସତ୍ୟ; କିନ୍ତୁ ଗୋପାଳବାବୁଙ୍କ ଛଡ଼ା ଏପର୍ଯ୍ୟନ୍ତ ଏମ.ଏ. ପରୀକ୍ଷାରେ କେହି କୃତକାର୍ଯ୍ୟ ହୋଇ ନାହାନ୍ତି । ଏମ.ଏ.ର ରୀତିମତ ଶ୍ରେଣୀ କିମ୍ବା ଏମ.ଏ. ପଢ଼ାଇବାର କୌଣସି ବନ୍ଦୋବସ୍ତ ନାହିଁ । ଏହା ହେଉଛି ମାତ୍ର ସତୁରି ବର୍ଷ ତଳର କଥା । ସେତେବେଳେ ସମଗ୍ର ଓଡ଼ିଆଭାଷା ଅଞ୍ଚଳରେ ଜଣେମାତ୍ର ଏମ.ଏ. ପାସ କରିଥିବା ଯୁବକ ହେଉଛନ୍ତି ବିଖ୍ୟାତ ଔପନ୍ୟାସିକ ଓ ଉପନ୍ୟାସର ଲେଖକ ଗୋପାଳ ବଲ୍ଲଭ ଦାସ । ସେ ଏମ.ଏ. ପାସ କଲାପରେ ସମଗ୍ର ଜାତି ତାଙ୍କପାଇଁ ଗର୍ବ କରିଥିଲା । କାରଣ ଶିକ୍ଷାର ଅଭାବ ଥିବାରୁ ବାହାର ପ୍ରଦେଶର ଲୋକେ ଏ ଅଞ୍ଚଳରେ ଶାସନ ଡୋରିକୁ ନିୟନ୍ତ୍ରଣ କରୁଥିଲେ । ସେମାନେ ଶୋଷକର ମନୋଭାବ ନେଇ ଆସିଥିବାରୁ ସ୍ଥାନୀୟ ସମସ୍ୟା ପ୍ରତି ସେମାନଙ୍କର ସମ୍ମାନ ଅଥବା ସହାନୁଭୂତି ଆଦୌ ନ ଥିଲା । ତେଣୁ ସରକାରୀ ଦପ୍ତରରେ ନିଯୁକ୍ତି ବେଳେ ଉଗ୍ର ପ୍ରାନ୍ତୀୟ ମନୋଭାବ ପ୍ରକାଶ ଲାଭକରିବା ସ୍ୱାଭାବିକ । ସେତେବେଳେ କଟକର ସବ୍‌ଜଜ୍ କୋର୍ଟ ଅଦାଲତରେ ହେଡ଼କ୍ଲର୍କ ପଦରେ ବଙ୍ଗ ଦେଶର ଏକଜଣ ବି.ଏ. ଉପାଧିଧାରୀଙ୍କୁ ନିଯୁକ୍ତ କରିବାରୁ ସ୍ଥାନୀୟ କେତେଜଣ ଗ୍ରାଜୁଏଟ ଗଭର୍ଣ୍ଣମେଣ୍ଟଙ୍କ ସମ୍ମୁଖକୁ ମେମୋରିଏଲ ପଠାଇ ଅଛନ୍ତି । ଯଥାର୍ଥରେ ଦେଶୀୟ ଉପଯୁକ୍ତ ଲୋକ ଥିବାସତ୍ତ୍ୱେ ଦୂରସ୍ଥାନରୁ ଏକଜଣ ଲୋକ ଆଣିବା ଅତ୍ୟନ୍ତ ଅବିଚାର କାର୍ଯ୍ୟ ହୋଇଅଛି । ସବ୍‌ଜଜ୍ ମହାଶୟ କ ଯୋଗ୍ୟତା ଦେଖି ତାହାଙ୍କୁ ନିଯୁକ୍ତ କରିଅଛନ୍ତି ତାହା ତାହାଙ୍କୁ ଗୋଚର । * କେବଳ ସେତିକି ନୁହେଁ, ଆଧୁନିକ ଓଡ଼ିଆ ସାହିତ୍ୟରେ ସୁପରିଚିତ ବିଜୟଚନ୍ଦ୍ର ମଜୁମଦାର ପ୍ରଥମେ ବାମଣ୍ଡାରେ ରାଜଶିକ୍ଷକ ଥିଲେ । ପରବର୍ତ୍ତୀକାଳରେ ସେ ପୁରୀଜିଲ୍ଲା ସ୍କୁଲରେ ଶିକ୍ଷକ ପଦରେ ନିଯୁକ୍ତ

* ନବସମ୍ବାଦ—୨୩-୧-୧୮୮୭

ଲାଭ କରିବାରୁ ତତ୍କାଳୀନ ପତ୍ରପତ୍ରିକାରେ ଜଣେ ଅଣଓଡ଼ିଆ ନିଯୁକ୍ତି ପାଇଲେ ବୋଲି ଆନ୍ଦୋଳନ ହୋଇଥିଲା । ବିଶେଷତଃ ମଜୁମଦାର ବାବୁ ବ୍ରାହ୍ମ ଥିବାରୁ ଏହି ନିଯୁକ୍ତିରେ ପରୋକ୍ଷରେ ଶିକ୍ଷାବିଭାଗର କ୍ଷମତାପ୍ରାପ୍ତ କର୍ମଚାରୀ ବ୍ରାହ୍ମ ମଧୁସୂଦନଙ୍କ ସମର୍ଥନ ଅଛି ବୋଲି ଅଭିଯୋଗ ପ୍ରକାଶିତ ହୋଇଥିଲା । ଏହି ଘଟଣାର ସବିଶେଷ ଆଲୋଚନା କରି ନବସମ୍ବାଦ ସୁଚିନ୍ତିତ ମତ ପ୍ରକାଶ କରିଥିଲେ । * ସେହି ସମୟରେ ବନ୍ଦୋବସ୍ତ କାର୍ଯ୍ୟ ଚାଲିଥିଲା । ସରକାରୀ ଉଚ୍ଚ ମହଲରେ ଅଣଓଡ଼ିଆ କର୍ମଚାରୀ ପ୍ରତିଷ୍ଠିତ ଓ ପ୍ରଭାବଶାଳୀ ଥିବାରୁ ମୁଷ୍ଟିମେୟ ଶିକ୍ଷିତ ଓଡ଼ିଆମାନଙ୍କପାଇଁ ମଧ୍ୟ ଓଡ଼ିଶାରେ ସ୍ଥାନ ମିଳୁ ନ ଥିଲା । ସେଥିପାଇଁ ଯେ କୌଣସି ସାମାନ୍ୟ ନିଯୁକ୍ତି ପ୍ରଶ୍ନ ଉଠିଲେ ସେଠାରେ ଓଡ଼ିଆ ଲୋକେ ସ୍ଥାନ ପାଇବାପାଇଁ ସେକାଳର ସମସ୍ତ ପତ୍ରପତ୍ରିକା ଦାବୀ କରୁଥିଲେ । ଅନୁକୂଳ ବନ୍ଦୋବସ୍ତରେ ଓଡ଼ିଆମାନେ ଯେଉଁ କାର୍ଯ୍ୟ କରିବା ପାଇଁ ଉପଯୁକ୍ତ ଅଛନ୍ତି, ସେତିକ ମଧ୍ୟ ସେମାନଙ୍କୁ ନ ମିଳି ହିନ୍ଦୁସ୍ଥାନୀ ଏବଂ ବଙ୍ଗୀୟ କର୍ମଚାରୀଙ୍କୁ ଯୋଗାଇ ଦିଆଯିବାରୁ ସମ୍ବାଦବାହିକା ଓ ଉତ୍କଳ-ଦୀପିକା ଭଳି ବିଖ୍ୟାତ ପତ୍ରିକା ସମାଲୋଚନା କରିଥିଲେ । ଏହି ମତବାଦକୁ ସମର୍ଥନ କରି ନବସମ୍ବାଦ ମଧ୍ୟ ନିଜର ଅଗ୍ରଲେଖା ପ୍ରକାଶ କରିଥିଲେ । ⊥

ସେତେବେଳେ ଜଣେ ଅଣଓଡ଼ିଆଙ୍କ କର୍ମପ୍ରାପ୍ତିରେ ଯେତିକି ତିକ୍ତ ଲୋକମତ ପ୍ରକାଶ ପାଇଛି, ଓଡ଼ିଆଙ୍କ ଉଚ୍ଚ ସମ୍ମାନ ଲାଭରେ ସେହି ପରିମାଣରେ ଗୌରବ ମଧ୍ୟ ଅର୍ଜିତ ହୋଇଅଛି । ଓଡ଼ିଶାରେ ପ୍ରଥମ ଏମ୍.ଏ. ବାବୁ ଗୋପାଳବଲ୍ଲଭ ଦାସ ଡେପୁଟି କର୍ମରେ ଅବସ୍ଥାପିତ ହେବାରୁ ବିଖ୍ୟାତ ସାପ୍ତାହିକ 'ନବସମ୍ବାଦ' ବଙ୍ଗ ଲାଟଙ୍କୁ କୃତଜ୍ଞତା ଜଣାଇ ଏହା ଅବଶ୍ୟ ଓଡ଼ିଶାବାସୀଙ୍କ ପ୍ରତି ଗୌରବର ବିଷୟ ବୋଲି ଉଲ୍ଲେଖ କରିଛନ୍ତି । ∫

ଓଡ଼ିଶାରେ ଉଚ୍ଚ ଶିକ୍ଷାର ପ୍ରସାର ମନ୍ଥର ଗତିରେ ହେବାର ଅନ୍ୟତମ କାରଣ ଏ ଦେଶର ରକ୍ଷଣଶୀଳ ବ୍ରାହ୍ମଣସମାଜ । ସେମାନେ ସମାଜରେ

---

* ନବ ସମ୍ବାଦ—୧୦।୧।୧୮୮୭

⊥ ନବ ସମ୍ବାଦ—୧୦।୩।୧୮୮୭

∫ ନବ ସମ୍ବାଦ—୨୩।୧।୧୮୮୭

ଅଧିକ ପ୍ରଭାବଶାଳୀ ଏବଂ ସଂସ୍କୃତସମ୍ପନ୍ନ ଥିବାରୁ ଯେ କୌଣସି ପରିବର୍ତ୍ତନ ପ୍ରତି ସେମାନଙ୍କର ପ୍ରତିକ୍ରିୟା ଅଧିକ ଫଳପ୍ରସୂ ହେଉଥିଲା । ସେ କାଳରେ ନୂତନ ପ୍ରବର୍ତ୍ତିତ ଇଂରେଜୀ ଶିକ୍ଷାକୁ ବ୍ରାହ୍ମଣମାନେ ସନ୍ଦେହଦୃଷ୍ଟିରେ ବିଚାର କଲେ । ଉଚ୍ଚଶିକ୍ଷା ପାଇଁ ବିଲାତ ଗଲେ ଜାତି ହରାଇବାକୁ ପଡ଼ୁଥିଲା । ବ୍ରାହ୍ମଣମାନେ ଇଂରେଜୀ ଶିକ୍ଷାପ୍ରତି ଧର୍ମହାନି ଭୟରେ ସତତ ପରାଙ୍ମୁଖ ଥିଲେ । ତେଣୁ ବହୁକାଳ ଯାଏଁ ବ୍ରାହ୍ମଣସମାଜରେ କେହି ଇଂରେଜୀ ପଦ୍ଧତିରେ ଉଚ୍ଚ ଶିକ୍ଷିତ ବାହାରିପାରିଲେ ନାହିଁ । ଯେଉଁ କେତେଜଣ ବ୍ରାହ୍ମଣଯୁବକ ସମାଜର ନାଲି ଆଖିକୁ ଏଡ଼ିଦେଇ ଉଚ୍ଚଶିକ୍ଷା ଲାଭ କରିଥିଲେ, ସେମାନେ ନାନା ନିର୍ଯ୍ୟାତନାର ସମ୍ମୁଖୀନ ହୋଇଥିଲେହେଁ ଉତ୍କଳ-ହିତୈଷୀ ପତ୍ର-ପତ୍ରିକା ସେମାନଙ୍କର ଉଚ୍ଛ୍ୱସିତ ପ୍ରଶଂସା କରି ସମାଜର ଦୃଷ୍ଟି ଆକର୍ଷଣ କରିଥିଲେ । ଉତ୍କଳର ବ୍ରାହ୍ମଣମାନଙ୍କ ମଧ୍ୟରେ ପ୍ରଥମ ଗ୍ରାଜୁଏଟ ହେଉଛନ୍ତି ପୁରୀର ହରିହର ମିଶ୍ର । ତାଙ୍କ ପ୍ରତି ସମ୍ବର୍ଦ୍ଧନା ଜଣାଇ, 'ନବସମ୍ବାଦ' ଲେଖିଥିଲେ—ଉତ୍କଳୀୟ ବ୍ରାହ୍ମଣମାନଙ୍କ ମଧ୍ୟରୁ ଆଜଯାଏ କେହି ବି.ଏ. ପାସ କରି ନଥିଲେ । ଏବର୍ଷ ପୁରୀରୁ ଶ୍ରୀ ହରିହର ମିଶ୍ରଙ୍କୁ ଉକ୍ତ ପରୀକ୍ଷାରେ ପରୀକ୍ଷୋତ୍ତୀର୍ଣ୍ଣ ହୋଇଥିବାର ଦେଖି ଆମ୍ଭେମାନେ ଅତିଶୟ ସୁଖୀ ହୋଇଅଛୁ । ଉତ୍କଳୀୟ ବ୍ରାହ୍ମଣମାନଙ୍କୁ ଆମ୍ଭମାନଙ୍କର ଅନୁରୋଧ ଯେ, ସେମାନେ ଏହାଙ୍କୁ ଏବିଷୟରେ ଅନୁକରଣ କରିବା ନିମିତ୍ତ ପ୍ରୟାସୀ ହେଉନ୍ତୁ । *

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଜାତୀୟତାର ବନ୍ୟା ଏ ଦେଶର ପ୍ରତ୍ୟେକ ସ୍ତରରେ ପ୍ରବାହିତ ହୋଇଥିଲା । ଦେଶର ସର୍ବାଙ୍ଗୀନ ଉନ୍ନତି ପାଇଁ ଗୁରିଆଡ଼େ ଦାବୀ ହେଉଥିଲା ଏବଂ ପଡ଼ୋଶୀ ପ୍ରଦେଶଗୁଡ଼ିକ ଇଂରେଜ ଶିକ୍ଷା ସଭ୍ୟତାର ସୁଯୋଗ ନେଇ ଅଧିକ ଅଗ୍ରସର ହୋଇ ଯାଉଥିବାରୁ ପ୍ରବଳ ବ୍ୟାକୁଳତା ପ୍ରକାଶ ପାଉଥିଲା । ବିଶେଷତଃ ଓଡ଼ିଶାର ଭାଗ୍ୟ ଅନ୍ୟ ପ୍ରାନ୍ତରେ ନିର୍ଦ୍ଧାରଣ ହୋଇଥିବାରୁ ତାହାର ଭାଷା, ସାହିତ୍ୟ ଏବଂ ସାମାଜିକ ପ୍ରଗତି ପଦେ ପଦେ ଅବହେଳିତ ହେବାର ଆଶଙ୍କା ପ୍ରକାଶିତ ହେଉଥିଲା । ମୁଦ୍ରାଯନ୍ତ୍ରର ପ୍ରଭାବରେ ଆଧୁନିକ ସାହିତ୍ୟ ପ୍ରଚୁର ଲାଭ

* ନବସମ୍ବାଦ—୨-୭-୧୮୮୭

କରିବାର କ୍ଷେତ୍ର ପ୍ରଶସ୍ତ ହେବାରୁ ତହିଁ ପ୍ରତି ସମଧିକ ଆଦର ପ୍ରକାଶ ପାଇବା ସ୍ୱାଭାବିକ ।

ବିଦେଶୀ ଭାଷା ଓ ସାହିତ୍ୟ ବଦଳରେ କଲିକତା ବିଶ୍ୱବିଦ୍ୟାଳୟରେ ଦେଶୀୟ ଭାଷାର ଚର୍ଚ୍ଚା ପାଇଁ ପ୍ରସ୍ତାବ ହେବାରୁ ନବସମ୍ବାଦ ଆନନ୍ଦ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷାର ସ୍ୱାର୍ଥରକ୍ଷା ହେଉ ବୋଲି ଦାବୀ କରିଥିଲେ । ନବସମ୍ବାଦ ଲେଖିଥିଲେ—'ବର୍ତ୍ତମାନ କଲିକତା ବିଶ୍ୱବିଦ୍ୟାଳୟରେ ଯେପରି ପ୍ରସ୍ତାବମାନ ହେଉଅଛି, ସେଥିରେ ଦେଶୀୟ ଭାଷାମାନଙ୍କର ଉନ୍ନତି ହେବାର ସମ୍ଭାବନା ବୋଧ ହେଉଅଛି । ଭାରତବର୍ଷର ବିଶ୍ୱବିଦ୍ୟାଳୟମାନଙ୍କରେ ଆଜଯାଏଁ କେବଳ ବିଦେଶୀୟ ଭାଷା ଏବଂ ମୃତପ୍ରାୟ ସଂସ୍କୃତଭାଷାର ପୁସ୍ତକମାନ ପଠିତ ହେଉଅଛି । ଦେଶୀୟ କୌଣସି ଭାଷାର ଆଶାନୁରୂପ ଆଲୋଚନା ହେଉନାହିଁ । ମାତୃଭାଷାରେ ପାଠ ଏବଂ ପରୀକ୍ଷୋପଯୋଗୀ ଉଚ୍ଚଦରର ସଦ୍‌ଗ୍ରନ୍ଥ ନାହିଁ କହିଲେ ଚଳେ । ଏହା ଅବଶ୍ୟ ଭାରତ ଅନୁନ୍ନତିର ଗୋଟିଏ କାରଣ । ଯାହାହେଉ ଭାରତବନ୍ଧୁ ହଣ୍ଟର ସାହେବ ପ୍ରସ୍ତାବ କରିଅଛନ୍ତି ଯେ, ବିଶ୍ୱବିଦ୍ୟାଳୟରୁ ପ୍ରତିବର୍ଷ ଯେଉଁ ଟଙ୍କା ଉଦ୍‌ବୃତ୍ତ ହୁଏ, ସେହି ଟଙ୍କାରେ ବଙ୍ଗଳାର ନୂତନ ଏବଂ ପୁରାତନ ଭଲ ପୁସ୍ତକ ସବୁ ମୁଦ୍ରିତ କରି ତାହା ବିଶ୍ୱବିଦ୍ୟାଳୟରେ ପ୍ରଚଳିତ କରାଯାଉ । ଏ ପ୍ରସ୍ତାବଟି ଉତ୍ତମ । ମାତ୍ର ଏଥିରେ କେବଳ ବଙ୍ଗଳା ଭାଷାର ଉଲ୍ଲେଖ ଥିବାରୁ ଆମ୍ଭମାନଙ୍କର ଭୟ ହେଉଅଛି ହୁଏତ ଓଡ଼ିଆ ଭାଷାପ୍ରତି ଆଉ କାହାରି ଦୃଷ୍ଟି ପଡ଼ିବ ନାହିଁ । ଆମ୍ଭେମାନେ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟଙ୍କୁ ପ୍ରାର୍ଥନା କରୁଅଛୁ ଯେ, ସେମାନେ ହଣ୍ଟର ସାହେବଙ୍କ ପ୍ରସ୍ତାବକୁ ବିଚାର କଲାବେଳେ ଓଡ଼ିଆ ଭାଷା ପ୍ରତି ଦୃଷ୍ଟି ରଖିବେ ।' * ସେହି କାଳରେ ଓଡ଼ିଆ ଭାଷାକୁ ଲୋପ କରି ତା ବଦଳରେ ବଙ୍ଗଳାଭାଷାକୁ ପ୍ରଚଳନ କରିବାପାଇଁ ଯେଉଁ ଚକ୍ରାନ୍ତ ହୋଇଥିଲା, ତାହା ଇତିହାସ ପାଠକମାନଙ୍କୁ ଅବିଦିତ ନାହିଁ । ତେଣୁ ପ୍ରତ୍ୟେକ କ୍ଷେତ୍ରରେ ଓଡ଼ିଆଭାଷା ଓ ସାହିତ୍ୟର ମର୍ଯ୍ୟାଦା ରକ୍ଷାପାଇଁ ତତ୍କାଳୀନ ସମାଜ ସଚେତନ ଥିଲା । ଓଡ଼ିଆଭାଷାରେ ଉପଯୁକ୍ତ ପାଠ୍ୟପୁସ୍ତକ ସୁଲଭ ନ ଥିଲା । ମଧୁସୂଦନ, ରାଧାନାଥ, ଫକୀରମୋହନ ପ୍ରଭୃତି ଏହି ଅଭାବ ଦୂର କରିବାପାଇଁ ସମଧିକ ଚେଷ୍ଟା କରିଥିବା ଜଣାଯାଏ ।

---

* ନବ ସମ୍ବାଦ—୨୪।୩।୧୮୮୭

ଏହି ସମୟରେ ବ୍ରାହ୍ମଣଯୁବକ ବିଶ୍ୱନାଥ କର ବ୍ରାହ୍ମଧର୍ମ ଗ୍ରହଣ କରିବାରୁ ପତ୍ରପତ୍ରିକାରେ ଚହଳ ପଡ଼ିଯାଇଥିଲା । ଅନେକେ ମନେ କରୁଥିଲେ ଯେ, ପାଶ୍ଚାତ୍ୟ ଶିକ୍ଷାର ପ୍ରସାର ଫଳରେ ଶିକ୍ଷିତ ଯୁବକଗଣ ନାନା ଧର୍ମବିରୋଧୀ କାର୍ଯ୍ୟ କରୁଅଛନ୍ତି । ଏକଥା ସତ୍ୟ ଯେ, ତତ୍କାଳୀନ ସମାଜରେ ଅନେକ ବ୍ରାହ୍ମଧର୍ମାବଲମ୍ବୀ ଅତ୍ୟନ୍ତ ପ୍ରଗତିଶୀଳ ସଂସ୍କାରଭାବାପନ୍ନ ଏବଂ ପ୍ରଭାବଶାଳୀ ବ୍ୟକ୍ତି ଥିଲେ । ସେମାନଙ୍କ ସମାଜରେ ଉଚ୍ଚଶିକ୍ଷାର ଅଧିକ ପ୍ରସାର ହିଁ ଏହାର କାରଣ । ମଧୁସୂଦନ ରାଓ ଜଣେ ଆଦର୍ଶ ବ୍ରାହ୍ମ ଥିଲେ ଏବଂ ରେଭେନ୍ସାର ହାଇସ୍କୁଲ ପ୍ରତିଷ୍ଠା କରିଥିଲେ । ତେଣୁ ସେଠାରେ ବ୍ରାହ୍ମ ଧର୍ମ ପ୍ରଚାର ହେଉଛି ବୋଲି କେତେକ ପତ୍ରିକା ଅଭିଯୋଗ କରିଥିଲେ । ବ୍ରାହ୍ମଧର୍ମ ହିନ୍ଦୁଧର୍ମର ଏକ ସଂସ୍କାରମାତ୍ର ହେଲେହେଁ ସେତେବେଳେ ଅନେକ ବ୍ରାହ୍ମ ଅତ୍ୟନ୍ତ ହିନ୍ଦୁବିଦ୍ୱେଷୀ ମନୋଭାବ ଗ୍ରହଣ କରି ହିନ୍ଦୁଧର୍ମକୁ ନାନା ସ୍ଥାନରେ ଉପହସିତ କରିବାପାଇଁ ଉଦ୍ୟମ କରୁଥିଲେ । ପ୍ରସିଦ୍ଧ ସମ୍ପାଦକ ଓ ସାହିତ୍ୟିକ ବିଶ୍ୱନାଥ କରଙ୍କ ପ୍ରବନ୍ଧାବଳୀ ପାଠକଲେ ଅନେକ ସ୍ଥଳରେ ସେ ହିନ୍ଦୁଧର୍ମକୁ କଠୋର ଭାବରେ ଆକ୍ଷେପ ଏବଂ ସମାଲୋଚନା କରିଥିବା ଜଣାଯାଏ । ସେହି ସମୟରେ ଜନୈକ ବ୍ରାହ୍ମଧର୍ମୀ ଡେପୋଟିବାବୁ ପୁରୀର ଶ୍ରୀମନ୍ଦିରରେ ପ୍ରବେଶ କରି ଶ୍ରୀ ଜିଉଙ୍କ ପ୍ରସାଦ ଫୁଲ ଗ୍ରହଣ ନ କରି ଅସମ୍ମାନ ପ୍ରଦର୍ଶନ କରିଥିଲେ । ଏହି ଘଟଣାଟି ବିଖ୍ୟାତ 'ଉତ୍କଳଦୀପିକା' ପତ୍ରିକାରେ ଭପୂଙ୍କର ସମାଲୋଚିତ ହୋଇଥିଲା । 'ନବସମ୍ବାଦ' ବ୍ରାହ୍ମଧର୍ମୀମାନଙ୍କୁ ସମର୍ଥନ କରୁଥିଲେହେଁ ଏ କ୍ଷେତ୍ରରେ ଉଦାରତା ତଥା ଧର୍ମଗତ ସହଣିକତା ପ୍ରଦର୍ଶନ କରିବାକୁ ପରାମର୍ଶ ଦେଇ 'ଦୀପିକା'ଙ୍କ ସମାଲୋଚନାକୁ ସମର୍ଥନ କରିଥିଲେ । ନବସମ୍ବାଦ ଲେଖିଥିଲେ—'ବାସ୍ତବିକ ଯେଉଁମାନେ ପ୍ରସାଦ ଗ୍ରହଣ ନ କରିବେ, ସେମାନଙ୍କର ଦେଉଳକୁ ଯିବାର ଯେ କି ଆବଶ୍ୟକତା ତାହା କିଛି ସ୍ଥିରକରି ହେଉନାହିଁ । ଡେପୋଟିବାବୁ ବୋଧହୁଏ ଜାଣନ୍ତି ଯେ, ବ୍ରାହ୍ମମାନଙ୍କର ଏପରି ସ୍ଥଳରେ ପ୍ରବେଶ କରିବାର ଉଚିତ ନୁହେଁ ; କିନ୍ତୁ ଜାଣି ଅଜଣା ହୋଇ ଲୋକଙ୍କ ମନରେ ଏପରି କଷ୍ଟ ଦେବା ଅତ୍ୟନ୍ତ ଅବିବେଚକର କାର୍ଯ୍ୟ ହୋଇଅଛି । ବ୍ରାହ୍ମଭାଇମାନଙ୍କର ପରର ଧର୍ମ ପ୍ରତି ଏପରି ତାଚ୍ଛିଲ୍ୟଭାବ ଦେଖାଇବାର ଉଚିତ ନୁହେଁ । ଜଗତରେ

ଅଭ୍ରାନ୍ତ କେହି ନୁହଇ । ସାକାର ଉପାସକମାନେ ଭ୍ରାନ୍ତ ହେଲେ ସୁଦ୍ଧା ସେମାନଙ୍କର ଧର୍ମପ୍ରତି ଏପରି ଆକ୍ରମଣ ଯୁକ୍ତିଯୁକ୍ତ ନୁହଇ । *

ସ୍ୱାଧୀନତା ଲାଭ ପରେ ଭାରତବର୍ଷରେ ସରକାରୀ ଉତ୍ସବ ଏବଂ ଲୋକପ୍ରତିନିଧିମାନଙ୍କ ଆଡ଼ମ୍ବର ଆୟୋଜନ ଲକ୍ଷ୍ୟ କଲେ ବେଳେ ବେଳେ ମନରେ ଦୁଃଖ ଜାତ ହୁଏ । ମାତ୍ର ପରାଧୀନ ଭାରତବର୍ଷରେ ବିଦେଶୀ ଶକ୍ତିର ସମ୍ପୂର୍ଣ୍ଣ ପ୍ରଭୁତ୍ୱ ସ୍ୱୀକୃତ ହୋଇଥିଲାବେଳେ ସେହି ଭାରତେଶ୍ୱରୀଙ୍କ ଜୁବୁଲି ଉତ୍ସବ ଉପଲକ୍ଷେ ଦେଶସାରା ନାନା ଆଡ଼ମ୍ବରର ଆୟୋଜନ ହୋଇଥିଲା । ଏହାକୁ ଲକ୍ଷ୍ୟ କରି 'ନବସମ୍ବାଦ' ତୀବ୍ର କଟାକ୍ଷ କରିବା ସଙ୍ଗେ ସଙ୍ଗେ ଜୁବୁଲି ଉପଲକ୍ଷେ ଅଯଥା ଜନସାଧାରଣଙ୍କ ଅର୍ଥ ତାମସା ଓ ବ୍ୟସନରେ ଖର୍ଚ୍ଚ ନ କରି ଲୋକସାଧାରଣଙ୍କ ଉପକାର ପାଇଁ କୌଣସି ସ୍ଥାୟୀ ବ୍ୟବସ୍ଥା ଅଥବା ଅନୁଷ୍ଠାନ କରିବାକୁ ଦାବୀ କରିଥିଲେ । କଟକରେ ଏହି ଜୁବୁଲି ଉପଲକ୍ଷେ ସ୍କୁଲ କଲେଜରେ ଏକ ପାର୍କ ହେଉଥିବାରୁ ନବସମ୍ବାଦ ଲେଖିଥିଲେ—'ଏହି ଚାନ୍ଦା ଟଙ୍କାରେ କଟକରେ ଗୋଟିଏ ଟେକନିକାଲ ସ୍କୁଲ କରିବାକୁ ଶ୍ରୀବାବୁ ମହାନନ୍ଦ ଗୁପ୍ତ ପ୍ରସ୍ତାବ କରିଥିଲେ, କିନ୍ତୁ ଅନେକ ତର୍କ ବିତର୍କ ପରେ ତାହାଙ୍କର ପ୍ରସ୍ତାବ ଅଗ୍ରାହ୍ୟ କରାଗଲା । ଟେକ୍‌ନିକାଲ ସ୍କୁଲ ନ ହୋଇ ଷ୍ଟୁୟାର୍ଟ ସାହେବଙ୍କ ପ୍ରସ୍ତାବମତେ ସହରରେ ଗୋଟିଏ ସାଧାରଣଙ୍କ ସକାଶେ ଉଦ୍ୟାନ ହେବାର ଧାର୍ଯ୍ୟ ହେଲା । ଏପରି ଉଦ୍ୟାନରେ ଜନସାଧାରଣଙ୍କର ଯେ କି ବିଶେଷ ଉପକାର ହେବ, ତାହା ଆମ୍ଭମାନଙ୍କର ସାମାନ୍ୟ ବୁଦ୍ଧିର ଅଗୋଚର । ଏଥିରେ ଓଡ଼ିଶା-ବାସୀଙ୍କର କୌଣସି ଉପକାର ହେବ ନାହିଁ । ଏ ଶ୍ୱେତାଙ୍ଗମାନଙ୍କ ଲୀଳାଭୂମି ହେବ । କମିଟିରେ ଏ ପ୍ରସ୍ତାବ ଉତ୍ତମ ହୋଇ ନାହିଁ । ଟେକନିକାଲ ସ୍କୁଲ ହୋଇଥିଲେ ଦେଶର ଅନେକ ମଙ୍ଗଳ ସାଧନ ହୋଇଥାନ୍ତା । ଓଡ଼ିଶାର ବର୍ତ୍ତମାନ ଅବସ୍ଥା ଓ ଅଭାବ ବୁଝି କାର୍ଯ୍ୟ କରିବା ଉଚିତ' । ⊥

* ନବସମ୍ବାଦ—୨ । ୬ । ୧୮୮୭

⊥ ନବ ସମ୍ବାଦ—୩୦ । ୧ । ୧୮୮୭

ସେକାଳର ଗୋରା ହାକମମାନଙ୍କ ବିରୁଦ୍ଧରେ ପରାଧୀନ ଉତ୍କଳର ଏକ ସାପ୍ତାହିକ ପତ୍ରିକା ସମାଲୋଚନା କରି ଯେଉଁ ସ୍ୱଦେଶାନୁରାଗ ଓ ସାହସିକତାର ପରିଚୟ ଦେଇଅଛନ୍ତି, ଆଜିକାଲି ସରକାରୀ ଉଚ୍ଛୃଙ୍ଖଳ ଆଡ଼ମ୍ବର ବିରୁଦ୍ଧରେ ସେହି ସାହସ ଓ ବିଚକ୍ଷଣତା ସମ୍ଭବ କି ନା ବିଚାରିବାର କଥା ।

ଉପାଧିଲାଳସୀ ପଦସ୍ଥ ବ୍ୟକ୍ତିମାନେ କିପରି ନିଜର ଭୁଲି ସରକାରୀ କଳର ତୋଷାମଦ କରନ୍ତି, ସ୍ୱାଧୀନ ଭାରତରେ ତାହାର ଦୃଷ୍ଟାନ୍ତ ବିରଳ ନୁହେ । ସରକାରୀ ସାହାଯ୍ୟ ଏବଂ ପୃଷ୍ଠପୋଷକତା ପାଇଁ ଆଜିକାଲି ମଧ୍ୟ ପ୍ରତିଯୋଗିତା ଲାଗିଅଛି । ବ୍ୟକ୍ତିଗତ ସ୍ୱାର୍ଥପାଇଁ ଏ ଯୁଗର ବହୁ ପ୍ରତିଷ୍ଠିତ ଲୋକ ଯେ କୌଣସି ହୀନ କାର୍ଯ୍ୟ କରିବାକୁ ମଧ୍ୟ ପଶ୍ଚାତ୍‌ପଦ ନୁହନ୍ତି । ମାତ୍ର ସୁଦୃଢ଼ ଇଂରେଜ ଶାସନ କାଳରେ ଉପାଧିପ୍ରିୟ ବ୍ୟକ୍ତି ନିଶ୍ଚୟ ଥିଲେ । ମାତ୍ର ସେମାନେ କିପରି ବିଜାତିପ୍ରିୟ ଏବଂ ଦେଶଦ୍ରୋହୀ ବୋଲି ସମାଲୋଚିତ ହୋଇଛନ୍ତି, ତା'ର ମଧ୍ୟ ଉଦାହରଣର ଅଭାବ ନାହିଁ । ଏହିମାନଙ୍କୁ ବ୍ୟଙ୍ଗ କରି ନବସମ୍ବାଦ ଲେଖିଥିଲେ—'ଧନ୍ୟରେ ବିଧାତା ! ତୁ କି ନ ଦେଖାଉ । ଭାରତ ସନ୍ତାନମାନେ ଅପମାନ ଭୁଲିଲେ । ସତ୍ୟାସତ୍ୟ ବିଚାର ଛାଡ଼ିଲେ । ଅସମ୍ଭବକୁ ସମ୍ଭବ କଲେ, ମନର ନୀଚତା, ଏବଂ ଅସାରତା ପ୍ରକାଶ କଲେ । ଏଥିଁ ବଳି ଆଉ କି ଦୁଃଖ ଆଉ ଆଶ୍ଚର୍ଯ୍ୟ କଥା ଅଛି । × × ଏହି ଯୋଗୁସିନା ଆମ୍ଭମାନଙ୍କୁ ଶ୍ୱେତାଙ୍ଗମାନେ 'କାଲା ଆଦ୍‌ମି' ବୋଲି ଘୃଣା କରୁଅଛନ୍ତି ଏବଂ ଆମ୍ଭମାନଙ୍କ କଥାର ଅସାରତା ପ୍ରମାଣ କରୁଅଛନ୍ତି । × × × ଦେଶର ଏ ଅବସ୍ଥା ଅତ୍ୟନ୍ତ ଶୋଚନୀୟ । ଶିକ୍ଷିତ ଏବଂ ସଭ୍ୟ ବ୍ୟକ୍ତିମାନେ ଏପରି ଅକାର୍ଯ୍ୟକର କଥାରେ ଲିପ୍ତ ହୋଇଅଛନ୍ତି ଦେଖି ଅତ୍ୟନ୍ତ ଦୁଃଖ ହେଉଅଛି । *

କେବଳ ସେତିକି ନୁହେଁ, ଶିକ୍ଷିତ ବ୍ୟକ୍ତିମାନେ ନାନା ପ୍ରକାର ଅର୍ଥନୈତିକ କାର୍ଯ୍ୟରେ ଲିପ୍ତ ରହୁଥିଲେ । ମଦ୍ୟପାନ ସେମାନଙ୍କର ଶିକ୍ଷାଭିମାନର ଏହି ପ୍ରକାର ଅଳଙ୍କାର ଥିଲା କହିଲେ ଚଳେ । ଜୁବୁଲି ଉତ୍ସବ ଉପଲକ୍ଷେ କତିପୟ ସମ୍ଭ୍ରାନ୍ତ ବ୍ୟକ୍ତି କୁତ୍ସିତ ବେଶ୍ୟାନାଚର

* ନବସମ୍ବାଦ—୭ । ୨ । ୧୮୮୭

ଆୟୋଜନ କରିଥିବାରୁ ନବସମ୍ବାଦ କଡ଼ା ସମାଲୋଚନା କରିଥିବା ଜଣାଯାଏ । ※

ମୁଷ୍ଟିମେୟ ଶିକ୍ଷିତ ବ୍ୟକ୍ତିମାନଙ୍କ ବ୍ୟବହାରରେ ସାମାଜିକ ଜୀବନ କଳୁଷିତ ହୋଇ ପଡ଼ୁଥିଲା । ସଂସ୍କାର ଓ ସଭ୍ୟତା ନାମରେ ସେମାନେ ନାନା ଉଚ୍ଛୃଙ୍ଖଳ କାର୍ଯ୍ୟରେ ଲିପ୍ତ ରହୁଥିଲେ । ସାମାଜିକ ଜୀବନର ଏ ନୈତିକ ଓ ଅଧଃପତନରେ ଜାଣିଥିବାମାନେ କ୍ଷୁବ୍ଧ ହୋଇଥିବା ତତ୍କାଳୀନ ଆଲୋଚନାରୁ ପ୍ରମାଣିତ ହୁଏ ।

ସେହି ସମୟର ଦୋଳଯାତ୍ରା ଉତ୍ସବ ଉପଲକ୍ଷେ କପରି ଅମାଙ୍ଗଳିକ କାର୍ଯ୍ୟମାନ ଆୟୋଜିତ ହୋଇଥିଲା, ତାହା ଆଲୋଚିତ ହୋଇଛି— ଦୋଳଯାତ୍ରା ଭାରତବର୍ଷର ଗୋଟିଏ ପ୍ରଧାନ ପର୍ବ । ଆବାଳବୃଦ୍ଧବନିତା ଏ ପର୍ବରେ ଆନନ୍ଦୋନ୍ମତ୍ତ । ସମସ୍ତଙ୍କ ମୁଖ ହାସ୍ୟପୂର୍ଣ୍ଣ; କିନ୍ତୁ ଏ ଆନନ୍ଦରେ ସୁଖ ନାହିଁ । କାରଣ ଏହା ନିଷ୍ପାପ ନୁହଇ । ଆଜିକାଲି ପ୍ରତ୍ୟେକ ଶୁଭ-ଦିନରେ ପ୍ରତ୍ୟେକ ଉତ୍ସବରେ ଇନ୍ଦ୍ରିୟ-ବିଳାସ ପ୍ରିୟତା ଅଧିକ ପରିମାଣରେ ଲକ୍ଷିତ ହୁଏ । କୃତବିଦ୍ୟ ଲବ୍ଧପ୍ରତିଷ୍ଠ ବିଜ୍ଞ ବ୍ୟକ୍ତିମାନେ ମଧ୍ୟ ଏ ବିଳାସପ୍ରିୟତା ପାପରୁ ମୁକ୍ତ ନୁହନ୍ତି । କହିବାକୁ ଗଲେ ସେହିମାନଙ୍କ ଦଳରେ ଏ ରୋଗଟା ସଂକ୍ରାମକ । ଶୁଭଦିନମାନଙ୍କରେ ପ୍ରାୟ ମଜଲିସ ହୁଅଇ ଏବଂ ଏହି ସବୁ ମଜଲିସ୍‌ରେ ପାପର ଭୀଷଣ ଅବତାର ବାରାଙ୍ଗନା ମୂର୍ତ୍ତି ବିରାଜମାନ । ବାରାଙ୍ଗନାର କୁଟିଳ ଭ୍ରୂଭଙ୍ଗୀ, ବିଷପୂର୍ଣ୍ଣ ମୃଦୁହାସ ଏବଂ ଘୃଣିତ ଅଙ୍ଗଭଙ୍ଗୀ ପୃଥିବୀରେ କି ଅମଙ୍ଗଳ ନ କରେ । ଅସଂଖ୍ୟ ଲୋକ ଏହି ରାକ୍ଷସୀର କବଳରେ ପଡ଼ି ଅପାର କ୍ଲେଶ ଲଭି ଅଛନ୍ତି ଏବଂ ମଧ୍ୟ ଲଭୁ ଅଛନ୍ତି । ତଥାପି ଲୋକେ ଏ କରାଳରୂପିଣୀ-ଚରଣରେ ସ୍ୱସର୍ବସ୍ୱ ଓ ଆପଣାକୁ ବଳି ଦେବାରେ ବିରତ ହେଉ ନାହାନ୍ତି । ⊥

ଏ ତ ଗଲା ସେ କାଳର ସମାଜର ଏକ କରୁଣ ଚିତ୍ର । ସେତେବେଳେ ଦେଶର ଅର୍ଥନୈତିକ ଅବସ୍ଥା ଆହୁରି ଅନୁନ୍ନତ ଅବସ୍ଥାରେ ଥିଲା । ଇଂରେଜ

※ ନବସମ୍ବାଦ—୨୦ । ୨ । ୧୮୮୮

⊥ ନବ ସମ୍ବାଦ—୧୭ । ୩ । ୧୮୮୭

ଶାସନର ଏ ଦେଶକୁ ଏକ ପ୍ରଧାନ ଦାନ ହେଉଛି ରେଲ ଲାଇନ ଜରିଆରେ ସମଗ୍ର ଦେଶକୁ ସଂଯୁକ୍ତ କରିବା । ଏହା ଫଳରେ କେବଳ ଦେଶର ଐକ୍ୟ ଏବଂ ଏକ ମହାଭାରତୀୟ ଜାତୀୟତା ସମ୍ଭବ ହେବା ସଙ୍ଗେ ସଙ୍ଗେ ପ୍ରାନ୍ତୀୟ ତଥା ଆନ୍ତର୍ଦେଶୀୟ ଖବରର ଆଦାନ ପ୍ରଦାନ ଅଧିକ ସହଜ ଓ ସୁଗମ ହୋଇଅଛି । ମାତ୍ର ଏଠାରେ ଯେଉଁ ସମୟର କଥା ଆଲୋଚନା କରାଯାଉଅଛି, ସେତେବେଳେ ଓଡ଼ିଶାରେ ରେଳଲାଇନ ପଡ଼ି ନ ଥିଲା ଏବଂ ଅନ୍ୟାନ୍ୟ ପ୍ରାନ୍ତ ସହିତ ସମ୍ପର୍କ ରକ୍ଷା କରିବା ଅତ୍ୟନ୍ତ ସହଜ ବ୍ୟାପାର ନ ଥିଲା । ରାଜଧାନୀ କଲିକତା ସହିତ ଓଡ଼ିଶାବାସୀ ଷ୍ଟିମର ସାହାଯ୍ୟରେ ସମୁଦ୍ର ପଥରେ ସମ୍ପର୍କ ରକ୍ଷା କରୁଥିଲେ । ଆଜିକାଲି ପରି ସେତେବେଳେ ସମୁଦ୍ରପଥ ଏତେ ନିରାପଦ ନ ଥିଲା ଏବଂ ଉନ୍ନତ ଧରଣର ବାଷ୍ପୀୟ ପୋତ ଉଦ୍ଭାବିତ ହୋଇ ନ ଥିଲା । ତେଣୁ ସମୁଦ୍ର ପଥରେ ବାରମ୍ବାର ଏହି ପୋତଗୁଡ଼ିକ ଝଡ଼ବତାସ ଏବଂ ନାନା ପ୍ରାକୃତିକ ବାଧା ବିପଦର ସମ୍ମୁଖୀନ ହୋଇ ଧ୍ୱଂସମୁଖରେ ପଡ଼ୁଥିଲେ ଏବଂ ଅସଂଖ୍ୟ ଜଳଯାତ୍ରୀ ମୃତ୍ୟୁବରଣ କରୁଥିଲେ । ଉତ୍କଳ-ପ୍ରାନ୍ତରେ ରେଳଲାଇନ ନିର୍ମିତ ନ ହେଲେ ତାହାର ଉନ୍ନତି ହୋଇପାରିବ ନାହିଁ ବୋଲି ଉତ୍କଳ ସଭାର ଗୋଟିଏ ଅଧିବେଶନ ପ୍ରସ୍ତାବ ଗ୍ରହଣ କରି ପୁରୀ ବେନାରସ ରେଳପଥ ନିର୍ମାଣ ପାଇଁ ସରକାର ତୁରନ୍ତ ଧ୍ୟାନ ଦିଅନ୍ତୁ ବୋଲି ଦାବି କରା ଯାଇଥିଲା । ※ ସେହି ସଂଖ୍ୟାରେ ଅନ୍ୟ ଏକ ସମ୍ବାଦରେ ପ୍ରକାଶ ପାଇଛି ଯେ, ସମୁଦ୍ରରେ ପ୍ରବଳ ଝଡ଼ ତୋଫାନ ଫଳରେ 'ସର୍ଜନ ଲରେନ୍ସ' ନାମକ ଜାହାଜ ବୁଡ଼ିଯାଇ ୭୫୦ ଜଣ ଯାତ୍ରୀ ମୃତ୍ୟୁ ବରଣ କରିଥିଲେ । ଦେଶରେ ରାସ୍ତାଘାଟ ନିରାପଦ ନ ଥିଲା । ପୁରୁଷୋତ୍ତମ କ୍ଷେତ୍ର ଉଦ୍ଦେଶ୍ୟରେ ଭାରତର ବିଭିନ୍ନ ପ୍ରାନ୍ତର ଅସଂଖ୍ୟ ଯାତ୍ରୀ ଓଡ଼ିଶାକୁ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ଚାଲି ଚାଲି ଆସୁଥିଲେ । ସେମାନଙ୍କପାଇଁ ଏକମାତ୍ର ପଥ ଥିଲା ଜଗନ୍ନାଥ ସଡ଼କ । ବହୁଦିନ ରାସ୍ତାକଡ଼ରେ ଅସ୍ୱାସ୍ଥ୍ୟକର ପରିସ୍ଥିତିରେ ଦିନଯାପନ କରି ଯାତ୍ରୀମାନେ ନାନା ରୋଗରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରୁଥିଲେ । ସେମାନଙ୍କ ମଧ୍ୟରେ ବେଳେ ବେଳେ ହଇଜା ବ୍ୟାପୁଥିଲେହେଁ ଉପଯୁକ୍ତ ଚିକିତ୍ସାର

---

※ ନବ ସମ୍ବାଦ - ୯-୬-୧୮୮୭

କୌଣସି ବ୍ୟବସ୍ଥା ନ ଥିଲା । ତେଣୁ, ଏହି ଯାତ୍ରୀମାନେ ରାସ୍ତା କଡ଼ରେ ମରିବା ସଙ୍ଗେ ସଙ୍ଗେ ସେମାନଙ୍କ ସଂକ୍ରମଣଜନିତ ବ୍ୟାଧି ନିକଟବର୍ତ୍ତୀ ଜନବସତିରେ ବ୍ୟାପ୍ତ ହୋଇ ବହୁପ୍ରାଣୀକୁ ମହାପଥର ଯାତ୍ରୀ କରାଉଥିଲା । ରାସ୍ତାକଡ଼ରେ ବହୁଦିନ ପର୍ଯ୍ୟନ୍ତ ଶବ ପଡ଼ି ରହୁଥିଲେ ହେଁ ତାହାକୁ ଉଠାଇ ନେବାପାଇଁ କୌଣସି ସରକାରୀ ବ୍ୟବସ୍ଥା ହେଉ ନଥିଲା । ଏଥିପାଇଁ ତୁରନ୍ତ ବ୍ୟବସ୍ଥା କରିବାକୁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରାଯାଇଛି । ※

'ନବସମ୍ବାଦ' ଏକ ସାପ୍ତାହିକ ପତ୍ରିକା ହୋଇଥିଲେହେଁ ଏଥିରେ ଧାରାବାହିକ ଭାବରେ ଓଡ଼ିଆ ସାହିତ୍ୟର ଚର୍ଚ୍ଚା ହେଉଥିଲା ଏବଂ ପ୍ରକାଶିତ ପୁସ୍ତକାବଳୀର ସମାଲୋଚନା ପ୍ରକାଶ ପାଉଥିଲା । ଏକାଧିକ ସଂଖ୍ୟାରେ 'ତାଳଚେର ଏବଂ ବାମଣ୍ଡା' ଶୀର୍ଷକ ଭ୍ରମଣକାହାଣୀ ପ୍ରକାଶିତ ହୋଇଥିଲା । ସାମୟିକ ରାଜନୀତି, ସଂସ୍କୃତି ଏବଂ ନୀତିବିଷୟକ ପ୍ରବନ୍ଧ ଓ ଆଲୋଚନା ମଧ୍ୟ ପତ୍ରିକାର କଳେବର ମଣ୍ଡନ କରୁଥିଲା । ବେଳେ ବେଳେ ନାନା ଦେଶପ୍ରେମ-ବ୍ୟଞ୍ଜକ କବିତା ମଧ୍ୟ ପତ୍ରିକାରେ ସ୍ଥାନ ପାଉଥିଲା । 'ନବସମ୍ବାଦ' ମାତ୍ର ଏକବର୍ଷର ଜୀବନକାଳ ମଧ୍ୟରେ ଯେଉଁ କେତେକ ଓଡ଼ିଆ ପୁସ୍ତକର ପରିଚୟ ଦେଇଅଛନ୍ତି, ସେମାନଙ୍କ ମଧ୍ୟରେ ସଦାଶିବ ପ୍ରହରାଜଙ୍କ କାକୂକ୍ତି କଳିକା, ରାମ କୃଷ୍ଣ ସାହୁଙ୍କ ସରଳ ଶରୀରଶିକ୍ଷା, ଲଳିତ ମୋହନ ଚକ୍ରବର୍ତ୍ତୀଙ୍କ ଉତ୍କଳଭୂମି, ବୈକୁଣ୍ଠ ମହାପାତ୍ରଙ୍କ 'ଖେଳ କଣ୍ଟକ' ଏବଂ ଏମାନଙ୍କ ଛଡ଼ା ଚଣ୍ଡୀ, ସଂସାର ଭାଗବତ, କୋଷ୍ଠି ବ୍ରହ୍ମାଣ୍ଡସୁନ୍ଦରୀ, ପାରିବାରିକ-ଧାତ୍ରୀ ଶିକ୍ଷା ଅଳଙ୍କାରଚନ୍ଦ୍ରିକା, ଅବନା-ରସତରଙ୍ଗ, ଷାରଚରିତ, ପରାଶରସଂହିତା, ଝାଡାକଇ ରୋଗର ଦେଶୀ ଓ ଡାକ୍ତରି ଚିକିତ୍ସା ପ୍ରଭୃତି ପ୍ରଧାନ । ପ୍ରସିଦ୍ଧ 'ବାବାଜୀ' ନାଟକପ୍ରଣେତା ଜଗନ୍ମୋହନ ଲାଲ୍‌ଙ୍କ ସତୀ ନାଟକର ବିସ୍ତୃତ ଆଲୋଚନା ଏବଂ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଏବଂ ରାଧାନାଥଙ୍କ ରଚନା ସମ୍ପର୍କରେ ବିଶ୍ଳେଷଣାତ୍ମକ ଆଲୋଚନା ମଧ୍ୟ ଦେଖିବାକୁ ମିଳେ ।

---

※ ନବ ସମ୍ବାଦ—୧୪ । ୭ । ୧୮୮୭

ଅର୍ଥାଭାବରୁ 'ନବସମ୍ବାଦ' ସ୍ୱତନ୍ତ୍ର ଭାବରେ ବଞ୍ଚି ରହିବା ସମ୍ଭବ ନ ହେବାରୁ ସେତେବେଳେ ବାଲେଶ୍ୱରରୁ ପ୍ରକାଶ ପାଉଥିବା "ଓଡ଼ିଆ" ସାପ୍ତାହିକ ସହିତ ସାମିଲ ହୋଇ 'ଓଡ଼ିଆ ନବସମ୍ବାଦ' ନାମରେ ପ୍ରକାଶ ପାଇବ ବୋଲି 'ନବସମ୍ବାଦର ଅନ୍ତିମ ବାର୍ତ୍ତାରେ ଘୋଷଣା କରାଯାଇଥିଲା । * ତେବେ ଏହି ସ୍ୱଳ୍ପକାଳର ପ୍ରକାଶନୀ ମଧ୍ୟରେ ନବସମ୍ବାଦ ସେ କାଳର ରାଜନୀତି, ସମାଜ ଏବଂ ଅର୍ଥନୈତିକ ଜୀବନର ଯେଉଁ ପରିଚୟ ପ୍ରଦାନ କରେ, ଆଧୁନିକ ଯୁଗର ଇତିହାସ-ଆଲୋଚକମାନଙ୍କୁ ତାହା ଯେ ଯଥେଷ୍ଟ ଆଲୋକପାତ କରିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

— ——

* ନବ ସମ୍ବାଦ—୨୧ । ୧୦ । ୧୮୮୭

# ଗଣବିପ୍ଳବ

# ଜାତୀୟ ଚେତନାର ଆଦିପର୍ବ

ଓଡ଼ିଶାର ପାଠୁଆ ସଂସାରରେ ଧରଣୀଧର କାହାରି ଅପରିଚିତ ନୁହେଁ । କାରଣ ଆଧୁନିକ ଓଡ଼ିଆ ସାହିତ୍ୟର ବ୍ୟାସକବି ଫକୀରମୋହନ ସେନାପତି ନିଜର ଆତ୍ମଚରିତରେ ଧରଣୀଧରଙ୍କୁ ସ୍ଥାନ ଦେଇ ତାହାଙ୍କୁ ଅମର କରି ଯାଇଛନ୍ତି । ଯେଉଁମାନେ ଫକୀରମୋହନଙ୍କ ଆତ୍ମଚରିତ ପଢ଼ିବାର ସୁଯୋଗ ଲାଭ କରି ନାହାନ୍ତି; ସେମାନେ ପିଲା ବୟସରେ ପାଠ୍ୟ ପୁସ୍ତକରେ ଫକୀରମୋହନଙ୍କ ବିଷୟ ପଢ଼ିଲାବେଳେ ମହାରାଣୀ ପୁତ୍ର ଧରଣୀଧର ପାଇଁ ପାନ ମଗାଇ ପଠାଇବା ନାମରେ କପରି ସେନାପତି ମହାଶୟ ପୁଲିସ ଫୌଜ ମଗାଇ ପଠାଇଥିଲେ, ତାହା ନିଶ୍ଚୟ ପଢ଼ିଛନ୍ତି । ୧୮୯୧ ମସିହା ମେ ତା ୧୭ରିଖ ଦିନ ସେ ଚିଠିଟି ଫକୀରମୋହନ ଲେଖିଥିଲେ । ତାହା ଏପରି—"ଭୋଳାନାଥ ଖମାରିଆ ଜାଣିବୁ—ମହାରାଣୀ ପୁତ୍ରଙ୍କ ସକାଶେ ନିତାନ୍ତ ଦରକାର—ଅତିଶୀଘ୍ର ଶହେ ହେଲେ ପାନ ଦୁଇଶ ଗୁଆ ପଠାଇବୁ । ଉତ୍ତର ପଟୁ ମାହାରି କରି ଆଖୁବାଡ଼ିକୁ ଶୀଘ୍ର ପାଣି ବୁହାଇବୁ । ନୋହିଲେ ଆଖୁବାଡ଼ି ବିନାଶ ଯିବ ବୋଲି ଜାଣିବୁ ।"

## କେନ୍ଦୁଝରରେ ପ୍ରଜା ବିଦ୍ରୋହ

ଉପରୋକ୍ତ ଚିଠିଟି ଇଂରେଜ ସରକାରଙ୍କ କର୍ମଚାରୀଗଣ ଭିନ୍ନ ଅର୍ଥ କରିଥିଲେ ଏବଂ କେନ୍ଦୁଝର ବିଦ୍ରୋହ ଦମନ ପାଇଁ ତୁରନ୍ତ ଶସ୍ତ୍ରଧାରୀ ସୈନ୍ୟ ପଠାଇ ଅତି ନିର୍ମମ ଭାବରେ ତାହା ଦମନ କରିଥିଲେ । ଏହି ବିଦ୍ରୋହ ସମ୍ପର୍କରେ ଫକୀରମୋହନ ଲେଖିଥିଲେ—"ମୋହର କେଉଁଝର ମେନେଜରୀର ଚତୁର୍ଥ ବର୍ଷ କେଉଁଝରରେ ଭୂୟାଁଙ୍କର ପ୍ରଜା ବିଦ୍ରୋହ ଆରମ୍ଭ

ହେଲା । ସନ ୧୮୯୧ ମସିହାରେ ଏହି ବିଦ୍ରୋହ ଉପସ୍ଥିତ ହୋଇଥିଲା ⁕ ଏହି ସମୟରେ ଫକୀରମୋହନ କେଉଁଝର ରାଜ୍ୟର ଆନନ୍ଦପୁର ଇଲାକାର ଭାରପ୍ରାପ୍ତ କର୍ମଚାରୀ ଥିଲେ । ପ୍ରଜାମାନେ ବିଦ୍ରୋହ କରିବାରୁ କେନ୍ଦୁଝର ରାଜା ଇଂରେଜମାନଙ୍କର ସାହାଯ୍ୟ ଭିକ୍ଷା କରିଥିଲେ । ଏହି କାର୍ଯ୍ୟରେ ତାଙ୍କର କର୍ମଚାରୀ ଫକୀରମୋହନ ନାନା କୂଟନୀତି ପ୍ରୟୋଗ କରି ଇଂରେଜ ସରକାରଙ୍କୁ ରାଜାଙ୍କ ସପକ୍ଷରେ ବୁଝାଇ ପାରିଥିଲେ । କାରଣ କେନ୍ଦୁଝର ରାଜା ସୁଶାସକ ନ ଥିଲେ । ତାଙ୍କର ଅତ୍ୟାଚାରର କାହାଣୀ ଚତୁର ଏବଂ କୁଶଳୀ ଇଂରେଜ କର୍ମଚାରୀମାନଙ୍କୁ ଅବିଦିତ ନ ଥିଲା । ତେଣୁ ସାହାଯ୍ୟ ଭିକ୍ଷା ଉଦ୍ଦେଶ୍ୟରେ ଫକୀରମୋହନ କଟକରେ ଗଡ଼ଜାତ ବିଭାଗର ସୁପରିଣ୍ଟେଣ୍ଡେଣ୍ଟ ଟୟୁନବୀ ସାହେବଙ୍କୁ ପ୍ରଥମେ ସାକ୍ଷାତ କଲାବେଳେ ସାହେବ କହିଥିଲେ—"ଆଚ୍ଛାହେଲା, ଭଲ ହେଲା, ରାଜା ଯେପରି ଅତ୍ୟାଚାରୀ, ଗଭର୍ଣ୍ଣମେଣ୍ଟଙ୍କ ହୁକୁମ ଅମାନ୍ୟକାରୀ, ସେହିପରି ଦଣ୍ଡ ଭୋଗ କରନ୍ତୁ । ଆମ୍ଭେ କିଛି ମାତ୍ର ସାହାଯ୍ୟ କରିବୁ ନାହିଁ ।" ⊥

ମାତ୍ର ଫକୀରମୋହନ ଥିଲେ ନଛୋଡ଼ବନ୍ଧା । ସେ ଯେ କୌଣସି ପ୍ରକାରେ ଟୟୁନବୀ ସାହେବଙ୍କୁ ରାଜାଙ୍କ ସପକ୍ଷରେ ସାକ୍ଷିତ କରି ପାରିଥିଲେ । ରାଜାଙ୍କ ସପକ୍ଷରେ ଏବଂ କେନ୍ଦୁଝର ବିଦ୍ରୋହ ସମ୍ପର୍କରେ ଫକୀରମୋହନ ଯାହା ଲିପିବଦ୍ଧ କରିଯାଇ ଅଛନ୍ତି, ତାହା କେତେକାଂଶ ସତ୍ୟର ଅପଳାପ ପରି ମନେ ହୁଏ ।

## ବିଦ୍ରୋହ ଓ ମେଳି !

ଫକୀରମୋହନ 'କେନ୍ଦୁଝର ବିଦ୍ରୋହ' ବୋଲି ପ୍ରଥମେ ସ୍ୱୀକାର କରିଥିଲେହେଁ ତାହାକୁ ଏକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ମେଳି ବୋଲି ବର୍ଣ୍ଣନା କରି କାଳ କାଳ ପାଇଁ ଏକ ନ୍ୟାୟୋଚିତ ଜନ ଆନ୍ଦୋଳନ ଓ ତାହାର ନେତା ଧରଣୀଧରର କଳଙ୍କିତ ଚିତ୍ର ପ୍ରଦାନ କରି ଯାଇଅଛନ୍ତି । କେନ୍ଦୁଝର ବିଦ୍ରୋହରେ ଆନନ୍ଦପୁର ଇଲାକାର ଲୋକେ ଅଂଶ ଗ୍ରହଣ କରୁ ନାହାନ୍ତି

---

⁕ ଆତ୍ମଚରିତ ପ୍ରଥମ ସଂସ୍କରଣ-୧୯୦୭ ପୃ୧୧୯

⊥ ଏଜନ୍......ପୃ୧୨୨

ଏବଂ ସେହି ରାଜ୍ୟର ପଶ୍ଚିମାଞ୍ଚଳର ଯାବତ ଭୂୟାଁ ପ୍ରଜା ଏହି ଆନ୍ଦୋଳନରେ ଅଂଶ ଗ୍ରହଣ କରିଛନ୍ତି ବୋଲି ସେ ଟେଯୃନବାସାହେବଙ୍କୁ ଧାରଣା ଦେଇ ବୁଝାଇ ଦେଇଥିଲେ । ପୁନଶ୍ଚ କେନ୍ଦୁଝର ରାଜା ଅତ୍ୟାଗୃହୀ ନୁହନ୍ତି ଏବଂ ତାଙ୍କର ଅତ୍ୟାଗ୍ଚର ସମ୍ପର୍କରେ କ ପ୍ରଜା, କ ନିଃସମ୍ପର୍କୀୟ ବାହାର ଲୋକ କେହି ହେଲେ ଗୋଟିଏ ସୁଦ୍ଧା ପ୍ରମାଣ ଦେଇ ପାରିବେ ନାହିଁ ବୋଲି ସେ ଦୃଢ଼ମତ ଘୋଷଣା କରିଥିଲେ । କେବଳ ଭୂୟାଁ ଜାତିଯୁ ଲୋକେ ଗୋଲଯୋଗ ଆରମ୍ଭ କରିଅଛନ୍ତି । ସେନାପତିଙ୍କ ମତରେ ସେମାନେ ଦୁଷ୍ଟ ପ୍ରକୃତିର ଲୋକ ଏବଂ ମେଳି କରିବା ସେମାନଙ୍କର ସ୍ୱଭାବ । ✲

## ସେନାପତିଙ୍କ ମତରେ ବିଦ୍ରୋହର କାରଣ

ଫକୀରମୋହନ ଭୂୟାଁ ଜାତିକୁ ମେଳିଆ ବୋଲି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ତାଙ୍କ ଆତ୍ମଚରିତରେ ଏହି ବିଦ୍ରୋହ ସମ୍ପର୍କରେ ଯେଉଁ କାରଣମାନ ବଖାନ କରିଛନ୍ତି, ତାହା ମଧ୍ୟ ସତ୍ୟର ପରିପୂରକ ହେଲାପରି ମନେହୁଏ ନାହିଁ । ଏହି ମେଳି ସମ୍ପର୍କରେ ସେ ଦୁଇଗୋଟି କାରଣ ଦର୍ଶାଇ ଅଛନ୍ତି । (ପ୍ରଥମ) ଭୂୟାଁମାନଙ୍କର ଏପର୍ଯ୍ୟନ୍ତ ଏକ ଅନ୍ଧବିଶ୍ୱାସ ଥିଲା ଯେ, ପ୍ରକୃତରେ କେନ୍ଦୁଝର ରାଜ୍ୟଟା ସେମାନଙ୍କର । ସେମାନେ ଇଚ୍ଛାକଲେ ପୂରୁଣା ରାଜାଙ୍କୁ ନିଯୁକ୍ତ କରିବାର ଅଧିକାର ସେମାନଙ୍କର ଅଛି । ଫକୀରମୋହନ ଏକଥା ସ୍ୱୀକାର କରିନଥିଲେହେଁ ଏହି ପ୍ରଥମ ଯୁକ୍ତିରୁ ଧାରଣା କରାଯାଇ ପାରେ ଯେ, ଭୂୟାଁମାନେ ପ୍ରଚଳିତ ଶାସନ ବିରୁଦ୍ଧରେ ମତପୋଷଣ କରୁଥିବାରୁ ତାହାର ତୁରନ୍ତ ପରିବର୍ତ୍ତନ କାମନା କରୁଥିଲେ । (ଦ୍ୱିତୀୟ) ବର୍ତ୍ତମାନ ବିଦ୍ରୋହର କାରଣ ହେଲା "ମାଛକାନ୍ଦଣା ଜୋଡ଼" । ଏହାର ଖନନ କାର୍ଯ୍ୟରେ ଭୂୟାଁ ପ୍ରଜାମାନଙ୍କୁ ବେଠିରେ ଧରାଇ ଆଣି କାମରେ ଲଗାଇ ଦିଆଯାଇଥିଲା । ସେମାନଙ୍କ ଉପରେ ଅତ୍ୟାଗ୍ଚରର ସୀମା ନଥିଲା । ତେଣୁ ସେମାନେ ବିଦ୍ରୋହ କରିଥିଲେ । ⊥

---

✲ ଆତ୍ମଚରିତ-ପ୍ରଥମସଂସ୍କରଣ ୧୯୧୭ ପୃ୧୬୨

⊥ ଆତ୍ମଚରିତ, ପ୍ରଥମ ସଂସ୍କରଣ-୧୯୧୭-ପୃ୧୬୪।୧୮

## ମେଳି ନା ବିପ୍ଳବ !

ମୋଟ ଉପରେ ମାଛକାନ୍ଦଣା ଜୋଡ଼ ଖନନ ସମ୍ପର୍କରେ ବେଠି ଜନିତ ଅତ୍ୟାଚାର ଫଳରେ ଭୂୟାଁମାନେ ମେଳି କରିଥିଲେ ବୋଲି ଫକୀରମୋହନଙ୍କ ବିବରଣୀରୁ ଜଣାଯାଏ । କିନ୍ତୁ ଫକୀରମୋହନ ରାଜକର୍ମଚାରୀ ଥିବାରୁ ରାଜାଙ୍କ ସପକ୍ଷରେ ମତପ୍ରକାଶ କରିବା ସ୍ୱାଭାବିକ । ତଥାପି ଆତ୍ମଚରିତରେ ଧରଣୀଧରଙ୍କ ନେତୃତ୍ୱରେ ହୋଇଥିବା ଜନଆନ୍ଦୋଳନକୁ ସେ ଯେପରି ହୀନ ଭାବରେ ଚିତ୍ରଣ କରିଛନ୍ତି, ତାହା ବାସ୍ତବିକ ଦୁଃଖ-ଦାୟକ ।' କାରଣ ତତ୍କାଳୀନ ସାମାଜିକ ଇତିହାସ ଆଲୋଚନା କଲେ ଧରଣୀଧର ଏବଂ କେନ୍ଦୁଝର ବିପ୍ଳବର ମହତ୍ତ୍ୱ ଉପଲବ୍‌ଧି କରିଯାଇଥାଏ ।

୧୮୯୧ ସାଲରେ ଇଂରେଜ ଶାସନ ଏ ଦେଶରେ ସୁପ୍ରତିଷ୍ଠିତ କୌଣସି ପ୍ରକାର ଜନଜାଗରଣକୁ ଶାସନର ସ୍ୱାର୍ଥ ଦୃଷ୍ଟିରୁ ଇଂରେଜ ସରକାର ବରଦାସ୍ତ ନ କରିବା ସ୍ୱାଭାବିକ । ବିଶେଷତଃ ଭାରତ ଶାସନ ପାଇଁ ଇଂରେଜ ସରକାର ରାଜା ମହାରାଜା ଜମିଦାର ଭଳି ବହୁ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀଙ୍କ ଉପରେ ନିର୍ଭର କରୁଥିବାରୁ ସେମାନଙ୍କ ଅନ୍ୟାୟ ଓ ଅତ୍ୟାଚାର ସଂପର୍କରେ ଅବହିତ ହେଲେ ମଧ୍ୟ ଅତ୍ୟନ୍ତ ବାଧ୍ୟ ନ ହେଲେ ସରକାର ସେମାନଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ନ କରିବା ସ୍ୱାଭାବିକ । ତେଣୁ ଧରଣୀଧରଙ୍କ ନେତୃତ୍ୱରେ ଯେଉଁ ଐତିହାସିକ ଗଣବିକ୍ଷୋଭ ଏକଦା ଇଂରେଜ ଶାସକବର୍ଗଙ୍କୁ ମଧ୍ୟ ଥରହର କରାଇ ଦେଇଥିଲା, ତାହାର କରୁଣ ଇତିହାସ ସାଧାରଣ ପାଠକମାନଙ୍କ ଅଜ୍ଞାତ ରହିଗଲା । ଏଥିପାଇଁ ଫକୀରମୋହନଙ୍କ ବିଳକ୍ଷଣ ଲେଖଣୀହିଁ ବହୁ ପରିମାଣରେ ଦାୟୀ । ଗଡ଼ଜାତ ରାଜ୍ୟକୁ ଇଂରେଜ ଶାସିତ ଅଞ୍ଚଳ ସହିତ ତୁଳନା କରି ସାଧାରଣତଃ ଅନ୍ଧାରି ମୂଳକ ବୋଲି କୁହା ଯାଉଥିଲା । ବ୍ୟକ୍ତିଗତ ଶାସନରେ ସ୍ୱେଚ୍ଛାଚାରିତା ଏବଂ ଅତ୍ୟାଚାରରେ ଲୋକେ ଉହଲ ବିକଳ ହେଉଥିଲେ ମଧ୍ୟ ତୁଣ୍ଡ ଖୋଲିବା ପାଇଁ ସେମାନଙ୍କର ଶକ୍ତି ନଥିଲା । ଅଧିକାଂଶ ସମୟରେ ରାଜା-ମାନେ ନିଜର ବିଳାସ ବ୍ୟସନ ପାଇଁ ପ୍ରଜାମାନଙ୍କୁ ନାନା ଭାବରେ ଶୋଷଣ କରୁଥିଲେ । ବେଠି ଜୁଲମ୍‌ର ଇତିହାସ ତ ଅଳ୍ପ ବହୁତ ସାଧାରଣଙ୍କୁ ଜଣା । କେନ୍ଦୁଝର ବିଦ୍ରୋହ ସମୟରେ ତତ୍କାଳୀନ ଓଡ଼ିଶାର ସାମାଜିକ ଏବଂ

ଅର୍ଥନୈତିକ ଜୀବନର କିଞ୍ଚିତ୍ ଆଲୋଚନା କଲେ ବିଦ୍ରୋହ ସମ୍ପର୍କରେ ସ୍ପଷ୍ଟ ଧାରଣା ହୋଇ ପାରିବ । ଫକୀରମୋହନ ଏ ବିଷୟରେ ତାଙ୍କର ଆତ୍ମଚରିତରେ ସମ୍ପୂର୍ଣ୍ଣ ନୀରବ ରହିଛନ୍ତି । ଏ ଦିଗରେ ଶାସକ ଫକୀର ମୋହନଙ୍କର ହୁଏତ କୃତିତ୍ୱ ଥାଇପାରେ, ମାତ୍ର ସାହିତ୍ୟିକ ଏବଂ କବି, ସଂସ୍କାରକ ଏବଂ ଯୁଗବିପ୍ଳବୀ ଫକୀରମୋହନଙ୍କୁ କ୍ଷମା ଦିଆଯାଇ ପାରିବ କି ନାହିଁ, ତାହାହିଁ ବିଚାରିବାର କଥା ।

## ସେକାଳର ସମାଜଚିତ୍ର :

ଓଡ଼ିଶା ହେଉଛି ବଢ଼ି ଓ ମରୁଡ଼ିର ଦେଶ । ବର୍ଷକୁ ବର୍ଷ ପ୍ରକୃତିର ପ୍ରକୋପ ଫଳରେ ଓଡ଼ିଶାବାସୀ ନାନା ଦୁଃଖ କଷ୍ଟ ଭୋଗ କରି ଆସୁଅଛନ୍ତି । ତେବେ ଆଜିକାଲି ଅପେକ୍ଷା ସେ କାଳରେ ଅବସ୍ଥା ଆହୁରି ଭୀଷଣ ଥିଲା । କାରଣ ଦେଶରେ ରାସ୍ତାଘାଟର ସୁବିଧା ନଥିଲା । ଥରେ ଦୁର୍ଭିକ୍ଷ ପଡ଼ିଲେ ଲୋକେ ପୋକ ମାଛି ପରି ମରି ଯାଉଥିଲେ । ଦେଶରେ ଶାସକ ଲୋକମଙ୍ଗଳ ପାଇଁ ଅଧିକ ଧ୍ୟାନ ଦେଉ ନଥିବାରୁ କୌଣସି ପ୍ରକାର ବିକାଶମୂଳକ ଯୋଜନାର ସ୍ୱପ୍ନ ମଧ୍ୟ ସମ୍ଭବ ନଥିଲା । ବିଶେଷତଃ କେନ୍ଦୁଝର ବିଦ୍ରୋହର ମାତ୍ର ବାର ତେରବର୍ଷ ପୂର୍ବରୁ ନଅଙ୍କ ଦୁର୍ଭିକ୍ଷର ପ୍ରାଦୁର୍ଭାବ ଫଳରେ ଓଡ଼ିଶାର ସାମାଜିକ ଜୀବନ ହତଶ୍ରୀ ହେବା ସ୍ୱାଭାବିକ । ମାତ୍ର ସେତିକରେ ପ୍ରକୃତିଦେବୀ ସନ୍ତୁଷ୍ଟ ନଥିଲେ । ସେ କାଳର ଏକ ବିଖ୍ୟାତ ସାପ୍ତାହିକ ପତ୍ରିକା ପାଠକଲେ ଓଡ଼ିଶାର ସେହି ଦୁର୍ଦ୍ଦିନ ଉପରେ କିଞ୍ଚିତ୍ ଆଲୋକପାତ ହୋଇଥାଏ । "ଖୋରଧା, ଅନୁଗୁଳ ବାସୀଙ୍କ ଅନ୍ନକଷ୍ଟ ଶେଷ ନ ହେଉଣୁ କାଳର ଭୀଷଣ ଦୁନ୍ଦୁଭି ପୁଣି ଦୁଇ ତିନି ସ୍ଥାନରେ ବାଜି ଉଠିଲାଣି ! ବାସୁଦେବ ପୁର ଓ ଗୃନ୍ଦବାଲି ଥାନା ଇଲାକାରେ ଅତି ବୃଷ୍ଟି ଓ ବନ୍ୟା ପ୍ରଯୁକ୍ତ ଫସଲ ନଷ୍ଟ ହୋଇ ଯାଇଥିବାରୁ ସେଠା ଅଧିବାସୀମାନେ ଅତ୍ୟନ୍ତ କଷ୍ଟରେ ସମୟାତିପାତ କରୁ ଅଛନ୍ତି । ଏମନ୍ତ କି ଚାଉଳ ସେର ଦୁଇଅଣା ହୋଇଅଛି । ଅନେକ ଏକ ଓଳି ଆହାର ପାଉନାହାନ୍ତି । ଅଧିକା ବ୍ୟକ୍ତିମାନେ ଜାହାଜରେ ଓ ଜଗନ୍ନାଥ ସଡ଼କ ବାଟେ କଲିକତା ପଳାଉଛନ୍ତି । ଭୋଗରାଇ ଓ କମରଦା ପ୍ରଗଣାର ଅବସ୍ଥା ମଧ୍ୟ ଅନେକ ପରିମାଣରେ ତଦ୍ରୂପ ଅଟେ ।" *

* ଓଡ଼ିଆ ଓ ନବସମ୍ବାଦ – ୩।୧୦।୧୭୮୮

"ଧୀରେ ଧୀରେ ଦୁର୍ଭିକ୍ଷ" ଶୀର୍ଷକ ଏକ ଅଗ୍ରଲେଖାରେ ବାଲେଶ୍ୱରରୁ ପ୍ରକାଶିତ ଏହି ସାପ୍ତାହିକ କେନ୍ଦୁଝରର ସମେତ ଅନ୍ୟାନ୍ୟ ଗଡ଼ଜାତ ଅଞ୍ଚଳରେ ମହାରଗ ପଡ଼ିବା କଥା ଉଲ୍ଲେଖ କରିଛନ୍ତି । ସେଥିରୁ ଜଣାଯାଉଛି ଯେ,ଖୋର୍ଦ୍ଧା, ପୁରୀ, କଟକ, ବାଲେଶ୍ୱର, କେନ୍ଦୁଝର, ବାମଣ୍ଡା, ମୟୂରଭଞ୍ଜ ଅନୁଗୁଳ ପ୍ରଭୃତି ସର୍ବାଞ୍ଚଳରେ ଅବସ୍ଥା ଉତ୍କଟ ଆକାର ଧାରଣ କରିଅଛି ଏବଂ ଟଙ୍କାକୁ ଚାଉଳ ଷୋଳସେର ମଧ୍ୟ ମିଳୁନାହିଁ । * ଧାନ ଚାଉଳ ଅଭାବରେ ଅନ୍ୟାନ୍ୟ ଜିନଷ ମଧ୍ୟ ସେହି ଅନୁପାତରେ ଦୁର୍ମୂଲ୍ୟ କିମ୍ୱା ଦୁଃଷ୍ପ୍ରାପ୍ୟ ହୋଇଥିଲା । ଲୋକେ ଅଖାଦ୍ୟ ଖାଇବାରୁ ହଇଜା ଓ ଝାଡ଼ାବାନ୍ତିର ପ୍ରକୋପ ଦେଖା ଦେଇଥିଲା । ସେହି ବିକଳରେ ଲୋକଙ୍କର କି ଅବସ୍ଥା ହୋଇଥିଲା, ତାହା ପତ୍ରିକାର ବିବରଣୀ ପାଠକରି ଜାଣିବା ଅପେକ୍ଷା ତହିଁରେ ପ୍ରକାଶିତ "ଦୁର୍ଭିକ୍ଷ ସଙ୍ଗୀତ" ଶୀର୍ଷକ ଏକ କବିତା ପାଠ କଲେ ତାହାର ଜୀବନ୍ତ ଚିତ୍ର ଚକ୍ଷୁ ସମକ୍ଷରେ ନାଚିଉଠିବ । ସେ ଗୀତଟି ଏହିପରି :—

"ପୁଣି ହେଲାଣି କି ନଅଙ୍କ କାଳ
ପଲ ପଲ ବୁଲୁଛନ୍ତି କାଙ୍ଗାଳ ।
ଥୋକେ ହୋଇ ଯୋଗୀ, ଥୋକେ ବଇରାଗୀ
ଥୋକେ ଝାଡ଼ାବାନ୍ତି ଭଜନ ମାଳ ।
ଉଦର ଦେଖାଇ ଏ ସାହି ସେ ସାହି
ମାଗି ବୁଲୁଛନ୍ତି ଭାତ ଚାଉଳ ।୧।
ମୂଲଆମାନଙ୍କୁ ମୂଲ ମିଳୁନାହିଁ
ବୁଲୁଛନ୍ତି ବହି ଅସ୍ଥି କଙ୍କାଳ ।
କାହିଁ ବଣସାରୁ ଓଲୁଅ କରବା
ଖୋଳୁଛନ୍ତି ବହି ପଡ଼ୁଛି ଝାଳ ।୨।
ଦିଅ ଦିଅ ଧାନ ବୋଲି ପ୍ରତିଦିନ
ରଜନୀ ନ ପାହୁଁ ଉଠୁଛି ଗୋଳ ।
ସାଆନ୍ତଙ୍କ ବଂଶ ଗଡ଼ ମରୁଛନ୍ତି
କେ ଶୁଣୁଛି ମୂଲଆଙ୍କ ବିକଳ ।୩।

---

* ଓଡ଼ିଆ ଓ ନବସମ୍ବାଦ—୩୧।୧୦।୧୮୮୮

ପିତା ପୁତ୍ର ଯହିଁ ନିଶାଖୋର ତହିଁ
ଲଗିଅଛି ଅହର୍ନିଶି କନ୍ଦନ ।
ପିତାକୁ ଛପାଇ ଅଫିମ, ଗଞ୍ଜାଇ
ଖାଏ ପୁଅ ବନ୍ଧାଦେଇ ପିତଳ ।୪।
ଗ୍ରାମେ ଗ୍ରାମେ ଓଲଉଠା ରୋଗ ପଶି
ଶତ ଶତ କରୁଅଛି କବଳ ।
ଘରେ ଘରେ କଣ୍ଟାବାଡ଼ ପଡ଼ିଲାଣି
ଲଭିଲେଣି କାହା ବଂଶ ନିର୍ମୂଳ ।୫।
ଶୁଣ୍ଢି, ତନ୍ତ୍ରୀ, ତେଲି, ଗୁଡ଼ିଆ, ତାମ୍ବୁଳି
ଛାଡ଼ି ନିଜ ନିଜ ବୃତ୍ତି ସକଳ !
କେ ଦେଶ ବିଦେଶ ଗମନ୍ତି ବିରସେ
କେ ବୋଲଇ ପୋଡ଼ିଯାଉ କପାଳ ।୬।
କେତେ କେତେ ଦୁଷ୍ଟ ଜଗି ବାଟଘାଟ
ଲୋକେ ଦେଖି ତହିଁ କରନ୍ତି ଗୋଳ ।
ଗୃହେ ଅଗ୍ନି କେହି ଦିଅନ୍ତି ଲଗାଇ
ସହି ନ ପାରିଣ ପେଟ ବିକଳ ।୭।
ଏତେବେଳେ ଲୁଣ ଦର ହେଲା ଠାଣି,
ନଅ ପଇସାକୁ ଚଉଦ ପଳ ।
କେମନ୍ତେ ବଞ୍ଚିବୁ ଦୁଃଖୀ ପରଜାଏ
କେହି ନ ଶୁଣିଲେ ଆମ୍ଭ ବିକଳ ।୮। ✻

## କେନ୍ଦୁଝର ବିଦ୍ରୋହ ସମ୍ପର୍କରେ କଳ୍ପନା ଜଳ୍ପନା :

ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳ ପରି କେନ୍ଦୁଝରରେ ମଧ୍ୟ ବିଦ୍ରୋହର ମାତ୍ର ବର୍ଷକ ତଳେ ଭୀଷଣ ଅନ୍ନକଷ୍ଟ ପଡ଼ିଥିବାର ପ୍ରମାଣ ମିଳୁଅଛି । ଓଡ଼ିଆ ଓ ନବସମ୍ବାଦର ୧୮୯୧ ମସିହା ମେ ମାସର ୨୦ତାରିଖ ସଂଖ୍ୟାରେ ପ୍ରଥମେ ରାଜା ପ୍ରଜାଙ୍କ ମନାନ୍ତର ସମ୍ପର୍କରେ ସମ୍ବାଦ ପ୍ରକାଶ ପାଇଛି । ପତ୍ରିକା କୌଣସି ନିର୍ଭରଯୋଗ୍ୟ ସମ୍ବାଦ ଶୁଣିବାକୁ ନ ପାଇ

✻ ଓଡ଼ିଆ ଓ ନବସମ୍ବାଦ—୫।୬।୮୯

ନାନା କଳ୍ପନା ଜଳ୍ପନା କରିବା ସ୍ୱାଭାବିକ । ବିଶେଷତଃ ସିଂହଭୂମି ଏବଂ କର୍ପିପଦାରେ ସୁଦ୍ଧା ଅଶାନ୍ତି ଜାତ ହୋଇଅଛି ଏବଂ ଉପରୋକ୍ତ ଅଶାନ୍ତି ଦମନ ପାଇଁ କେତେ ଦେଶୀ ପୋଲିସ କର୍ମଚାରୀ ଘଟଣାସ୍ଥଳକୁ ପ୍ରେରିତ ହୋଇଅଛନ୍ତି । କେନ୍ଦୁଝରରୁ ମ୍ୟାନେଜର ଫକୀରମୋହନ ସେନାପତି ଏବଂ ସ୍ୱୟଂ ରାଜା ସାହେବ ବାଲେଶ୍ୱର ଆସି ଟ୍ୟୁନବି ସାହେବଙ୍କ ସହିତ ସାକ୍ଷାତ କରି ତୁରନ୍ତ ଫେରିଯିବାରୁ ଗୋଳମାଳ ହୋଇଅଛି ବୋଲି 'ନବସମ୍ବାଦ' ଅନୁମାନ କରୁଛନ୍ତି । ତେବେ ପତ୍ରିକା ଅନୁମାନ କରନ୍ତି ଯେ,ସିଂହଭୂମି ସଙ୍ଗେ ସରହଦ ବିବାଦ ଥିବାରୁ ସିଂହଭୂମିର ପ୍ରଜାମାନେ କେନ୍ଦୁଝରସ୍ଥ ଆପଣା ଜାତି ଭାଇଙ୍କ ସଙ୍ଗେ ଯୋଗଦାନ କରି ଏ ପ୍ରକାର କାଣ୍ଡ ଭିଆଇଛନ୍ତି ଏବଂ ଅନ୍ୟ କେତେକଙ୍କ ମତରେ କେନ୍ଦୁଝର ରାଜା ଭୂୟାଁ ପ୍ରଜାଙ୍କ ଉପରେ ବେଠି ଇତ୍ୟାଦିର ଜୁଲମ କରିବାରୁ ସେମାନେ ସିଂହଭୂମିସ୍ଥ ଆପଣା ଜାତି ଭାଇଙ୍କ ସାହାଯ୍ୟ ନେଇ ବିଦ୍ରୋହୀ ହୋଇଅଛନ୍ତି ।

ବିଦ୍ରୋହ ସମ୍ପର୍କରେ କ୍ରମଶଃ ଅତି ବିଚିତ୍ର ସମ୍ବାଦ ପ୍ରକାଶ ପାଉଅଛି । ସେ ଆନ୍ଦୋଳନ ଥିଲା ଅତ୍ୟନ୍ତ ସବଳ ଏବଂ ସୁନିୟନ୍ତ୍ରିତ । ତେଣୁ ରାଜା ଏକବସ୍ତ୍ର ହୋଇ ନିଜର ପରିବାରଙ୍କୁ ବିଦ୍ରୋହୀଙ୍କ ଘେର ମଧ୍ୟରେ ଛାଡ଼ି ଦେଇ ପ୍ରାଣଧରି ରାଜ୍ୟ ପରିତ୍ୟାଗ କରିଥିଲେ । ବିଦ୍ରୋହୀଙ୍କ ଦଳରେ ପ୍ରାୟ ୧୦, ୧୨ ହଜାର ପ୍ରଜା ମିଳିତ ହୋଇଥିଲେ । ଗଡ଼ ଅଧିକାର କରି ତୋପ, ବନ୍ଧୁକ, ତରବାରି ପ୍ରଭୃତି ଅଧିକାର କରିଥିଲେ । ଧାନ ଅମାର, ରାଜଭଣ୍ଡାର ଲୁଟି କରିବା ସଙ୍ଗେ ଗଡ଼ର ପ୍ରଧାନ ପ୍ରଧାନ ଲୋକଙ୍କୁ ଖାଦ୍ୟାଦି ଯୋଗାଇବାକୁ ନୋଟିସ ଦିଆ ଯାଉଥିଲା । ଏହାର ଅନ୍ୟଥା ହେଲେ ସେମାନେ ଭୀଷଣ ଦଣ୍ଡ ପାଉଥିଲେ । ବିଦ୍ରୋହୀଗଣ ଚତୁର୍ଦ୍ଦିଗରେ ଘାଟି ଜଗି ରହିଥିଲେ । ପରିଶେଷରେ ମେନେଜର ବାବୁ ଫକୀରମୋହନ ସେନାପତି ମଧ୍ୟ ବିଦ୍ରୋହୀଙ୍କ ହାତରେ ବନ୍ଦୀ ହେଲେ । ବିନା ସୈନ୍ୟରେ କେନ୍ଦୁଝର ଗଡ଼ରେ ପ୍ରବେଶ କରିବା ଅସମ୍ଭବ ବୋଲି ଉଲ୍ଲେଖ କରାଯାଇଛି । ପ୍ରଜାମାନେ ରାଜାଙ୍କୁ ସ୍ୱୀକାର କରୁ ନାହାନ୍ତି । ଏହି ଆନ୍ଦୋଳନର ନେତା ହେଉଛନ୍ତି ଧରଣୀଧର ନାୟକ । *

* ଉତ୍କଳ ଓ ନବ ସମ୍ବାଦ—୩।୬।୧୮୯୧

## ବିଦ୍ରୋହୀ ନେତା ଧରଣୀଧର :

କେନ୍ଦୁଝରର ଅଶାନ୍ତିକୁ ବ୍ୟାପକବ ଫକୀରମୋହନ 'ମେଳି' ନାମରେ ଆଖ୍ୟାତ କରି ଯେତେ ହୀନପ୍ରଭ କରିଥାଆନ୍ତୁ ନା କାହିଁକି, ଏ କଥା ସତ୍ୟ ଯେ, ତାହା ଏକ ପ୍ରକୃଷ୍ଟ ଜନଆନ୍ଦୋଳନ ଥିଲା । ସେହି ଆନ୍ଦୋଳନର କେବଳ ମୁଖପାତ୍ର ଥିଲେ ଧରଣୀଧର ନାୟକ । ତାଙ୍କୁ ମେଳିଆ ଭାବରେ ଚିତ୍ରଣ କରି କେବଳ ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ଅଶିକ୍ଷିତ ସରଳ ଭୂୟାଁମାନଙ୍କୁ ରାଜାଙ୍କ ବିରୁଦ୍ଧରେ ମତାଇ ଦିଆଯାଇଥିଲା ବୋଲି ଫକୀରମୋହନ ମତ ପ୍ରକାଶ କରୁଛନ୍ତି । ମାତ୍ର ଏଭଳି ମତ ଯେ ଅମୂଳକ, ଏହା ଅବିଳମ୍ବେ ପ୍ରମାଣିତ ହୋଇପାରିବ । ବିଦ୍ରୋହ ଅଥବା ବିପ୍ଳବ କେବଳ ଧରଣୀଧରଙ୍କ ବ୍ୟକ୍ତିଗତ ସ୍ୱାର୍ଥରୁ ଆରମ୍ଭ ହୋଇଥିଲେ ତାଙ୍କର ଆତ୍ମସମର୍ପଣ ପରେ ଅତି ସହଜରେ ବିଦ୍ରୋହ ଦମନ ହୋଇଯାଇ ପାରିଥାଆନ୍ତା । ମାତ୍ର ଧରଣୀ ବନ୍ଦୀ ହେଲା ପରେ ମଧ୍ୟ ବର୍ଷାଧିକ କାଳ ଯେ ବିଦ୍ରୋହ ଅଗ୍ନି ପ୍ରଜ୍ୱଳିତ ହୋଇ ରହିଲା ଏବଂ ଇଂରେଜ ସେନାବାହିନୀର ନାନା ଅତ୍ୟାଚାର ସହ୍ୟ କରି ମଧ୍ୟ ଭୂୟାଁ ଜାତି ଯେ ରାଜାର କବଳରୁ ସ୍ୱାଧୀନତା ପାଇଁ ଲଢ଼ାଇ କରୁଥିଲେ, ଏଥିରୁ ଆନ୍ଦୋଳନର ବ୍ୟାପକତା ଲକ୍ଷ୍ୟ କରିବାକୁ ହେବ । ମାତ୍ର ଫକୀରମୋହନ ଧରଣୀ ଚରିତ୍ରର ବୈଶିଷ୍ଟ୍ୟ ଆଦୌ ଦେଖି ପାରି ନାହାନ୍ତି । ବରଂ ସେ ରାଜା ଅନ୍ନରେ ପ୍ରତିପାଳିତ ହୋଇ ରାଜାଙ୍କ ବିରୁଦ୍ଧରେ ବିଦ୍ରୋହ କରିଛି ବୋଲି ଲେଖକ ପରୋକ୍ଷରେ କଟାକ୍ଷ କରିଛନ୍ତି । ଫକୀରମୋହନ ଲେଖିଛନ୍ତି—"ମେଳିର ସରଦାର ହେଲେ ଧରଣୀଧର । ଧରଣୀଧର ଗୋଟିଏ ଭୂୟାଁପିଲା । ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜଦେବ ତାହାକୁ କଟକ ପଠାଇ ସର୍ଭେ ପଢ଼ାଇଥିଲେ । ମହାରାଜାଙ୍କ ଖରଚରେ କଟକସ୍ଥ କେଉଁଝର ବସାରେ ରହି ସର୍ଭେ ସ୍କୁଲରେ ପଢ଼ୁଥିଲା । ସ୍କୁଲରୁ ପାଶ କରି ଆସି କେଉଁଝର ରାଜ ସରକାରରେ କେତେକ ମାସ ସର୍ଭେୟର କାର୍ଯ୍ୟ କରିବା ଉପରେ ପ୍ରଚାର କରିଦେଲା—ମହାରାଜା ପ୍ରଜାପୀଡ଼କ, ଅତ୍ୟାଚାରୀ । ସେ (ଧରଣୀ) କଟକରୁ ମହାରାଣୀଙ୍କ ଧର୍ମପୁତ୍ର ହୋଇ ଆସିଛି, ରାଜ୍ୟରେ ନ୍ୟାୟ ବିଚାର କରିବ । ଭୂୟାଁ ପ୍ରଜାଗଣ ମହାରାଜଙ୍କ ପ୍ରତି ଅସନ୍ତୁଷ୍ଟ ଥିଲେ । ଧରଣୀ ଏହି କଥା ପ୍ରକାଶ କରିବା ମାତ୍ରକେ ସମସ୍ତେ

ତାର ବଶ୍ୟତା ସ୍ୱୀକାର କରି ରାଜଶକ୍ତିକୁ ଅମାନ୍ୟ କରିବାକୁ ଲାଗିଲେ। ଧରଣୀର ଆଦେଶ ଲଙ୍ଘନ କାରଣ ଅନ୍ୟ-ଜାତୀୟ ପ୍ରଜାଙ୍କର ଏବଂ ରାଜାଙ୍କ ଖମାରଘର ଲୁଣ୍ଠତରାଜ ହେବାକୁ ଲାଗିଲା, କେତେଜଣ ପୁଲିସ କର୍ମଚାରୀଙ୍କୁ ଧରି ନେଇଯାଇ କଏଦ କରି ରଖିଲେ। ସିଂହଭୂମି ତରଫରୁ ମହାପାତ୍ର ନାମକ ଗୋଟାଏ ଭୂୟାଁ ଆସି ଧରଣୀ ସହିତ ଯୋଗଦେଲା। ଏ ଲୋକଟା ବୁଦ୍ଧିମାନ, ମାଲମୋକଦ୍ଦମାର ଅବସ୍ଥା ବୁଝେ। ମେଳିର ପ୍ରାବଲ୍ୟ ଦେଖି ମହାରାଜା ନିଜ ରାଜ୍ୟ ପରିତ୍ୟାଗ କରିଥିଲେ''। *

ଫକୀରମୋହନ ଧରଣୀଧରଙ୍କୁ ଏକ ଧୂର୍ତ୍ତ, ପ୍ରବଞ୍ଚକ ଏବଂ ପ୍ରତାରକ ଭାବରେ ଚିତ୍ରଣ କରିଛନ୍ତି। ଫକୀରମୋହନଙ୍କ ପ୍ରଚାର ଫଳରେ ଓଡ଼ିଆ ପାଠକସମାଜ ଆଜିପର୍ଯ୍ୟନ୍ତ ତାହାହିଁ ବିଶ୍ୱାସ କରି ଆସିଅଛନ୍ତି। ମାତ୍ର ଏହା ସତ୍ୟର ଅପଲାପ ମାତ୍ର। ବରଂ ଧରଣୀଧର ପ୍ରଜାପୀଡ଼କ ଅତ୍ୟାଚାରୀ ରାଜାଙ୍କ କବଳରୁ ଭୂୟାଁ ପ୍ରଜାମାନଙ୍କୁ ଉଦ୍ଧାର କରିବା ପାଇଁ ୧୮୯୧ ସାଲରେ କମିସନର ସାହେବଙ୍କୁ ଆପତ୍ତି ଜଣାଇଥିଲା। ମାତ୍ର ଇଂରେଜ ଶାସକଗଣ ସେଥିରେ କୌଣସି କର୍ଣ୍ଣପାତ ନ କରିବାରୁ ସେ ଭୂୟାଁ ପ୍ରଜାମାନଙ୍କ ନେତୃତ୍ୱ ଗ୍ରହଣ କରି ବିଦ୍ରୋହ ଘୋଷଣା କରିଥିଲା। ଏହି ବିଦ୍ରୋହରେ ତାହାର ଶ୍ୟାଳକ ନରେନ୍ଦ୍ର ମହାପାତ୍ର ସାହାଯ୍ୟକାରୀ ହେବା ସ୍ୱାଭାବିକ। ଫକୀରମୋହନ ନିଜର ଆତ୍ମଚରିତରେ ମେଳି ଦମନ କରିବାର ଗୌରବ ନେଇଥିବାରୁ କଥିତ ମେଳିର ନେତା ଧରଣୀଧରଙ୍କୁ ସେ ହୀନ ଭାବରେ ଚିତ୍ରଣ କରିବାକୁ କୁଣ୍ଠିତ ହୋଇନାହାନ୍ତି। ମାତ୍ର ଧରଣୀର ବ୍ୟକ୍ତିତ୍ୱ ଏବଂ ଆଦର୍ଶ ସମ୍ପର୍କରେ ତତ୍କାଳୀନ ଇଂରେଜ ଶାସକବର୍ଗ ଏବଂ ସମ୍ବାଦ-ପତ୍ରଗଣ ଆଦୌ ଅଟକ ନଥିଲେ। ଧରଣୀଧର ବନ୍ଦୀ ହେଲା ପରେ କେନ୍ଦୁଝରରେ ଶାନ୍ତି ବିରାଜମାନ କଲା ବୋଲି ଫକୀରମୋହନଙ୍କ ଲେଖାରୁ ଜଣାପଡ଼େ; ମାତ୍ର ଧରଣୀ ଆତ୍ମସମର୍ପଣ କଲାପରେ ମଧ୍ୟ କେନ୍ଦୁଝର ବିଦ୍ରୋହ ପ୍ରଶମିତ ହୋଇ ନଥିଲା। ଧରଣୀ ନିଜେ ବନ୍ଦୀ ହେଲେ ମଧ୍ୟ ଯେଉଁ ଉଦ୍ଦେଶ୍ୟରେ ସେ ସଂଗ୍ରାମ ଆରମ୍ଭ କରିଥିଲା, ତାହା କେତେକାଂଶରେ ସଫଳ ହୋଇଥିଲା ଏବଂ ଇଂରେଜ ଶାସକବର୍ଗ କେନ୍ଦୁଝର ରାଜାଙ୍କୁ କ୍ଷମତାଚ୍ୟୁତ

* ଆତ୍ମଚରିତ-ପ୍ରଥମ ସଂସ୍କରଣ—୧୯୨୭-ପୃ୧୨୯

କରିବାକୁ ବାଧ ହୋଇଥିଲେ । ଆଇନଗତ କାରଣରୁ ଧରଣୀଧର ଦଣ୍ଡିତ ହୋଇଥିଲେ ହେଁ ତାହାକୁ କ୍ଷମା ଦେବାପାଇଁ ଇଂରେଜ କର୍ମଚାରୀଗଣ ଅନୁଭବ କରିଥିଲେ ।

## ବିପ୍ଳବୀ ଧରଣୀଧରଙ୍କର ଆତ୍ମସମର୍ପଣ :

ଅବସ୍ଥାଚକ୍ରରେ ପ୍ରବଳ ପରାକ୍ରାନ୍ତ ଏବଂ ସୁଶିକ୍ଷିତ ଇଂରେଜ ସେନା-ବାହିନୀ ସମ୍ମୁଖରେ ଧରଣୀଧର ଅଧିକକାଳ ତିଷ୍ଠିବା ଅସମ୍ଭବ ଥିଲା । ତେଣୁ ସେ ଅଳ୍ପକାଳ ମଧ୍ୟରେ ଆତ୍ମସମର୍ପଣ କରିବାରୁ କେନ୍ଦୁଝରରେ ଶାନ୍ତି ପ୍ରତିଷ୍ଠା ହେଲା ବୋଲି ସରକାର ମନେ କରିଥିଲେ । ❊ କେନ୍ଦୁଝରରେ ବିଦ୍ରୋହର ପରିଣତି ସମ୍ପର୍କରେ 'ନବସମ୍ବାଦ' ଯେଉଁ ସମ୍ବାଦ ପରିବେଷଣ କରିଥିଲେ, ତହିଁରୁ ଜଣାଯାଏ ଯେ, କେଉଁଝର ରାଜା ଅତ୍ୟାଚାରୀ ବୋଲି ଇଂରେଜ ଶାସକମାନଙ୍କର ହୃଦ୍‌ବୋଧ ହୋଇଥିଲା । ରାଜାଙ୍କ ଅତ୍ୟାଚାର ହେତୁ ରାଜ୍ୟରେ ଅଶାନ୍ତି ଦେଖା ଦେଇଥିଲା । ମହାରାଜା ଆପଣା ସୁଖ ସ୍ୱଚ୍ଛନ୍ଦତା ପ୍ରତି ଯେପରି ଦୃଷ୍ଟି ରଖିଥିଲେ, ସେହିପରି ପ୍ରଜାଙ୍କ ସୁଖ ସ୍ୱଚ୍ଛନ୍ଦତା ପ୍ରତି ଠିକ୍‌ଏ ଦୃଷ୍ଟି ରଖିଥିଲେ ଏ ପ୍ରକାର ଘଟଣା ଆଦୌ ଘଟି ନଥାନ୍ତା । ବରଂ ଏହି ବିଦ୍ରୋହରେ ନେତା ଧରଣୀଧରଙ୍କର ଉଦ୍ଦେଶ୍ୟ ଅତ୍ୟନ୍ତ ଭଲ ଥିଲା । ସେ ପ୍ରଜାଙ୍କ ହିତ ନିମନ୍ତେ ଯାହା କିଛି କରିଥିଲେ । ଗଡ଼ଜାତ ସୁପରିଣ୍ଟେଣ୍ଡେଣ୍ଟଙ୍କ ବିଚାର ଅନୁଯାୟୀ ମହାରାଜା କିଛିକାଳ ଶାସନ ଭାରରୁ ବଞ୍ଚିତ ହୋଇ କଟକରେ ଅବସ୍ଥାନ କରିବେ ବୋଲି ଆଦେଶ ହୋଇଥିଲା । ଦୋଷକୁ ଚାହିଁ ଧରଣୀଧରଙ୍କର ଦଣ୍ଡ କିଛି ଅଧିକ ହୋଇଗଲା ବୋଲି ଅନୁଭୂତ ହେଲା । 'ଦୀପିକା' ପ୍ରଚାରିତ ସମ୍ବାଦରୁ ଜଣାଯାଏ ଯେ, ଗଡ଼ଜାତ ସୁପରିଣ୍ଟେଣ୍ଡେଣ୍ଟ ଟଏନବୀ ସାହେବ ମହୋଦୟ ଧରଣୀଧର ପ୍ରତି କଠିନ ଦଣ୍ଡ ଦେବାକୁ ଆଦୌ ଇଚ୍ଛୁକ ନୁହଁନ୍ତି । ସାହେବ ମହୋଦୟଙ୍କ ଇଚ୍ଛା ଯେ, କେଉଁଝରର ଶାନ୍ତି ସ୍ଥାପନ ହେଲା ଉତ୍ତାରୁ ତାହାଠାରୁ ଭବିଷ୍ୟତ ସଚ୍ଚରିତ୍ର ପତ୍ର ଲେଖି ନେଇ ତାହାକୁ କ୍ଷମାଦେବା ପାଇଁ ଗଭର୍ଣ୍ଣମେଣ୍ଟକୁ ଅନୁରୋଧ କରିବେ । ⊿ ପ୍ରାୟ

---

❊ ଓଡ଼ିଆ ଓ ନବସମ୍ବାଦ – ୧୦-୬-୧୮୯୧

⊿ ଓଡ଼ିଆ ଓ ନବସମ୍ବାଦ—୨୨ । ୭ । ୧୮୯୧

ଏକବର୍ଷ ପରେ କେଉଁଝରରେ ଶାନ୍ତି ପ୍ରତିଷ୍ଠା ପାଇଁ କେତେକ ଗୁରୁତ୍ୱପୂର୍ଣ୍ଣ ନିଯୁକ୍ତି ମଧ୍ୟ କରାଯାଇଥିଲା । ରାୟ ନନ୍ଦକିଶୋର ଦାସ ବାହାଦୂର କେଉଁଝରର ପଲିଟିକେଲ୍ ଏଜେଣ୍ଟ ହେଲେ । ମହାରାଜା ଆପଣା ରାଜ୍ୟରେ ରହି ତାଙ୍କର ପରାମର୍ଶ ଅନୁସାରେ କାର୍ଯ୍ୟପରିଚାଳନା କରିବେ ବୋଲି ନିଷ୍ପତ୍ତି ହେଲା । ଓ୍ୟାଲି ସାହେବ ଏବଂ ଫକୀରମୋହନ କେଉଁଝରରୁ ବିଦାୟ ନେଲେ ।

## ପୁନର୍ବାର ବିଦ୍ରୋହ :

ରାଜା ପୁନର୍ବାର ରାଜ୍ୟକୁ ଫେରି ଆସିବାରୁ ଭୂୟାଁ ପ୍ରଜାମାନେ ଅସନ୍ତୁଷ୍ଟ ହେଲେ । ସେମାନଙ୍କ ନ୍ୟାଯ୍ୟ ଦାବୀ ପ୍ରତ୍ୟାଖ୍ୟାନ ହେଲାବୋଲି ପ୍ରଜାମାନେ ମନେ କରିବା ସ୍ୱାଭାବିକ । ତେଣୁ ବିପ୍ଲବର ପ୍ରଥମ ନେତା ଧରଣୀଧର ବନ୍ଦୀଶାଳରେ ଥିଲେ ମଧ୍ୟ ବିପ୍ଳବ ମରିପାରି ନଥିଲା । ପୁନର୍ବାର କର ଇତ୍ୟାଦି ନଦେଇ ସେମାନେ ରାଜାଙ୍କର ଅଧିକାରକୁ ଅସ୍ୱୀକାର କଲେ । ଗୋଳମାଳ ପ୍ରବଳ ହେବାରୁ ରାଞ୍ଚିରୁ କମିସନର ସାହେବ କେତେକ ସୈନ୍ୟ ସହ କେଉଁଝରରେ ଉପସ୍ଥିତ ହୋଇଥିଲେ ।※ ନିଜେ କମିସନର ସୈନ୍ୟସହ ମେଳି ଦମନପାଇଁ ଉପସ୍ଥିତ ହେବାରୁ ପ୍ରଜା ଆନ୍ଦୋଳନର ଗୁରୁତ୍ୱ ଅନୁମାନ କରାଯାଇପାରେ । ସୈନ୍ୟମାନଙ୍କ ସାହାଯ୍ୟରେ ଭୂୟାଁ ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଯାଇଥିଲା । ଅନେକ ଭୂୟାଁ ଗ୍ରାମରେ ନିଆଁ ଲଗାଇ ପୋଡ଼ି ଦିଆଗଲା । ଅତ୍ୟାଚାର ଭୟରେ ଅନେକ ଭୂୟାଁ ଆପଣା ଆପଣା ଖଜଣା ଦେଇ ଆତ୍ମସମର୍ପଣ କରିଥିଲେହେଁ ବିଦ୍ରୋହୀ ଦଳପତିମାନେ ଆତ୍ମଗୋପନ କରି ରହିଥିଲେ । ⊿ ପରିଶେଷରେ ଇଂରେଜ ଶାସକଗଣ ପ୍ରତ୍ୟେକ ବିଦ୍ରୋହୀ ଦଳପତିଙ୍କୁ ଧରାଇଦେଲେ ଶହେଟଙ୍କା ଲେଖାଏଁ ପୁରସ୍କାର ମିଳିବ ବୋଲି ଘୋଷଣା କଲେ । ସୁପରିଣ୍ଟେଣ୍ଡେଣ୍ଟ କୁକ୍ ସାହେବ ଏବଂ ରାୟ ବାହାଦୂର ନନ୍ଦକିଶୋର ଦୁଇଦଳ ସୈନ୍ୟଙ୍କ ନେତୃତ୍ୱ ନେଇ ଦୁଇଦିଗରୁ କେଉଁଝର ରାଜ୍ୟରେ ଆକ୍ରମଣ ଚଳାଇଲେ । ମେଳିଆମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ସେମାନଙ୍କ ଲୋକ ଖାଦ୍ୟଶସ୍ୟ ଫେରାଇଦେଲେ । ଅତ୍ୟାଚାର ଏଡ଼ିବା

---

※ ଓଡ଼ିଆ ଓ ନବସମ୍ବାଦ—୨ । ୧ । ୧୮୯୨

⊿ ଓଡ଼ିଆ ଓ ନବସମ୍ବାଦ—୧୧ । ୧ । ୧୮୯୩

ପାଇଁ ଭୂୟାଁମାନେ ଗାଁ ଗଣ୍ଡା ଛାଡ଼ି ପିଲାପିଲିଙ୍କୁ ନେଇ ଦୁର୍ଗମ ପାହାଡ଼ ଉପରକୁ ପଳାଇ ଗଲେ । * ରାଜାଙ୍କର ବଶ୍ୟତା ସ୍ୱୀକାର କରିବେ ନାହିଁ ବୋଲି ଭୂୟାଁମାନେ ପଣ କରିଥିଲେ । ତେଣୁ ସେମାନେ ମଧ୍ୟ ପାର୍ବତ୍ୟ ପ୍ରଦେଶରେ ଲୁଟ ତରାଜ କରୁଥିଲେ । ହଜାର ହଜାର ପ୍ରଜା ମୟୂରଭଞ୍ଜ ରାଜା ଅଧୀନରେ ପ୍ରଜା ହୋଇ ରହିବେ ବୋଲି ଆବେଦନ ମଧ୍ୟ କରିଥିଲେ । ଏହି ମେଳିଆଙ୍କ ମଧ୍ୟରେ ପ୍ରଧାନ ନେତା ଥିଲେ ଭୁଜବଳ, ଗୋପାଳ, ରୁଞ୍ଜୀ, ଆଗୁଆଣ ସିଂହ ପ୍ରଭୃତି । ଧରଣୀଧରଙ୍କ ପରେ ଏମାନେ ଭୟଙ୍କର ଦମନଲୀଳା ଚଳାଇ ବିଦ୍ରୋହକୁ ବଞ୍ଚାଇ ରଖିଥିଲେ । ମାତ୍ର ଅଧିକ ସୈନ୍ୟ ମୁତୟନ ସଙ୍ଗେ ସଙ୍ଗେ କେଉଁଝରର କୁଆଁର, ଭୀମମୁଣ୍ଡା, ନୂଆକୋଟ, ନୂଆଗଡ଼, ଚମକପୁର, ଗୁଆଲି, କାଳିକାପ୍ରସାଦ ଏବଂ ବାଉଁଶୁଳି ପ୍ରଭୃତି ସ୍ଥାନରେ ନୂତନ ଫାଣ୍ଡି ପ୍ରତିଷ୍ଠା କରାଯାଇ ବିଦ୍ରୋହ ଦମନ ପାଇଁ ଅଧିକ ଫଳପ୍ରସୂ ଉଦ୍ୟମ କରାଗଲା । ମେଳି ଦମନ କରିବାରେ ବିଫଳ ହେବାରୁ ଶେଷରେ ନନ୍ଦକିଶୋର ବାବୁଙ୍କୁ ମଧ୍ୟ ରାଜ୍ୟରୁ ବିଦାୟ ନେବାକୁ ପଡ଼ିଲା । ଏଚ୍. ପି. ଓ୍ୱାଲି ସାହେବ ତାଙ୍କ କାର୍ଯ୍ୟରେ ମୁତୟନ ହେଲେ । ⊿

କୌଣସି ବଳ ପ୍ରୟୋଗ ନ କରି ବିଦ୍ରୋହ ଦମନ କରିବାକୁ ଲାଟ ସାହେବ ଓ୍ୱାଲି ସାହେବଙ୍କୁ ନିର୍ଦ୍ଦେଶ ଦେଇଥିଲେ । ତାଙ୍କର ଯତ୍ନରେ ପ୍ରଜାମାନଙ୍କର ଦାବୀ ସ୍ୱୀକୃତ ହେଲା ଏବଂ ରାଜ୍ୟରେ କ୍ରମଶଃ ଶାନ୍ତି ପ୍ରତିଷ୍ଠା ହୋଇଥିଲା । ପୂର୍ବପ୍ରଚଳିତ ନିୟମ ଅନୁସାରେ ପ୍ରଜାମାନେ ରାଜାଙ୍କର ମାଗଣାରେ ବେଠି କରିବା କଥା । ମାତ୍ର ସେମାନେ ଅସ୍ୱୀକାର କରିବାରୁ ରାଜା ବଳ ପ୍ରୟୋଗ କଲେ । ତେଣୁ ପୁନର୍ବାର ବିଦ୍ରୋହ ହେବାର ଆଶଙ୍କା ଥିଲା । ମାତ୍ର ସରକାରୀ ପ୍ରତିନିଧି ଓ୍ୱାଲି ସାହେବଙ୍କ ଉଦ୍ଦେଶ୍ୟ ଅନୁସାରେ ରାଜା ଏବଂ ପ୍ରଜାଙ୍କ ମଧ୍ୟରେ ଏକ ରାଜିନାମା ସମ୍ଭବ ହୋଇଥିଲା । ଫଳରେ ଭୂୟାଁମାନେ ସେମାନଙ୍କର କାର୍ଯ୍ୟ ପାଇଁ ଉପଯୁକ୍ତ ପାରିଶ୍ରମିକ ପାଇବେ ବୋଲି ସ୍ୱୀକୃତ ହେଲା । ଉଭୟ ପକ୍ଷଙ୍କ ସମ୍ମତିକ୍ରମେ

---

* ଓଡ଼ିଆ ଓ ନବସମ୍ବାଦ—୨୫ । ୧ । ୧୮୯୩
⊿ ଓଡ଼ିଆ ଓ ନବସମ୍ବାଦ—୨୩ । ୮ । ୧୮୯୩

ଧାର୍ଯ୍ୟ ହେଲା ଯେ ଭୂୟାଁମାନେ ପ୍ରତି ହଳ ସକାଶେ ତିନିଅଣା ଏବଂ ଗୃହ ମହିମଣ୍ଡି ସକାଶେ ମଜୁରି ଦେଢ଼ଅଣା ଲେଖାଏଁ ପାଇବେ । ସେହି ଦିନଠାରୁ ଭୂୟାଁମାନେ ପୁନର୍ବାର ରାଜାଙ୍କ ବଶ୍ୟତା ସ୍ୱୀକାର କଲେ । ※

ଊନବିଂଶ ଶତାବ୍ଦୀର ଶେଷଭାଗରେ ଭାରତ ବର୍ଷରେ ଜାତୀୟ ଆନ୍ଦୋଳନ ସ୍ୱପ୍ନପ୍ରାୟ ମନେ ହେଉଥିଲାବେଳେ ଗଡ଼ଜାତ ଅଞ୍ଚଳର ଅନ୍ଧାରି ଶାସନ ତଳେ ଆତ୍ମସମ୍ମାନ ଏବଂ ନ୍ୟାଯ୍ୟ ଅଧିକାର ଦାବୀ କରି ଅନୀତି ଓ ଅତ୍ୟାଚାର ବିରୁଦ୍ଧରେ ଯେଉଁ ବୀର ପୁରୁଷ ପ୍ରଥମେ ନେତୃତ୍ୱ ନେଇଥିଲେ, ସେହି ଧରଣୀଧର ଆଜି ଇତିହାସ ପୃଷ୍ଠାରେ ବିସ୍ମୃତପ୍ରାୟ ଏବଂ ସେନାପତିଙ୍କ ଲେଖନୀରେ ଜଣେ ସାଧାରଣ ସ୍ୱାର୍ଥପର ମେଳିଆ ବୋଲି ଚିତ୍ରିତ । ମାତ୍ର ଏ ଦେଶର ଜନଆନ୍ଦୋଳନର ପ୍ରକୃତ ଇତିହାସ ଲିପିବଦ୍ଧ ହେଲେ, ଧରଣୀଧର ଜଣେ ଉଚ୍ଚକୋଟୀର ସାହସୀ ଜାତୀୟ ବୀର ଭାବରେ ଯେ ପ୍ରତିଷ୍ଠା ଲାଭ କରିବେ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

---

※ ଉତ୍କଳ ଓ ନବସମ୍ବାଦ—୧୮ । ୭ । ୧୮୯୩

# ସାହିତ୍ୟ ଓ ଜାତୀୟ ସଂହତି

## ଜୀବନାଦର୍ଶର ଭିତ୍ତି

ଅତି ପ୍ରାଚୀନ କାଳରେ ଯେଉଁଦିନ ମନୁଷ୍ୟ ପରିବାର ଓ ସମାଜ କଅଣ ଜାଣି ନଥିଲା, ସେ ଦିନ ସେ ଥିଲା ସମ୍ପୂର୍ଣ୍ଣ ଭାବରେ ଏକୁଟିଆ । କାଳକ୍ରମେ ପରିବାର, ସମାଜ ଓ ଜାତି ଗଠିତ ହେଲା । ସେହିଦିନ ସେ ଅନୁଭବ କଲା ଯେ, ଜାତିପାଇଁ ସମାଜ ତଥା ସମାଜର ସ୍ୱାର୍ଥପାଇଁ ପରିବାର ଏବଂ ପରିବାର ପାଇଁ ବ୍ୟକ୍ତିଙ୍କୁ ମଧ୍ୟ ବଳି ଦିଆଯାଇପାରେ ।

ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ଜାତି ଗଠିତ ହେବାରୁ ମାନବ-ପ୍ରେମର ଉଦ୍ଭବ ହେଲା । ମଣିଷପାଇଁ ଏହି ଅପୂର୍ବ ପ୍ରେମ ଓ ସହାନୁଭୂତି ନାନା ଧର୍ମମତ ଓ ଦର୍ଶନ ଜରିଆରେ ଭାରତବର୍ଷ ଓ ଚୀନ ଦେଶରେ ବିସ୍ତାରିତ ହୋଇ ଆସିଅଛି । ଭାରତର ହିନ୍ଦୁ ଋଷି ପ୍ରାର୍ଥନା କରୁଥିଲେ ନିଜପାଇଁ ନୁହେଁ, ଜଗତର କଲ୍ୟାଣ ପାଇଁ; ସମଗ୍ର ମାନବ ଜାତିର ଉତ୍‌ଥାନ ପାଇଁ ।

ସେ ଦିନ ବୈଦିକ ଋଷି ବିଶ୍ୱକଲ୍ୟାଣର ସ୍ୱପ୍ନରେ ବିହ୍ୱଳ ହୋଇ ଅପୂର୍ବ ସଙ୍ଗୀତ ଗାନ କରିଥିଲେ ଏହିପରି :—

ମଧୁବାତା ଋତାୟତେ
ମଧୁକ୍ଷରନ୍ତି ସିନ୍ଧବଃ
ମାଧ୍ୱୀର୍ନଃ ସନ୍ତ୍ୱୋଷଧୀଃ ।
ମଧୁ ନକ୍ତ ମୁତୋଷସୋ
ମଧୁମତ୍ ପାର୍ଥିବଂ ରଜଃ
ମଧୁ ଦ୍ୟୌରସ୍ତୁ ନଃ ପିତା ।

ମଧୁମାନ୍ନୋ ବନସ୍ପତିର୍ମଧୁମାନ
ଅସ୍ତୁ ସୂର୍ଯ୍ୟଃ
ମାଧ୍ୱୀର୍ଗାବୋ ଭବନ୍ତୁ ନଃ ।
(ଋକ୍ ୧।୯୦।୬।୭।୮

ଏହାର ଅର୍ଥ ହେଲା—ପରମାତ୍ମାଙ୍କ ସୃଷ୍ଟି ଅନୁକୂଳ ନୀତି ପରିଗ୍ରହୀତ ସାଧୁମାନଙ୍କ ପକ୍ଷରେ ଏ ସମୀରଣ ସର୍ବଦା ପରିମଳମୟ ମଳୟାନିଳ ତୁଲ୍ୟ ପ୍ରବାହିତ । ନଦୀ ଗୁଡ଼ିକରେ ସୁଶୀତଳ ଜଳ ମଧୁଧାରା ତୁଲ୍ୟ ପ୍ରବହମାନ । ଔଷଧିସବୁ ଉତ୍ତମ ଗୁଣଯୁକ୍ତ ହୋଇ ବିଶ୍ୱକଲ୍ୟାଣ ସାଧନ କରୁଅଛି ।

ଶ୍ରମକ୍ଳାନ୍ତ ବିଶ୍ୱବାସୀଙ୍କୁ ରାତି ବିଶ୍ରାମ ଦେଇ ଶାନ୍ତିବିଧାନ କରୁଅଛି । ପ୍ରଭାତ କାଳ ହୃଦୟରେ ନବଶକ୍ତି ସଞ୍ଚାର କରୁଅଛି । ଏପରି କି ଏ ସୃଷ୍ଟିର ପ୍ରତ୍ୟେକ ଧୂଳିକଣା ମଧୁ ତୁଲ୍ୟ ବିଶ୍ୱକଲ୍ୟାଣ ସାଧନ କରୁଅଛି ।

ଏ ବନସ୍ପତି ବିଶ୍ୱବାସୀଙ୍କ ମଧୁରତା ସମ୍ପାଦନ କରୁଅଛି । ସୂର୍ଯ୍ୟ ସର୍ବଦା ବିଶ୍ୱକଲ୍ୟାଣ ସାଧନ କରୁଛନ୍ତି । ଗୋମାତା ଅମୃତୋପମ ମଧୁର କ୍ଷୀରଦାନ କରୁଅଛି ।

ଆମ୍ଭମାନଙ୍କ ସୃଷ୍ଟିର ନିୟମାନୁକୂଳ ଏହି ସରଳ, ମଧୁର ବାଣୀର ମଧୁରତା ଅବର୍ଣ୍ଣନୀୟ । ତେଣୁ ଏ ମଧୁମୟ ବାଣୀ ବିଶ୍ୱବାସୀ କଲ୍ୟାଣର ପ୍ରଧାନ ଉପାୟ ।

(ଧର୍ମବିଜ୍ଞାନ—କମଳଲୋଚନ ଷଡ଼ଙ୍ଗୀ-ପୃ ୨୮୮-୨୮୯)

ବ୍ୟକ୍ତି ଚେତନାରୁ ଜାତୀୟତାର ଉଦ୍ଭବ । ବ୍ୟକ୍ତିନିଷ୍ଠ ଚିନ୍ତାଧାରା ସଂକୀର୍ଣ୍ଣ ଭାବଧାରାର ଦ୍ୟୋତକ ହେବା ସ୍ୱାଭାବିକ । ମାତ୍ର ଭାରତୀୟ ମନୀଷୀ ବିଶ୍ୱାସ କରୁଥିଲେ ଯେ, ଆତ୍ମାର ପୁନର୍ଜନ୍ମ ଅଛି । ପୃଥିବୀର ବିଭିନ୍ନ ପ୍ରାନ୍ତରେ ମଧ୍ୟ ସେ ଜନ୍ମଗ୍ରହଣ କରିପାରେ ।

ଆର୍ଯ୍ୟ ସଂସ୍କୃତିର ଗୌରବ 'ହିତୋପଦେଶ'ରେ କୁହାଯାଇଛି—

'ତ୍ୟଜେଦେକଂ କୁଳସ୍ୟାର୍ଥେ
ଗ୍ରାମସ୍ୟାର୍ଥେ କୁଳଂ ତ୍ୟଜେତ୍
ଗ୍ରାମଂ ଜନପଦଂସ୍ୟାର୍ଥେ
ଆତ୍ମାର୍ଥେ ପୃଥିବୀଂ ତ୍ୟଜେତ୍'

ପରିବାର ପାଇଁ ବ୍ୟକ୍ତି, ଗ୍ରାମ ପାଇଁ ପରିବାର, ଦେଶ ପାଇଁ ଗ୍ରାମ ଏବଂ ଆତ୍ମାର ବିକାଶ ପାଇଁ ଦେଶକୁ ମଧ୍ୟ ବଳି ଦିଆଯାଇ ପାରେ ।

ସେ ଦିନ କି ପ୍ରାଣର ଆବେଗରେ ପୁରୁଷ ସିଂହ ମଧୁସୂଦନ ଦାସ ଗାଇଥିଲେ—

'ନିଜର ଜୀବନ ଜାତିକୁ ଅର୍ପଣ
କଲେ ମିଳେ ଜାତି ପ୍ରାଣ
ଜାତୀୟ ଜୀବନ ନ ମିଳିବ କଲେ
ହାଟେ ବାଟେ ଅନ୍ୱେଷଣ ।'

ତେଣୁ ତାଙ୍କର ଆହ୍ୱାନ ଥିଲା—

'ଜାତିପ୍ରେମ ବହ୍ନି ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୁତି
ସ୍ୱାର୍ଥମେଧ ଯଜ୍ଞ ଗୃହଆଡ଼େ ନାଚୁ
ଭ୍ରାତୃକୁ ମିଶାଇ ଭ୍ରାତି ।

ଏହି କାରଣରୁ ଭାରତର ଋଷିଗଣ ବିଶ୍ୱାସ କରିଥିଲେ ଯେ, ଭାରତୀୟ ଜାତୀୟତାର ସ୍ରୋତ ବହୁମୁଖୀ ହେଲେହେଁ ତାହା ମଧ୍ୟରେ ଏକ ଅନ୍ତର୍ନିହିତ ଆତ୍ମିକ ସ୍ୱର ସର୍ବଦା ଏବଂ ସବୁ ଯୁଗରେ ବିଦ୍ୟମାନ ।

ଜାତୀୟ ଐକ୍ୟ ଏକ ଭୌଗୋଳିକ ବ୍ୟବସ୍ଥା ଦ୍ୱାରା ସମ୍ଭବ ନୁହେଁ । କେବଳ ଏକଛତ୍ର ଶାସନରେ ସାମାନ୍ୟ କେତେକାଳ ପାଇଁ ନିର୍ଦ୍ଦିଷ୍ଟ ଭୌଗୋଳିକ ସୀମାରେଖା ଦ୍ୱାରା ଏହାର ସୂଚନା ଦିଆଯାଇ ପାରେ । ଜାତୀୟ ଐକ୍ୟ ଏକ ମିଳିତ ବିଶ୍ୱାସ । ଏକ ସାଂସ୍କୃତିକ ସମନ୍ୱୟ ।

ଉଦାହରଣ ସ୍ୱରୂପ ବିଶାଳ ଭାରତବର୍ଷରେ କେତେ ଜାତି, କେତେ ଧର୍ମ ଓ କେତେ ପ୍ରକାର ଭାଷାଭାଷୀ ଲୋକେ ଦେଖିବାକୁ ମିଳନ୍ତି । ନାନା ପ୍ରକାର ପାଣିପାଗ ଯୋଗୁ କେତେ ପ୍ରକାର ରୁଚିଭେଦର, ବର୍ଣ୍ଣ ଭେଦର ଲୋକ ମଧ୍ୟ ଦୃଷ୍ଟିଗୋଚର ହୁଅନ୍ତି । ମାତ୍ର ଏ ସବୁ ସତ୍ତ୍ୱେ ଏହି ବିରାଟ ଅନୈକ୍ୟ ମଧ୍ୟରେ ଏକ ପ୍ରଧାନ ଐକ୍ୟ ବିରାଜମାନ ଥିଲା—ତାହା ହେଲା ଆର୍ଯ୍ୟ ସଂସ୍କୃତି ଅଥବା ଭାରତୀୟ ସଂସ୍କୃତି ଅଥବା ରାମାୟଣ—ମହାଭାରତ —ପୁରାଣସେବିତ ଭାବଧାରା । ଦେବ ଭାଷା ସଂସ୍କୃତ ଭାରତର ପ୍ରତ୍ୟେକ ପ୍ରାନ୍ତରେ ପଣ୍ଡିତମାନଙ୍କୁ ଯୁଗଯୁଗ ପାଇଁ ପ୍ରେରଣା ପ୍ରଦାନ କରି ଆସିଥିଲା । ସେ ଦିନ ମହାପୁରୁଷ ଶଙ୍କର ପଦବ୍ରଜରେ ଭାରତ ପର୍ଯ୍ୟଟନ କରି କରି ଏହି ବିଶାଳ ଦେଶର ଚତୁଃପାର୍ଶ୍ୱରେ ଚତୁର୍ଧାମର ପ୍ରତିଷ୍ଠା କରିଥିଲେ । ରାଜନୈତିକ, ଅର୍ଥନୈତିକ ଏବଂ ସାମାଜିକ ବୈଷମ୍ୟ ସତ୍ତ୍ୱେ ଏହି ଚାରିଧାମ ଭ୍ରମଣ ପ୍ରତ୍ୟେକ ଭାରତୀୟର ଏକ ପବିତ୍ର କର୍ତ୍ତବ୍ୟ ହୋଇ ଆସିଛି ।

ଇତିହାସରୁ ଜଣାଯାଏ ଯେ, ଅତୀତରେ ଶକ, ହୁନ, ମଙ୍ଗୋଲ, ତାତାର ପ୍ରଭୃତି ବହୁ ଦୁର୍ଦ୍ଧର୍ଷ ଜାତି ଏ ଦେଶକୁ ବାରମ୍ବାର ଆକ୍ରମଣ କରିଛନ୍ତି, କେହି କେହି ଶାସନ ମଧ୍ୟ କରିଛନ୍ତି । ମାତ୍ର ଭାରତୀୟ ସଂସ୍କୃତିର ଏହି ମହାସାଗର ମଧ୍ୟରେ ସେମାନଙ୍କର କୌଣସି ସ୍ୱତନ୍ତ୍ର ସତ୍ତା ବିଦ୍ୟମାନ ନାହିଁ । ସେମାନେ ଆଜି ସର୍ବାଦୌ ଭାରତୀୟ ହୋଇ ଯାଇଅଛନ୍ତି । ଭାଷା କିମ୍ବା ଧର୍ମ କେବେହେଲେ ଜାତୀୟ ସଂହତିର ପରିପନ୍ଥୀ ହୋଇଥିବାର ପ୍ରମାଣ ନାହିଁ ।

ମହାପୁରୁଷ ଯମୁନାଚାର୍ଯ୍ୟ, ରାମାନୁଜ, ନିମ୍ବାର୍କ, ମାଧବ, ବିଷ୍ଣୁସ୍ୱାମୀ, ଜ୍ଞାନେଶ୍ୱର, ବଲଭ, ନାମଦେବ, ଏକନାଥ, ତୁକାରାମ, ଉମାପତି, ଜୟଦେବ, ମାଧବେନ୍ଦ୍ର ପୁରୀ, ଈଶ୍ୱର ପୁରୀ, ଶ୍ରୀ ଚୈତନ୍ୟ, ରାୟ ରାମାନନ୍ଦ, ଜଗନ୍ନାଥ ଦାସ, ତୁଳସୀଦାସ, ଜୀବଗୋସ୍ୱାମୀ ଏବଂ ସନାତନ ଗୋସ୍ୱାମୀ ପ୍ରଭୃତି ସିଦ୍ଧପୁରୁଷଗଣ ଭାରତର ବିଭିନ୍ନ ପ୍ରାନ୍ତରେ ବିଭିନ୍ନ କାଳରେ ଏବଂ ଭିନ୍ନ ଭାଷା ଓ ଗୋଷ୍ଠୀ ମଧ୍ୟରେ ଜନ୍ମ ଗ୍ରହଣକରି ଥିଲେହେଁ ଭାରତୀୟ ସାଂସ୍କୃତିକ ଆନ୍ଦୋଳନର ଏମାନେ ଥିଲେ ପ୍ରବକ୍ତା । ସମସ୍ୱରରେ ଏମାନେ ଭକ୍ତିଭାବନାକୁ ପ୍ରଚାର କରି ଯାଇଅଛନ୍ତି ।

ଏହି ପରିପ୍ରେକ୍ଷିରେ ଓଡ଼ିଆ ଜାତିପ୍ରୀତାର ବିଗ୍ରହ ଆବଶ୍ୟକ । ଓଡ଼ିଶା ଏକ ପ୍ରାଚୀନ ଦେଶ । ପୁରାଣ ଯୁଗର ଉତ୍କଳ, କଳିଙ୍ଗ, ଓଡ୍ର ପ୍ରଭୃତି ବିଭିନ୍ନ ସଂସ୍କୃତିର ସମନ୍ୱୟ ଏହି ଭୂମିରେ ହୋଇଅଛି । ଏ ଦେଶର ପ୍ରାଚୀନତମ ସଭ୍ୟତା ଶବର ସଭ୍ୟତା ବୋଲି କେତେକ ପଣ୍ଡିତଙ୍କର ମତ । ମୋଟ ଉପରେ ଆର୍ଯ୍ୟ ଓ ଅନାର୍ଯ୍ୟ ଏହି ଉଭୟ ସଂସ୍କୃତିର ଭାବଧାରା ଏହି ପ୍ରାନ୍ତରେ ବହୁକାଳ ପର୍ଯ୍ୟନ୍ତ ଆତଜାତ ଓ ଭାବ ବିନିମୟ ହୋଇ ଏକ ପରିପୂର୍ଣ୍ଣ ରୂପ ଗ୍ରହଣ କରିଅଛି । ମନେ ହୁଏ, ତାହାହିଁ ହେଉଛି ଖାଣ୍ଟି ଓଡ଼ିଆ ସଂସ୍କୃତି । ସଂସ୍କୃତି ସମ୍ପର୍କରେ ସମରସେଟ ମମ୍ କହିଥିଲେ—"Culture is not just an ornament it is the expression of nations character and at the sametime it is powerful instrument to mould character. The end of culture is right living.

ଓଡ଼ିଆ ସଂସ୍କୃତିର ସର୍ବଶ୍ରେଷ୍ଠ ପ୍ରକାଶ ହୋଇଛି ପୁରୁଷୋତ୍ତମ କ୍ଷେତ୍ରରେ ଏବଂ ସେହି କ୍ଷେତ୍ରର ଜଗନ୍ନାଥ ସଂସ୍କୃତିହିଁ ଓଡ଼ିଆ ଜାତିର ଜୀବନ ଏବଂ ସାହିତ୍ୟକୁ କାଳ କାଳ ଧରି ଅନୁପ୍ରାଣିତ କରି ଆସିଛି । ସମଗ୍ର ହିନ୍ଦୁ ଜଗତର ମଉଡ଼ମଣି ଆରାଧ୍ୟ ଦେବତା ଜଗନ୍ନାଥ ଶବରପୂଜିତ ପତିତପାବନ ବୋଲି ପୁରାଣରେ କଥିତ । ତାଙ୍କୁ ଜୈନ ଏବଂ ବୌଦ୍ଧ ଉଭୟ ସମ୍ପ୍ରଦାୟ ଆପଣାର ବୋଲି ଦାବୀକରି ଆସିଅଛନ୍ତି । ଜଗନ୍ନାଥ ପରମ ବୈଷ୍ଣବ । ମାତ୍ର ସେ ଭୈରବ ମନ୍ତ୍ରରେ ପୂଜିତ ହୋଇଥାଆନ୍ତି । ମହାଶକ୍ତି ବିମଳାଙ୍କୁ ତାଙ୍କର ଭୋଗ ସମର୍ପଣ ନ ହେଲେ ତାହା ମହାପ୍ରସାଦ ହୁଏ ନାହିଁ । ହିନ୍ଦୁ ଧର୍ମର ନାନା ଶାଖା, ନାନା ମତବାଦ ଏବଂ ଅନୁଷ୍ଠାନର ଏକ ସମ୍ମିଳିତ ଅଥଚ ସମନ୍ୱୟଧର୍ମୀ ପ୍ରକାଶ ଅତ୍ୟନ୍ତ ଅଦ୍ଭୁତ ଭାବରେ ଘଟିଛି ପୁରୁଷୋତ୍ତମ ପୀଠରେ । ତେଣୁ ଧର୍ମରେ ଓ ସମାଜରେ ସହନଶୀଳତା ଓ ଉଦାରତାର ଅପୂର୍ବ ଦୃଷ୍ଟାନ୍ତ ଏଠାରେ ଦେଖିବାକୁ ମିଳେ । ସେହି କାରଣରୁ ସିଦ୍ଧ-ସନ୍ଥ-ବ୍ରାହ୍ମଣ ସେବିତ ଏହି ପୀଠରେ ଚଣ୍ଡାଳର ମଧ୍ୟ ଅଧିକାର ଅଛି । ଏଠାରେ ଜାତିଗତ ଅହଂକାର ଅସ୍ୱୀକାର କରି—"ଲକ୍ଷ୍ମୀ ହେଉ ଚଣ୍ଡାଳୁଣୀ ହେଲି ଭାଗ୍ୟବତୀ ।"

ଲକ୍ଷ୍ମୀ ଜଗନ୍ନାଥଙ୍କ ନିକଟରେ ସତ୍ୟ କରାଇ ଥିଲେ 'ଲକ୍ଷ୍ମୀ ପୁରାଣ'ରେ—"ଏତେ କହି ଗୋବିନ୍ଦ ଧଇଲେ ଲକ୍ଷ୍ମୀହସ୍ତ, ଜଗତମାତା ବୋଇଲେ ତୁମ୍ଭେ କର ସତ୍ୟ । ଚଣ୍ଡାଳୁ ବ୍ରାହ୍ମଣ ଯାଏଁ ଖୁଆଖୋଇ ହେବେ, ସମସ୍ତେ ଖାଇବା ହସ୍ତ ଜଳେ ନ ଧୋଇବେ । ହାଡ଼ିର ହସ୍ତୁ ବ୍ରାହ୍ମଣ ଛଡ଼ାଇ ଖାଇବେ ବ୍ରାହ୍ମଣେ ଖାଇ ହସ୍ତକୁ ମୁଣ୍ଡରେ ପୋଛିବେ ।"

ମହାପ୍ରସାଦ ନିକଟରେ ଆଚଣ୍ଡାଳ ବ୍ରାହ୍ମଣ ଏକାଠି ହୁଅନ୍ତି । ଏଠାରେ ଅଛିବ ଦାସିଆ ବାଉରୀ ମଧ୍ୟ ପରମଭକ୍ତ । ଜଗନ୍ନାଥ ତା ହାତର ଭୋଗ ନିଜେ ଗ୍ରହଣ କରନ୍ତି ।

ଆଧ୍ୟାତ୍ମିକ ସାଧନାର ଏହି ଉଦାରତା ଓ ସହନଶୀଳତା ଓଡ଼ିଆ ସାହିତ୍ୟରେ ଅତି ଚମତ୍କାର ଭାବରେ ପ୍ରତିଫଳିତ । ସିଦ୍ଧକବି ଚଣ୍ଡୀଭକ୍ତ ସିଦ୍ଧେଶ୍ୱର ପରିଡ଼ା ସାରଳା ଦେବୀ ପ୍ରସାଦରେ ପୁରାଣ ରଚନା କରିଥିଲେହେଁ ତାଙ୍କ ପୁରାଣରେ ସବୁ ଦେବଦେବୀଙ୍କୁ ବନ୍ଦନା କରାଯାଇଛି । ବୈଷ୍ଣବଯୁଗର କୃଷ୍ଣଭକ୍ତ କବିଗଣ ରାଧାକୃଷ୍ଣଙ୍କ ସହିତ ଜଗନ୍ନାଥଙ୍କୁ ମଧ୍ୟ ପ୍ରାର୍ଥନା କରିଛନ୍ତି । ରାମଭକ୍ତ ଉପେନ୍ଦ୍ର ଭଞ୍ଜ ଏକାଧିକ ଥର ବିଭିନ୍ନ ଦେବତାଙ୍କର, ବିଶେଷକରି ପୁରୁଷୋତ୍ତମ ପୀଠର ମହତ୍ତ୍ୱ କୀର୍ତ୍ତନ କରିବାକୁ ଭୁଲିନାହାନ୍ତି । ସାରଳାଙ୍କ ମହାଭାରତ ଏବଂ ବଳରାମଙ୍କ ରାମାୟଣ ଓଡ଼ିଆ ସାହିତ୍ୟର ଦୁଇଟି ଆଲୋକ-ବର୍ତ୍ତିକା । ଜାତିଧର୍ମ ନିର୍ବିଶେଷରେ ଏହି ଦୁଇଟି ଗ୍ରନ୍ଥ ଓଡ଼ିଆ ଜୀବନ ସ୍ରୋତକୁ ବିଭିନ୍ନ ଭାବରେ ଅନୁପ୍ରାଣିତ କରି ଆସିଅଛି । ପ୍ରାକୃତ ଭାଷାରେ ସଂସ୍କୃତ ଭାଗବତର ଅନୁବାଦ କରି ଜଗନ୍ନାଥ ଦାସ ଓଡ଼ିଆ ଜାତିକୁ ଏକ ଭାବନାର ସୂତ୍ର ଧରାଇଦେଲେ । କୁଟୀରବାସୀଠାରୁ ପ୍ରାସାଦବାସୀଯାଏଁ ସମସ୍ତେ ପଢ଼ନ୍ତି—

'ଭାଷା ପ୍ରବନ୍ଧେ ଭାଗବତ ।
କହଇ ଦାସ ଜଗନ୍ନାଥ ॥'

ପ୍ରାଚୀନ ସାହିତ୍ୟପରି ଆଧୁନିକ ସାହିତ୍ୟରେ ସୁଦ୍ଧା ଜାତୀୟ ସଂହତିର ଏହି ଉଦାର ମନ୍ତ୍ର ଓଡ଼ିଶା ସାହିତ୍ୟରେ ସବିଶେଷ ବଜ୍ରଗମ୍ଭୀର ସ୍ୱରରେ

ଘୋଷିତ ହୋଇଅଛି । ରାଧାନାଥ, ମଧୁସୂଦନ, ଗଙ୍ଗାଧର, ମିଶ୍ରର ଦାସ, ଗୋପବନ୍ଧୁ, କୁନ୍ତଳାକୁମାରୀ, ଲକ୍ଷ୍ମୀକାନ୍ତ ପ୍ରଭୃତି ଓଡ଼ିଆ ଜନନୀର ଜୟଗାନ କରିବା ସଙ୍ଗେ ସଙ୍ଗେ ଭାରତ ଜନନୀଙ୍କର ମଧ୍ୟ ବନ୍ଦନା ଗାଇଛନ୍ତି । ସେଠାରେ କୌଣସି ପ୍ରକାର ଭେଦାଭେଦର ସତ୍ତା ନାହିଁ । କାନ୍ତକବି ଲକ୍ଷ୍ମୀକାନ୍ତଙ୍କର ଏକ ଅମର ସଙ୍ଗୀତ ଏହିପରି—

'ଜୟ ଜୟ ହିନ୍ଦୁ ମୁସଲମାନ
ଶିଖ ପାରସୀ, ଜୈନ, ବୌଦ୍ଧ
ସୁହୃଦ ଖ୍ରୀଷ୍ଟିୟାନ ।
ନ କର କାହାର ଭୟ
ଗାଅ ଜନ୍ମଭୂମି ଜୟ
ସ୍ୱାଧୀନତା-ବୈଜୟନ୍ତୀ
ଉଡ଼ାଅ ଅବନୀମୟ ।
ଗର୍ଜିଉଠୁ ସିଂହନାଦେ
ସୁପ୍ତ ହିନ୍ଦୁସ୍ଥାନ । (୧)
(ଆସ) ଭାଇ ଭାଇ ମିଶି,
ପାହିଲାଣି ଦୁଃଖ ନିଶି
ନୂତନ ଯୁଗେ ନୂତନ ସୂର୍ଯ୍ୟ
ଉଇଁଲାଣି ଆସି,
ଭାରତକ୍ଷେତ୍ରେ ସଭିଏଁ ମୁକ୍ତ,
ସଭିଏଁ ଶକ୍ତିମାନ । (୨)
ଭାରତ ଗଗନ, ଭାରତ ପବନ
ଭାରତର ମାଟି,
ଭାରତର ଜଳ ଅମୂଲ୍ୟ ଧନ
ଗାଅ ଭାଇମାନେ ଐକ୍ୟତାନେ
ଭାରତର ଜୟଗାନ । (୩)

ଉତ୍କଳକବି ମଧୁସୂଦନ ପବିତ୍ର ଉତ୍କଳଭୂମି ପାଇଁ କେତେ ସ୍ମରଣୀୟ ବନ୍ଦନା ଲେଖି ଯାଇଥିଲେହେଁ ତାଙ୍କର ଧର୍ମବାଣୀ ହେଉଛି—

"ବର୍ଣ୍ଣଭେଦ ଧର୍ମଭେଦର
ଦିନ ହେଉଛି ଶେଷ
ମହାଯୋଗେ ହେବ
ଭାରତ ମହାଭାରତ ବର୍ଷ ।"

ଦେଶ ଓ ଦଶର କଲ୍ୟାଣ ପାଇଁ ଉତ୍କଳୀୟଙ୍କୁ ଆହ୍ୱାନ ଜଣାଇ ଉତ୍କଳ ମଣି ଗୋପବନ୍ଧୁ କହିଥିଲେ—

"ପୂର୍ବ ପୁରୁଷର ପବିତ୍ର ଶ୍ମଶାନ
ଦେଶର ଜାତିର ଗଉରବ ଗାନ,
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁ କ୍ଷୟ
ମାନବ ଜୀବନ ହୁଅଇ ସଫଳ
ଏ ମହାଦୀକ୍ଷା କି ବୁଝିବ ଉତ୍କଳ !"

ସେଦିନ ବିଶ୍ୱଭାବନାରେ ଉଦ୍‌ବୁଦ୍ଧ ହୋଇ ଜାତୀୟ ଜୀବନର ଏହି ମହାନ୍ ପ୍ରବକ୍ତା ଉତ୍କଳୀୟ ଜୀବନ ସହିତ ଭାରତୀୟ ଜୀବନର ଯେଉଁ ମହାନ୍ ଯୋଗସୂତ୍ର କଳ୍ପନା କରିଥିଲେ, ତାହା ଅତ୍ୟନ୍ତ ବିସ୍ମୟକର । ପ୍ରାଚୀନ 'ସତ୍ୟବାଦୀ' ପତ୍ରିକାରେ 'ଆଦର୍ଶ ଓ ଆକାଂକ୍ଷା' ପ୍ରବନ୍ଧରେ ସେ ଲେଖିଥିଲେ —"ତେଣୁ ଆମ୍ଭେମାନେ ଉତ୍କଳ ସେବାରେ ଭାରତସେବା ତଥା ବିଶ୍ୱସେବା କରି ଉତ୍କଳ ଜାତିର ଉନ୍ନତିରେ ମାନବଜାତିର ଉନ୍ନତି ଦେଖିବୁ । ଉତ୍କଳ ପ୍ରାଣରେ ବିଶ୍ୱପ୍ରାଣ ଅନୁଭବ କରିବୁ; ଉତ୍କଳ ହୃଦତନ୍ତ୍ରୀରେ ବିଶ୍ୱମାନବ ହୃଦୟର ଗୀତି ଶୁଣିବୁ । ଉତ୍କଳଭୂମିକୁ ଏହି ବିଶ୍ୱଭାବରେ ଅନୁପ୍ରାଣିତ କରି ଓଡ଼ିଆମାନଙ୍କ ଜାତୀୟ ଜୀବନ ଗଢ଼ିବାକୁ ହେଲେ ଓଡ଼ିଆ ଭାଷା ମୁଖରେ ବିଶ୍ୱଭାବରାଶିର ପ୍ରକାଶ କରାଇବାକୁ ହେବ ।"

ଆଜି ବିଗ୍ରହ-ବିରୋଧ ଓ ନୈତିକ-ସଙ୍କଟ ଯୁଗରେ ଓଡ଼ିଆ ସାହିତ୍ୟ ଏହି ପରମ୍ପରାର ଅଧିକାରୀ ହୋଇ ଜାତୀୟ ସଂହତିର ପ୍ରତିଷ୍ଠା କରିବ ବୋଲି ଆଶା କରାଯାଏ ।

# ପ୍ରଗତି

## ଗତି ପଥରେ ବିଭ୍ରାନ୍ତ

ଭାରତର ରାଜଧାନୀରେ ଗତ କେତେ ବର୍ଷ ହେଲା ଜାତୀୟ ସଂହତି ପ୍ରତିଷ୍ଠା ଉଦ୍ଦେଶ୍ୟରେ ବିଭିନ୍ନ ରାଜନୈତିକ ଦଳର ନେତୃବୃନ୍ଦ ସମ୍ମିଳନୀ ମଣ୍ଡପରେ ଏକାଠି ହେବାର ଦେଖାଯାଉଛି । ଆଳାପ ଆଲୋଚନା ଏବଂ ପ୍ରଚାରପତ୍ର ମାଧ୍ୟମରେ ସାମୟିକ ବୌଦ୍ଧିକ ବାତାବରଣ ହୁଏତ ସରଗରମ ହେଉଛି । ମାତ୍ର ଜାତୀୟ ସଂହତି ପାଇଁ ଯେଉଁ ପ୍ରକାର ଆନ୍ତରିକତା ଏବଂ ମୌଳିକ ପ୍ରଚୋଦନା ଆବଶ୍ୟକ, ତାହା ସମାଜର ପ୍ରାଥମିକ ସ୍ତରରେ ସୁଦ୍ଧା ପ୍ରକାଶିତ ହେଉ ନାହିଁ; ଅଥବା ଜନସାଧାରଣଙ୍କୁ ଏହି ପ୍ରଚାରମୁଖୀ ଆଲୋଚନା ପ୍ରଭାବିତ କରିପାରୁ ନାହିଁ । ଏହାର କାରଣ ଅନୁସନ୍ଧାନ କଲେ ଜଣାଯାଉଛି ଯେ, ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷରେ ଜାତୀୟ ଚରିତ୍ର ସୁଦୃଢ଼ ହୋଇପାରୁ ନାହିଁ ଅଥବା ଜାତୀୟ ଚରିତ୍ରକୁ ବଳିଷ୍ଠ କରିବା ପାଇଁ ଅନୁରୂପ ପଦକ୍ଷେପ ଗ୍ରହଣ କରିବା ସମ୍ଭବ ହୋଇ ନାହିଁ ।

## ଦୁର୍ନୀତିର ଭସ୍ମାସୁର

ଶାସନ ଦାୟିତ୍ୱରେ ଯେଉଁମାନେ ଅଛନ୍ତି ବା ଥିଲେ, ଏହା ସ୍ୱୀକୃତ ଯେ, ସାମାଜିକ ଦୁର୍ନୀତି ଅତ୍ୟନ୍ତ ପ୍ରବଳ ରୂପରେ ଆତ୍ମପ୍ରକାଶ କରିଅଛି । ସେମାନେ ଏହାକୁ ନିୟନ୍ତ୍ରଣ କରିବାକୁ ଅକ୍ଷମ ହୋଇଛନ୍ତି । ଏହି କାରଣରୁ ସାଧାରଣ ଜୀବନଯାତ୍ରା ଅତ୍ୟନ୍ତ ଜଟିଳ ହୋଇପଡ଼ୁଛି । ଦୁର୍ନୀତି ଏକ ମାନସିକ ବ୍ୟାଧି । ସବୁ କାଳରେ ଏହା ଜନଜୀବନକୁ ବିଭ୍ରାନ୍ତ କରିବାକୁ ଉଦ୍ୟମ କରିଥିଲା । କିନ୍ତୁ ସମାଜକୁ ଆୟତ୍ତ କରିପାରି ନଥିଲା । ମାତ୍ର ଏ ଲାଇସେନସ ପରମିଟ ଯୁଗରେ ଶାସକ ଓ ଶାସିତ ଉଭୟେ ଆଜି ଅତ୍ୟନ୍ତ ଅସହାୟ ଅବସ୍ଥାରେ ଅଛନ୍ତି । ଦୁର୍ନୀତି କହିଲେ କେବଳ ଅନ୍ୟାୟ ଭାବରେ

ଅର୍ଥ ଉପାର୍ଜନକୁ ବୁଝିବା ଉଚିତ ନୁହେଁ । ଯେଉଁ କାରଣରୁ ସାଧୁ ଓ ସଚ୍ଚୋଟ ଉପାୟରେ ଶାସକ ଶାସନ ବ୍ୟବସ୍ଥା ଗ୍ରହଣ କରି ପାରୁନାହାଁନ୍ତି, ଯୁବ, ଶିକ୍ଷକ ଓ ନାଗରିକ ନିରପେକ୍ଷ ରହି ପାରୁନାହାନ୍ତି, କ୍ଷମତାର ମୋହ, ଅର୍ଥାର୍ଜନର ବିକୃତ ମନୋଭାବ ଏବଂ ସାମାଜିକ ପ୍ରଭାବ ବିସ୍ତାର ଏବଂ ତଥାକଥିତ ସମ୍ମାନ ଏବଂ ପ୍ରଭୁତ୍ୱ ଅର୍ଜନ ପାଇଁ ବ୍ୟାକୁଳତା ଯେଉଁ କାରଣରୁ ମଣିଷକୁ ଉଦ୍‌ଭ୍ରାନ୍ତ କରିଛି, ତାହା ଦୁର୍ନୀତିର ପ୍ରତିପୋଷଣ ଛଡ଼ା ଆଉ କିଛି ହୋଇନାହିଁ । ରାଜନୈତିକ ଜୀବନ ଏହି କାରଣରୁ ଆଜି ନିର୍ମଳ ଏବଂ ନିଷ୍ଠାପର ବ୍ୟକ୍ତିତ୍ୱ ପାଇଁ ବ୍ୟାକୁଳ ହେଲେ ହେଁ ତାହା ଏକପ୍ରକାର ଅରଣ୍ୟରୋଦନରେ ପରିଣତ ହୋଇଅଛି ।

ଆଭିଜାତ୍ୟର ଆଟୋପ ଯୁଗରେ ପାରସ୍ପରିକ ତୋଷାମଦ ପାଇଁ ଶିଳ୍ପ ସାଗର ମନ୍ଥନ, ଉପଢୌକନ ପ୍ରେରଣ ଓ ଗ୍ରହଣ, କ୍ଲବ ଏବଂ ନୃତ୍ୟଶାଳାରେ ଅବାଧ ବିହରଣକୁ ଯେଉଁମାନେ ସମ୍ଭ୍ରାନ୍ତଚଳଣୀ ବୋଲି ଗ୍ରହଣ କରି-ବସିଛନ୍ତି, ସେମାନେ ଦୁର୍ନୀତି ରାକ୍ଷସୀର କବଳିତ ହେବା ବ୍ୟତୀତ ଅନ୍ୟ ଉପାୟ ନାହିଁ । ଦୁଃଖର କଥା ଯେ, ଆଜି ଏହି ଶ୍ରେଣୀର ନେତୃବୃନ୍ଦ ଜାତୀୟ ଚରିତ୍ରକୁ ନିର୍ମଳ ଏବଂ ସୁଦୃଢ଼ କରିବା ପାଇଁ ଦାୟିତ୍ୱ ଗ୍ରହଣ କରିଛନ୍ତି ।

## ସାଂପ୍ରଦାୟିକ ଭେଦଭାବ

ଏହି ବିଶାଳ ଦେଶରେ ବହୁ ସଂପ୍ରଦାୟ ଏବଂ ଧର୍ମ ଆଚରଣକାରୀ ସମାଜ ଅନେକ କାଳ ଧରି ବସବାସ କରିଅଛନ୍ତି । ଭାରତୀୟ ଜାତୀୟ ଜୀବନର ଏହା ଏକ ବିଶେଷତ୍ୱ । ବହୁ ସଂପ୍ରଦାୟ ଓ ଧାର୍ମିକ ଚଳଣି ମଧ୍ୟରେ ପାର୍ଥକ୍ୟ ଅବଶ୍ୟମ୍ଭାବୀ । ତେଣୁ ସାଂପ୍ରଦାୟିକ ବା ଧାର୍ମିକ ମତଭେଦ ବା ଭେଦଭାବ କିଛି ଆଶ୍ଚର୍ଯ୍ୟର କଥା ନୁହେଁ । ମାତ୍ର ତାହା ସଂଘର୍ଷରେ ପରିଣତ ହୋଇ ଜାତୀୟ ସ୍ୱାର୍ଥର ପରିପନ୍ଥୀ ହେବା ଉଚିତ ହେବ କି ? ସ୍ୱାଧୀନତା ପୂର୍ବରୁ ସାଂପ୍ରଦାୟିକ ବିଭେଦ ପାଇଁ ବିଦେଶୀ ସରକାରଙ୍କୁ ଦାୟୀ କରାଯାଉ-ଥିଲା । ଏହା ମଧ୍ୟ ସତ୍ୟ ଯେ, ସାଂପ୍ରଦାୟିକତାର ବିଷ ମଞ୍ଜି ବିଦେଶୀ ଶାସକ-ମାନେ ଏ ଦେଶରେ ବୁଣି ଦେଇ ଯାଇଥିଲେ । କିନ୍ତୁ ଏହା ମଧ୍ୟ ସତ୍ୟ ଯେ, ସେହି ବିଷମଞ୍ଜିକୁ ନଷ୍ଟ କରିବା ପାଇଁ ଆମର ରାଜନୈତିକ ଦଳ ତଥା ଶାସକ-ମାନେ ସକ୍ଷମ ହୋଇପାରି ନାହାନ୍ତି ।

ସାଂପ୍ରଦାୟିକ ବିଭେଦ କଥା କହିଲେ ହିନ୍ଦୁ ମୁସଲମାନ ସଂଘର୍ଷ ବୋଲି ବୁଝିବାର କୌଣସି କାରଣ ନାହିଁ । ଏ ଦେଶରେ ହିନ୍ଦୁ ମୁସଲମାନଙ୍କ ପରି ଜୈନ, ଖ୍ରୀଷ୍ଟିୟାନ, ବୌଦ୍ଧ, ଇହୁଦୀ, ପାର୍ସି, ଆଦିବାସୀ ପ୍ରଭୃତି ଅସଂଖ୍ୟ ଗୋଷ୍ଠୀର ଲୋକ ଅଛନ୍ତି । ନାନା ମତବାଦ ଓ ଚଳଣୀର ଏକତ୍ର ଅବସ୍ଥାନରେ ସାମୟିକ ଅସୁଖାମଣା ହୁଏତ ହୋଇପାରେ; ମାତ୍ର ଅସହଣୀକ ସଂଘର୍ଷ ରହିବ ନାହିଁକି ?

ଇତିହାସର ଛାତ୍ରମାନେ ଜାଣନ୍ତି, ମଧ୍ୟ-ଯୁଗରେ ଧର୍ମାନ୍ଧତା ଅତି ପ୍ରବଳ ଭାବରେ ତତ୍କାଳୀନ ଶାସକଗୋଷ୍ଠୀଙ୍କୁ ଅଧୀଭୂତ କରିଥିଲା । ତେଣୁ ସୁସଭ୍ୟ ଇଂରେଜ ରାଜ୍ୟର ଟିଉଡର ରାଜବଂଶ ବ୍ୟାପକ ସମର୍ଥକ ଭାବରେ ପ୍ରୋଟେଷ୍ଟାଣ୍ଟ ଧର୍ମୀମାନଙ୍କୁ ଅଗ୍ନିରେ ନିକ୍ଷେପ କରିବାର ବହୁ ଦୃଷ୍ଟାନ୍ତ ରହିଛି । ହିନ୍ଦୁ ଶାସକ ବୌଦ୍ଧ ଶ୍ରମଣମାନଙ୍କ ପ୍ରତି ସାମୟିକ ବହୁ ଅତ୍ୟାଚାର କରିଛନ୍ତି । ସେହିପରି କେତେକ ମତାନ୍ଧ ମୋଗଲ ଓ ମୁସଲମାନ ନରପତି ଧର୍ମ ନାମରେ ଅନ୍ୟ ଧର୍ମ ଉପରେ ଅତ୍ୟାଚାର ଏବଂ ବଳ ପ୍ରୟୋଗ କରିଛନ୍ତି । ମାତ୍ର ଏହା ଧର୍ମର ମୌଳିକ ବାଣୀ ନୁହେଁ ବା ଜାତୀୟ ଜୀବନର ଆତ୍ମିକ ପରିଚୟ ନୁହେଁ । ମାମୁଦ,ତୈମୁରଲଙ୍ଗ ଅଥବା ମହମ୍ମଦ୍‌ଘୋରୀଙ୍କର ଭାରତ ଆକ୍ରମଣ ଧର୍ମଭିତ୍ତିରେ ହୋଇନଥିଲା । ସେମାନେ ଥିଲେ ଆକ୍ରମଣକାରୀ ଏବଂ ଲୁଣ୍ଠନ ଓ ଅତ୍ୟାଚାର ମଧ୍ୟରେ ସେମାନଙ୍କର ଅଭିଯାନ ଆବଦ୍ଧ ରହିଥିଲା । ସେକାଳର ଉଭୟ ହିନ୍ଦୁ ଓ ମୁସଲମାନ ଶାସକ ଏହି ବହିଃଶତ୍ରୁମାନଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିଥିଲେ । ଜର୍ମାନ ଆମେରିକାବାସୀ ନାଜିମାନଙ୍କ ବିରୁଦ୍ଧରେ ଯେଉଁ ଆନ୍ତରିକତା ପ୍ରଦର୍ଶନ କରିଥିଲା, ସେ କାଳର ବିଭିନ୍ନ ସଂପ୍ରଦାୟର ଭାରତୀୟ ଅଧିବାସୀ ଏହି ଲୋକମାନଙ୍କ ବିରୁଦ୍ଧରେ ସେହି ପ୍ରକାର ମନୋଭାବ ପ୍ରକାଶ କରିଥିଲେ । ମୋଗଲ ଶାସନର ପ୍ରତିଷ୍ଠାତା ବାବରଙ୍କୁ ଭାରତ-ଭୂମିରେ ସୁଲତାନ ଇବ୍ରାହିମ ଲୋଦିଙ୍କ ସହିତ ଯୁଦ୍ଧ କରିବାକୁ ହୋଇଥିଲା ଏବଂ ଏହି ସୁଲତାନଙ୍କୁ ବହୁ ହିନ୍ଦୁ ନରପତି ସାହାଯ୍ୟ କରିଥିଲେ । ସମ୍ରାଟ ଆକବର ସିଂହାସନ ଅଧିକାର କରିବା ପାଇଁ ଶେରଶାହଙ୍କ ସହିତ ଯୁଦ୍ଧ କରିବା ଅନିବାର୍ଯ୍ୟ ହୋଇପଡ଼ିଥିଲା । ଧର୍ମାନ୍ଧ ଆଉରଙ୍ଗଜେବ ଧର୍ମ-ନାମରେ ଅନେକ ଅତ୍ୟାଚାର କରିଥିଲେହେଁ ନିଜ ଧର୍ମର ବିଜାପୁର ଓ ଗୋଲକୁଣ୍ଡା ଶାହକଙ୍କୁ ଧ୍ୱଂସ କରିବା ପାଇଁ ସେ କୁଣ୍ଠିତ ହୋଇ ନାହାନ୍ତି ।

ବରଂ ବିଭିନ୍ନ ସଂପ୍ରଦାୟ ଓ ଧର୍ମ ମତବାଦର ଏକତ୍ର ଅବସ୍ଥାନ ଯୋଗୁ ଏକ ଅପୂର୍ବ ସମନ୍ୱୟ ଚିନ୍ତାଧାରାର ଅଭ୍ୟୁଦୟ ହୋଇଥିଲା ।

ତେଣୁ ସ୍ୱାଧୀନ ଭାରତବର୍ଷରେ ଯଦି ବିଭିନ୍ନ ସ୍ଥାନରେ ସାଂପ୍ରଦାୟିକତା ଏବଂ ଧର୍ମବିଶ୍ୱାସର ଅସହଣିକତା ପ୍ରକାଶ ପାଇଛି, ଏଥିପାଇଁ ଧର୍ମଧ୍ୱଜାଧାରୀ ଭଣ୍ଡ ପୁରୋହିତମାନେ ଦାୟୀ ନହେଲେହେଁ ସେମାନେ ରାଜନୀତିକ ଦଳର ସ୍ୱାର୍ଥ ସାଧନ ପାଇଁ ଜନସାଧାରଣଙ୍କୁ ବିଭ୍ରାନ୍ତ କରିଛନ୍ତି ଏବଂ ଏହି ହୀନ ସ୍ୱାର୍ଥ ହାସଲ ଉଦ୍ଦେଶ୍ୟରେ ରାଜନୈତିକ ଦଳ ମଧ୍ୟ ପ୍ରତ୍ୟକ୍ଷ ଅଥବା ପରୋକ୍ଷରେ ସମର୍ଥନ ଜଣାଇଛନ୍ତି ।

## ଧର୍ମନିରପେକ୍ଷତା ଓ ସାଂପ୍ରଦାୟିକ ନିର୍ବାଚନ

ସଂବିଧାନରେ ପ୍ରତ୍ୟେକ ସଂପ୍ରଦାୟର ସମାନ ଅଧିକାର ସାବ୍ୟସ୍ତ କରାଯାଇଛି ଏବଂ ଧର୍ମନିରପେକ୍ଷତା ଭାରତ ରାଷ୍ଟ୍ରର ଆଦର୍ଶ । ପୃଥିବୀର ଏହି ବୃହତ୍ତମ ଗଣତନ୍ତ୍ର ରାଷ୍ଟ୍ରରେ ଯେଉଁ କେତେଗୋଟି ନିର୍ବାଚନ ଯୁଦ୍ଧ ହୋଇଯାଇଛି, ତାହା ଧର୍ମ ନିରପେକ୍ଷତାକୁ ଅଥବା ସାଂପ୍ରଦାୟିକ ସଦ୍‌ଭାବକୁ ଅକ୍ଷୁଣ୍ଣ ରଖିପାରି ନାହିଁ । ଉଭୟ ଗଣତାନ୍ତ୍ରିକ ପ୍ରଗତିଶୀଳ ଦଳ ଏବଂ ସାଂପ୍ରଦାୟିକ ଦଳ ଭୋଟ ଜିଣିବା ଉଦ୍ଦେଶ୍ୟରେ ସାଂପ୍ରଦାୟିକ ଭାବନାକୁ ଉତ୍ତେଜିତ କରିଛନ୍ତି । ଏହି ସାଂପ୍ରଦାୟିକତା କେବଳ ହିନ୍ଦୁ ମୁସଲମାନ ଖ୍ରୀଷ୍ଟିୟାନ ନୁହେଁ, ଏହା ବିଭିନ୍ନ ଜାତି ଓ ଗୋଷ୍ଠୀଗତ ବର୍ଗକୁ ମଧ୍ୟ ସ୍ଥାନ ଦେଇଛି । କେବଳ ସେତିକି ନୁହେଁ, ଲୋକପ୍ରତିନିଧି ନିର୍ବାଚନ ପାଇଁ ପ୍ରାର୍ଥୀ ମନୋନୟନରେ ସୁଦ୍ଧା ଏହି ବର୍ଗର ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ ହୋଇଅଛି । ଆଜି ପ୍ରତ୍ୟେକ ସଂପ୍ରଦାୟର ଲୋକ ଏହି ସ୍ୱାର୍ଥାନ୍ୱେଷୀ ରାଜନୀତିକ ବାଜିବାଜି ଖେଳ ହୃଦୟଙ୍ଗମ କରି ଏହି ପ୍ରତିକ୍ରିୟାଶୀଳ ମନୋଭାବକୁ ପ୍ରତ୍ୟାଖ୍ୟାନ କରିବା ଆବଶ୍ୟକ । ଯେଉଁମାନେ ସାଂଦାୟିକତା ବିରୁଦ୍ଧରେ ସ୍ଲୋଗାନ ଦିଅନ୍ତି, ସେମାନେ ଶାସନକଳକୁ ଆସିବା ପାଇଁ ଏହିପରି ପ୍ରତିକ୍ରିୟାଶୀଳ ଦଳ ସହିତ ନିର୍ବାଚନମେଣ୍ଟ ଅଥବା ମିଳିତ ମନ୍ତ୍ରିମଣ୍ଡଳ ଗଠନ କରୁଛନ୍ତି । ଏହା କେବଳ ବର୍ଗରବିଭ୍ରାଟର ପରିଣତି ମାତ୍ର ।

## ସାଂପ୍ରଦାୟିକ ସ୍ୱାତନ୍ତ୍ର୍ୟବୋଧ

ସ୍ୱାଧୀନ ଭାରତବର୍ଷରେ ପ୍ରତ୍ୟେକ ଅଧିବାସୀର ଧର୍ମ ଓ ସଂପ୍ରଦାୟ ନିର୍ବିଶେଷରେ ସମାନ ନାଗରିକ ଅଧିକାର ସ୍ୱୀକୃତ ହୋଇଅଛି । ସ୍ୱାଧୀନତା ପରେ ଯେଉଁମାନେ ବିଭିନ୍ନ ଯୋଜନାର ପରିକଳ୍ପନା କାର୍ଯ୍ୟକାରୀ କରିବାର ଦାୟିତ୍ୱ ଗ୍ରହଣ କଲେ, ସେମାନେ ଦେଶର ସମୂହ ସ୍ୱାର୍ଥ ଦୃଷ୍ଟିରୁ ଅନୁନ୍ନତ ସମାଜ ଓ ଅଞ୍ଚଳ ପ୍ରତି ଅଧିକ ଧ୍ୟାନ ଦେବା ଆଶା କରାଯାଏ । ତାହା-ହେଲେ କାଳକ୍ରମେ ପ୍ରତ୍ୟେକ ସଂପ୍ରଦାୟର ଲୋକ ସମାନ ସୁଖ ଓ ସୁବିଧା ଭୋଗ କରିପାରିବ । କିନ୍ତୁ ଦୁଃଖର କଥା, କେତେକ ସଂପ୍ରଦାୟର ଅର୍ଥନୈତିକ ତଥା ସାଂସ୍କୃତିକ ବିକାଶ ପାଇଁ ସରକାରୀ କାର୍ଯ୍ୟକୁ ଆବଦ୍ଧ ନ ରଖି ଦଳୀୟ ସ୍ୱାର୍ଥର ପରିପ୍ରେକ୍ଷୀରେ ସାଂପ୍ରଦାୟିକ ପ୍ରତିନିଧି ନିର୍ବାଚନ ପାଇଁ ନିର୍ବାଚନ ମଣ୍ଡଳୀ ଗଠନ ତଥା ବିଭିନ୍ନ ପ୍ରତିଯୋଗିତାମୂଳକ କର୍ମକ୍ଷେତ୍ରରେ ସଂପ୍ରଦାୟ ଭିତ୍ତିରେ ସ୍ଥାନ ସଂରକ୍ଷଣ କିମ୍ବା ଶିକ୍ଷାନୁଷ୍ଠାନରେ ସଂପ୍ରଦାୟ ମଙ୍ଗଳ ନାମରେ ବିଭିନ୍ନ ସଂପ୍ରଦାୟ ପାଇଁ ସ୍ୱତନ୍ତ୍ର ବାସସ୍ଥଳୀ ନିର୍ମାଣ—ଏହି ଭେଦଭାବକୁ ଉତ୍ସାହିତ କରିଛି ଏବଂ ଏହି ତଥାକଥିତ ଅନୁନ୍ନତ ସଂପ୍ରଦାୟର ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଲୋକ ଏହି ସ୍ୱତନ୍ତ୍ର ରାଜନୈତିକ ଏବଂ ଶାସନଗତ ସୁବିଧା ଉପଭୋଗ କରିବା ପାଇଁ ସାଂପ୍ରଦାୟିକ ଉତ୍ତେଜନା ଏବଂ ବିଭେଦର ସ୍ୱର ଯେ ଜାଗ୍ରତ ରଖିବେ, ଏଥିରେ କଣ ସନ୍ଦେହ ଅଛି ?

## ଭାଷାଭିତ୍ତିକ ପ୍ରଦେଶ ଗଠନ ଓ ଭାଷା ଆନ୍ଦୋଳନ

ବିଦେଶୀ ଶାସନର ଚକ୍ରତଳେ ଉପଯୁକ୍ତ ନ୍ୟାୟ ମିଳିଲା ନାହିଁ ବୋଲି ଭାଷା ଭିତ୍ତିରେ ପ୍ରଦେଶ ଗଠନ ଆନ୍ଦୋଳନ ଆରମ୍ଭ ହୋଇଥିଲା ଏବଂ କଂଗ୍ରେସ ମଧ୍ୟ ନୀତି ଦୃଷ୍ଟିରୁ ଏହା ଗ୍ରହଣ କରିଯାଇଥିଲା । ରାଜନୈତିକ ସୁବିଧା ଓ କ୍ଷମତା ଉପଭୋଗ ପାଇଁ ଏହି ପ୍ରାଦେଶିକ ସଂସ୍ଥାଗୁଡ଼ିକ ଅପୂର୍ବ ସୁଯୋଗ ପ୍ରଦାନ କରିଥିବାରୁ ସ୍ୱାଧୀନତାର ଏତେକାଳ ପରେ ସୁଦ୍ଧା ଭାରତୀୟ ନାଗରିକତା ପରିବର୍ତ୍ତେ ଆଞ୍ଚଳିକ ପ୍ରୀତିଜନିତ ରକ୍ତାକ୍ତ ସଂଘର୍ଷଠାରୁ ହରତାଳ, ଆନ୍ଦୋଳନ ଏବଂ ହିଂସାତ୍ମକ କ୍ରିୟାକଳାପ ପ୍ରାଧାନ୍ୟ ଲାଭ କରିଅଛି । ଅତି ବଳିଷ୍ଠ ହସ୍ତରେ ଏହି ଭାଷାଭିତ୍ତିକ, ସଂପ୍ରଦାୟ ଭିତ୍ତିକ

ସଂସ୍ଥାଗୁଡ଼ିକୁ ପୁନର୍ଗଠନ କରିଦେଲେ ଜନସାଧାରଣ ପ୍ରକୃତ ଭାରତୀୟ ଜାତୀୟ ଜୀବନର ମହତ୍ତ୍ୱ ଉପଲବ୍ଧି କରି ପାରନ୍ତେ । ସ୍ୱାର୍ଥାନ୍ୱେଷୀ ନେତୃତ୍ୱ ଏଥିପାଇଁ ଅଗ୍ରସର ହେବା ସମ୍ଭବ ନ ଥିବାରୁ ଦେଶର ବୌଦ୍ଧିକ ବାତାବରଣ ଏ କ୍ଷେତ୍ରରେ ଅନୁପ୍ରାଣିତ ହୋଇ ପାରିଲେ ହୁଏତ ତାହାର ପ୍ରତିକ୍ରିୟା ଅନ୍ୟତ୍ର ପ୍ରକାଶ ପାଇପାରିବ ।

## ଶିକ୍ଷାନୀତିରେ ବୈପ୍ଳବିକ ପରିବର୍ତ୍ତନ ଲୋଡ଼ା

ଗଣତନ୍ତ୍ରର ସୁରକ୍ଷା ପାଇଁ ଜନଜାଗୃତି ଏବଂ ଚେତନାବୋଧ ଏକାନ୍ତ ଆବଶ୍ୟକ । ଏହି ଚେତନାବୋଧ ଏବଂ ଜାଗରଣ କେବଳ ଶିକ୍ଷାନୀତିର ନିୟନ୍ତ୍ରଣ ଦ୍ୱାରା ସମ୍ଭବ ହେବ ବୋଲି ଆଶା କରାଯାଏ । ଉନ୍ନତ ଦେଶମାନଙ୍କରେ ସେମାନେ ଏ କ୍ଷେତ୍ରରେ ଅଗ୍ରସର ହୋଇ ଜାତୀୟ ଆଭିମୁଖ୍ୟକୁ ପରିବର୍ତ୍ତନ କରିଦେବା ପାଇଁ ବହୁ ସଫଳତା ଅର୍ଜନ କରି ପାରିଛନ୍ତି । ଯାବତୀୟ ମାନସିକ ଗ୍ଲାନି, ରକ୍ଷଣଶୀଳତା ଓ ପ୍ରତିକ୍ରିୟାଶୀଳ ଭାବନା କେବଳ ଉଦାର ଶିକ୍ଷାନୀତିର ପ୍ରସାର ଦ୍ୱାରା ଅପସାରିତ ହୋଇ ନୂତନ ଆଦର୍ଶର ପ୍ରତିଷ୍ଠା ହୋଇପାରିବ । ଶିକ୍ଷା କ୍ଷେତ୍ରରେ ଦାରିଦ୍ର୍ୟ ରାଜପଣ କରୁଥିବାରୁ ଦରିଦ୍ର ଜନସାଧାରଣ ସାମୟିକ ଶ୍ଳୋଗାନରେ ବିଭ୍ରାନ୍ତ ହେବାପାଇଁ ପ୍ରେରଣା ଲାଭ କରୁଛନ୍ତି, କିନ୍ତୁ ଥରେ ଶିକ୍ଷାର ଆଭିଜାତ୍ୟ ସମାଜ ଦର୍ଶନକୁ ଅନୁପ୍ରାଣିତ କଲେ ଆପେ ଆପେ ବହୁ ସମସ୍ୟାର ସମାଧାନ ପାଇଁ ପଥ ଉନ୍ମୁକ୍ତ ହୋଇଯିବ । ସମାଜର ମାନସିକ ବାତାବରଣରେ ପରିବର୍ତ୍ତନ ଆନୟନ ନ କରି ଯେଉଁମାନେ କ୍ଷମତା ଅବା ଧନର ଅପପ୍ରୟୋଗ ଦ୍ୱାରା ସମସ୍ୟାର ସମାଧାନ ଲୋଡ଼ୁଛନ୍ତି, ସେମାନେ ଯେ ହତାଶ ହେବେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

# ଜାତୀୟ ଚରିତ୍ର

# ଜାତୀୟ ସଂହତି

"There may be social difference between us. But there is a common platform where we may all meet, the platform of our country's welfare. There is a common cause which may bind us together—the cause of Indian progress.

**Surendranath Banerjee.**

ସ୍ୱାଧୀନତାର ଷୋଳବର୍ଷ ପରେ ଜାତୀୟ ସଂହତି ରହିପାରୁ ନାହିଁ ବୋଲି ଦେଶର ଜନନେତାମାନେ ସଭାସମିତିରେ, ପତ୍ରପତ୍ରିକାରେ ଆଲୋଚନା କରୁଛନ୍ତି । ଏଥିପାଇଁ ଅଶୋକ ମେହେଟାଙ୍କ ନେତୃତ୍ୱରେ ଏକ କମିଟି ଦେଶସାରା ସାକ୍ଷ୍ୟ ଗ୍ରହଣ କାର୍ଯ୍ୟରେ ବ୍ୟାପୃତ ଥିବା ଜଣାଯାଏ । କମିଟି ଅଥବା କମିଶନଙ୍କ ବିବରଣୀ ପର୍ଯ୍ୟାଲୋଚନା ଏବଂ ପରାମର୍ଶ ଯେତେ ଉଚ୍ଚକୋଟୀର ହେଉନା କାହିଁକି, ତାହାର ଯେ କୌଣସି ସୁଫଳ ଫଳୁନାହିଁ, ଏ କଥା ବହୁ କ୍ଷେତ୍ରରେ ଅଙ୍ଗେ ନିଭେଇବାର କଥା ନିରାଶାର ବାଣୀ ପ୍ରଚାର କରିବା ଏ ଲେଖାର ଉଦ୍ଦେଶ୍ୟ ନୁହେଁ । ଆମର କହିବାର ଉଦ୍ଦେଶ୍ୟ ହେଉଛି, ଦେଶର ସାମାଜିକ ଜୀବନରେ ଯେଉଁ ମୌଳିକ ଅଭାବ ରହିଛି, ତାହାର ନିରାକରଣ ନ ହେଲେ 'ଜାତୀୟ ସଂହତି' କେବଳ ନାମମାତ୍ର ସ୍ଲୋଗାନରେହିଁ ପର୍ଯ୍ୟବସିତ ହୋଇ ରହିବ ।

## ଜାତୀୟ ଜୀବନ ଓ ଜାତୀୟ ଚରିତ୍ର

ଜାତୀୟ ସଂହତିର ପ୍ରଧାନ ପରିପୋଷକ ହେଲା ଜାତୀୟ ଜୀବନ ଏବଂ ଜାତୀୟ ଚରିତ୍ର । ଜାତୀୟ ଚରିତ୍ର ନଥିଲେ ଜାତୀୟ ଜୀବନ ଗଠିତ

ହୁଏ ନାହିଁ । ଆଜକୁ ୩୦।୪୦ ବର୍ଷ ତଳେ ଉତ୍କଳକେଶରୀ ମିଃ ଦାସ ଏବଂ ଉତ୍କଳମଣି ଗୋପବନ୍ଧୁ ଦାସ ଜାତୀୟ ଜୀବନ ପ୍ରତିଷ୍ଠା ପାଇଁ ଆହ୍ୱାନ ଦେଇଥିଲେ । ସେମାନଙ୍କର ବକ୍ତୃତା ଏବେ ମଧ୍ୟ ଉଚ୍ଚ ଶିକ୍ଷାନୁଷ୍ଠାନରେ ପଠିତ ଓ ଆଲୋଚିତ ହେଉଛୁ ।

ପରାଧୀନ ଭାରତବର୍ଷରେ ସେମାନେ ଯେଉଁଥିପାଇଁ ବ୍ୟାକୁଳତା ପ୍ରକାଶ କରିଥିଲେ, ସ୍ୱାଧୀନତାର ୧୭ବର୍ଷ ପରେ ମଧ୍ୟ ସେ ଅଭାବ ଦୂରୀ-କରଣ ହୋଇ ପାରିନାହିଁ । ଏହା ଅତ୍ୟନ୍ତ ପରିତାପର ବିଷୟ । ଜାତୀୟ ଜୀବନ ଆଜି ଏତେ ପରିମାଣରେ କଳଙ୍କିତ ହୋଇ ପଡ଼ିଛି ଯେ, 'ଗୋଦରି କୋଡ଼େ ଯେତେ, ମାଡ଼େ ସେତେ' ନ୍ୟାୟରେ ସ୍ୱାଧୀନ ଜନମଙ୍ଗଳ ରାଷ୍ଟ୍ରର ବହୁ ସଂସ୍କାରମୂଳକ କାର୍ଯ୍ୟ ବ୍ୟର୍ଥ ହୋଇ ଯାଉଛି; ଅଥବା ବିଶେଷ ଫଳପ୍ରସୂ ହୋଇ ପାରୁନାହିଁ । ସ୍ୱାଧୀନ ସମାଜର ନିର୍ମାତାମାନେ ଏ କଥା ଯେ ଉପଲବ୍ଧି କରୁନାହାନ୍ତି, ତାହା ନୁହେଁ । ମାତ୍ର ସେମାନେ ବୋଧହୁଏ ଅସହାୟ ହୋଇ କେବଳ ନୀରବ ଦର୍ଶକ ଭାବରେ ଏହି ନିମ୍ନଗାମୀ ସମାଜର ଗତିଶୀଳତାକୁ ଲକ୍ଷ୍ୟ କରୁଛନ୍ତି । ତାହା ନ ହେଲେ ଏ ଦେଶରେ ଗୁଡ଼ଉଲରେ ଗୋଡ଼ି, ସୋରିଷ ତେଲରେ ଅଗରି, ଚିନିରେ କାଚଗୁଣ୍ଡ, ଗୁହାରେ ଚମଡ଼ା ଗୁଣ୍ଡ, ଔଷଧ ନାମରେ ବିଷ ବିକ୍ରୟ କରି ଧୀରେ ଧୀରେ ନରନାରୀଙ୍କ ମହାପ୍ରୟାଣ ପଥ ସୁଗମ କରାଯାଉ ନଥାନ୍ତା । ଅତ୍ୟାଚାର, ଅନାଚାର ଓ ଦୁର୍ନୀତିରେ ସମସ୍ତ ସମାଜ ଆଜି ଅତିଷ୍ଠ ହୋଇ ଚିତ୍କାର କରୁଛି । ଦେଶର ଅଭାବ ଓ ଅନାଟନର ସୀମା ନାହିଁ । ଅସମାନ୍ତର ସମାଜରେ ଜୀବନ ଧାରଣର ମାନ ଯେପରି ଅତ୍ୟନ୍ତ ହାସ୍ୟାସ୍ପଦ, ଜୀବନର ଚଳାଚଳ ମଧ୍ୟ ଅତ୍ୟନ୍ତ କରୁଣ ଓ ଦୁଃଖପ୍ରଦ । ଏହାର ଉପାୟ କଅଣ ?

## ଯୋଜନାର ପରିଣତି

ତେଣୁ ସ୍ୱତଃ ଏ ଦେଶର ଯୋଜନା ଏବଂ ତାହାର ପରିଣତି ସମ୍ପର୍କରେ ଆଲୋଚନା କରିବାକୁ ଇଚ୍ଛା ହୁଏ । ଦେଶରେ ଦୁଇଟି ପଞ୍ଚବାର୍ଷିକ ଯୋଜନା ପୂର୍ଣ୍ଣ ହୋଇ ତୃତୀୟ ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକାରୀ ହେଉଛି । ଶହ ଶହ କୋଟି ଟଙ୍କା ଖଟାଯାଇ ଏ କୃଷିପ୍ରଧାନ ଦେଶକୁ ଏକ ଶିଳ୍ପସମୃଦ୍ଧ ଦେଶରେ ପରିଣତ କରିବା ପାଇଁ ସଙ୍କଳ୍ପ ଗ୍ରହଣ କରାଯାଉଛି । ଏପରି କି ଏହି

ସ୍ୱଳ୍ପକାଳ ମଧ୍ୟରେ କେତେକ କ୍ଷେତ୍ରରେ ସମଗ୍ର ଏସିଆ ଭୂଖଣ୍ଡରେ ତୁଳନା କଲାଭଳି ପ୍ରଗତି ହାସଲ ହୋଇଛି । କିନ୍ତୁ ଏ ସବୁ ଉଜ୍ଜ୍ୱଳ ଭବିଷ୍ୟତର ସମ୍ଭାବନା ସତ୍ତ୍ୱେ ବର୍ତ୍ତମାନ ଭାରତୀୟମାନଙ୍କର ଜୀବନ ଧାରଣର ଅବସ୍ଥା ବା ଚଳାଚଳ ବ୍ୟାପାରରେ ଅତ୍ୟନ୍ତ ସଙ୍କଟ କାଳ ଉପସ୍ଥିତ । ବ୍ୟବହାର୍ଯ୍ୟ ବସ୍ତୁର ମୂଲ୍ୟ ଯେପରି ପ୍ରଖର ଗତିରେ ବଢ଼ି ଚାଲିଛି, ସେହି ଅନୁପାତରେ ସରକାରୀ କର-ଭାରର ଚାପ ମଧ୍ୟ ଆହୁରି ବିଷମ ହୋଇପଡ଼ୁଛି । ଏହି ପରିସ୍ଥିତିରେ ଆନୁପାତିକ ବ୍ୟକ୍ତିଗତ ଆୟ ସେପରି ବଢ଼ିନାହିଁ । ତେଣୁ ସମାଜର ଅର୍ଥନୈତିକ ଜୀବନ ଯେ ଅତ୍ୟନ୍ତ ସଙ୍କଟାପନ୍ନ, ଏଥିରେ ଆଦୌ ସନ୍ଦେହ ନାହିଁ । ଅଭାବେ ସ୍ୱଭାବ ନଷ୍ଟ ! ଭାରତର ଜାତୀୟ ଚରିତ୍ର ଉପରେ ଏହି ଉତ୍କଟ ପରିସ୍ଥିତି ଯେ ଯଥେଷ୍ଟ ପ୍ରଭାବ ବିସ୍ତାର କରି ଚାଲିଛି,ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଯେଉଁମାନେ ଅନ୍ୟ ଦେଶର ପ୍ରଗତିର ଇତିହାସ ଚର୍ଚ୍ଚା କରି ସମାଜକୁ ଏହି ସଙ୍କଟରେ ସମ୍ମୁଖୀନ ହେବାକୁ ଆହ୍ୱାନ ଜଣାଇ ଥାଆନ୍ତି, ସେମାନେ ଜାତୀୟ ସଙ୍କଟର ପ୍ରଧାନ କାରଣ ! ଜାତୀୟ ଚରିତ୍ର କଥାଟି ଭୁଲି ଯାଇଥାନ୍ତି । ଜାତୀୟ ଚରିତ୍ର ବଳିଷ୍ଠ ହୋଇଥିଲେ ସମାଜ ଯେକୌଣସି ସଙ୍କଟରେ ସମ୍ମୁଖୀନ ହେବାକୁ ସାହସ କରିଥାଏ । ମାତ୍ର ଭାରତବର୍ଷରେ ସେପରି ପାଣିପାଗ ସୃଷ୍ଟି ହୋଇନାହିଁ ।

## ଆମର ଅଧଃପତନର କାରଣ

ବ୍ୟକ୍ତିପୂଜା ଆମ ଦେଶର ସ୍ୱାଧୀନ ସମାଜରେ ବୋଧହୁଏ ସର୍ବପ୍ରଧାନ କଳଙ୍କ । ଏହା ଯେ ଜାତିର ଆତ୍ମବିଶ୍ୱାସ ହରଣ କରିଥାଏ ସେ ସମସ୍ୟାଟି ଟିକିଏ ତଳେଇ ଆଲୋଚନା କଲେ ହୃଦୟଙ୍ଗମ କରାଯାଇପାରିବ । "ପଣ୍ଡିତ ନେହେରୁଙ୍କ ପରେ କିଏ ଦେଶର ଭାଗ୍ୟଡୋରି ଗ୍ରହଣ କରିବେ" ଶୀର୍ଷକ ଆଲୋଚନା ଗତ କେତେବର୍ଷ ହେଲା ଏ ଦେଶରେ ଅତି ତୀବ୍ର ଭାବରେ ଚାଲିଛି । ଏହା କେବଳ ସ୍ୱାଧୀନତାର ନୁହେଁ, ଗଣତନ୍ତ୍ର ମନୋଭାବର ମଧ୍ୟ ପରିପନ୍ଥୀ ।

ସମାଜବାଦର ଆଦର୍ଶ ଆମେ ଗ୍ରହଣ କରିଛୁ; ମାତ୍ର ବ୍ୟକ୍ତିଠାରୁ ଯେ ସମାଜ ବଡ଼, ଏହି ମୌଳିକ କଥାଟି ଆମେ ସ୍ୱୀକାର କରିବାକୁ ପ୍ରସ୍ତୁତ ନଥିଲା

ପରି ଜଣାଯାଉଛି । ସମାଜସେବା ନାମରେ ବ୍ୟକ୍ତିଗତ ହୀନ ସ୍ୱାର୍ଥ ସର୍ବସ୍ୱ କାର୍ଯ୍ୟ କରିଚାଲିଛି । ରାଜନୀତିକ ରାକ୍ଷସର ପ୍ରାଦୁର୍ଭାବ ଆଜି ଏପରି ସର୍ବବାଦୀ-ସମ୍ମତ ଯେ, ସମାଜରେ ଅଧିକାର ଜାହିର କରିବାପାଇଁ ଯୋଗ୍ୟତାକୁ ମାପକାଠି କରାନଯାଇ ସାମୟିକ କ୍ଷମତାକୁ ପ୍ରାଧାନ୍ୟ ଦିଆଯାଉଛି । ଏ ପ୍ରଶ୍ନ ତ କେହି ପଚାରିବାକୁ ସାହସ କରୁନାହାନ୍ତି 'କାହିଁକି ପ୍ରତ୍ୟେକ ସଭା ସମିତି ଏବଂ ସମ୍ମିଳନୀରେ ଅନଧିକାରୀ ଲୋକେ ପୁରୋଧା ହେବେ ?'

ଲୋକସମ୍ପର୍କ ନାମରେ ନେତାମାନେ ଯେପରି ଅସଂଖ୍ୟ ସଭାସମିତିରେ ଯୋଗଦାନ କରି ନିଜର ବହୁମୂଲ୍ୟ ସମୟ ନଷ୍ଟ କରୁଛନ୍ତି, ନ୍ୟସ୍ତ-ସ୍ୱାର୍ଥଯୁକ୍ତ ଦଳୀୟ କର୍ମୀଗଣ ଅନେକ ସମୟରେ ପ୍ରଭାବଶାଳୀ ଲୋକଙ୍କର ଉପରୋଧରେ ନାନା ବିଶୃଙ୍ଖଳାର କାରଣ ହେଉଛନ୍ତି । ଏଥିରେ ସାମାଜିକ ସଂହତି ତ ରହିପାରୁ ନାହିଁ, ଜାତୀୟ ସଂହତି ରହିବ କିପରି ? ଉଦାହରଣ ସ୍ୱରୂପ ଏକ ନିର୍ଦ୍ଦିଷ୍ଟ ସାଂସ୍କୃତିକ ଅନୁଷ୍ଠାନ ଏବଂ ସାଂସ୍କୃତିକ ସମ୍ମିଳନୀକୁ ଦଳୀୟ ସ୍ୱାର୍ଥରୁ ବଞ୍ଚାଇବାର କଥା ନୁହେଁ । ଦଳର ଭୂମିକା ଅତ୍ୟନ୍ତ ସଂକୀର୍ଣ୍ଣ । ମାତ୍ର ସାଂସ୍କୃତିକ ପୀଠ ଅତ୍ୟନ୍ତ ବ୍ୟାପକ ଏବଂ ଉଦାର ମଧ୍ୟ । ଏହା ସବୁ ଧର୍ମ ଓ ମତବାଦର ଲୋକଙ୍କୁ କୋଳରେ ଗ୍ରହଣ କରିବାର କଥା । ମାତ୍ର ବାସ୍ତବକ୍ଷେତ୍ରରେ ତାହା ବିଫଳ ହୋଇଯାଉଛି । ତେବେ ସାଂସ୍କୃତିକ କ୍ଷେତ୍ରରେ ମହାଜାତୀୟ ମିଳନର ସମ୍ଭାବନା ଅବା କିପରି ଦେଖାଦେବ !

## ନିର୍ବାଚନର ବ୍ରହ୍ମରାକ୍ଷସ

ଆମର ଗର୍ବ ଏବଂ ଗୌରବ ଯେ, ପୃଥିବୀରେ ବୃହତ୍ତମ ଗଣତନ୍ତ୍ର ରାଷ୍ଟ୍ର ହେଉଛି ଭାରତବର୍ଷ । ବହୁବର୍ଷର ପରାଧୀନତା ପରେ ଏ ଦେଶରେ ସାବାଳକ ଭୋଟରେ ଯେଉଁ ନିର୍ବାଚନର ପରୀକ୍ଷା ହେଲା, ତାହା ପୃଥିବୀର ଇତିହାସରେ ଅନନ୍ୟସାଧାରଣ । ପୃଥିବୀର ବହୁ ସମୃଦ୍ଧ ଏବଂ ଶିକ୍ଷିତ ରାଷ୍ଟ୍ର ଏତେ ଅଳ୍ପକାଳ ମଧ୍ୟରେ ଏପରି ମହାନ୍ ପରୀକ୍ଷା କରିବାକୁ ସାହସ କରି ନଥିଲେ ।

କିନ୍ତୁ ନିର୍ବାଚନ ସୁଯୋଗ ଏ ଦେଶରେ ଜନ-ଜାଗରଣ ପାଇଁ ଯେପରି କ୍ଷେତ୍ର ପ୍ରସ୍ତୁତ କଲା, ତାହା ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ହେଲେହେଁ ନିର୍ବାଚନ

ନାମରେ ରାଜନୈତିକ ଦଳର ଅସାଧୁତା, ଜାତିଆଣ ଭିତ୍ତିରେ ନିର୍ବାଚନ ଲଢ଼େଇ ଏବଂ ରାଜନୈତିକ ମତବାଦର ଅସହଣିକତା ଏବଂ କ୍ଷମତାର ଅପବ୍ୟବହାର ଓ ମତାନ୍ଧତା କାଳ କାଳର ନିରଳସ ପଲ୍ଲୀ ସଂସାରକୁ ଅତ୍ୟନ୍ତ କ୍ଳିଷ୍ଟ ଏବଂ କୁଟିଳ କରି ପକାଇଛି । ରାକ୍ଷସ ରକ୍ତବୀଜର ଟୋପା ଟୋପା ରକ୍ତ ଗୋଟା ଗୋଟା ଅସୁର ଜନ୍ମ କଲାପରି ନିର୍ବାଚନ ପରେ ନିର୍ବାଚନ ଏ ଦେଶର ପଲ୍ଲୀ ସଂସାରରେ ବିଭେଦର କୁହେଳି ସୃଷ୍ଟି କରୁଅଛି, ନୂଆ ନୂଆ ଜାତିଆଣ ଭାବ ମୁଣ୍ଡ ଟେକି ଉଠିଛି । କାଳ କାଳର ସାମାଜିକ ବୁଝାମଣା ଓଲଟପାଲଟ ହୋଇଯାଇଛି । ଆଜି ଏ ଅବସ୍ଥାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ରାଜନୈତିକ ନେତା-ମାନଙ୍କର ଅସାଧୁତା ସାମାଜିକ ଅସାଧୁତାକୁ ପ୍ରଶ୍ରୟ ଦିଏ । ଆମ ଦେଶରେ ରାଜନୈତିକ ଦଳ ଗୁଡ଼ିକରେ ବିଶୃଙ୍ଖଳିତ ଆଚରଣ ସମାଜର ଏହି ଦୁର୍ଗତିପାଇଁ ଅତ୍ୟନ୍ତ ଦାୟୀ । ସେଥିପାଇଁ ଦଳ ପରିବର୍ତ୍ତନ, ରାଜନୈତିକ ମତ ପରିବର୍ତ୍ତନ, କ୍ଷମତା ଜାହିର କରି ଦଳର ପ୍ରତିପୋଷଣ ଏବଂ ସର୍ବୋପରି ଧର୍ମାନ୍ଧତା ଓ ମତାନ୍ଧତାର ଅହଙ୍କାର ଏକ ସାଧାରଣ କଥାରେ ପରିଣତ ହୋଇଅଛି । ସାଧାରଣ ଜୀବନରେ ପ୍ରତିଷ୍ଠିତ ଅଥଚ ଅସାଧୁ ଜନ-ନେତା ଯଦି ପ୍ରଧାନ ସାଂସ୍କୃତିକ ଅନୁଷ୍ଠାନ ଗୁଡ଼ିକର ମୁଖ୍ୟ ନିଯୁକ୍ତ ହେବେ, ତାହା ହେଲେ ସେଠାରେ ନିର୍ମଳ ଶାସନ ଏବଂ ଆଚରଣ ଆଶା କରିବା ସମ୍ଭବ ନୁହେଁ । ସେଭଳି ଲୋକେ ବରଂ ଯୁବ-ସମାଜର ନୈରାଶ୍ୟବାଦ ଏବଂ ବିଶୃଙ୍ଖଳତା ପାଇଁ ଯେ ବହୁ ପରିମାଣରେ ଦାୟୀ, ଏକଥା ଯେତେ ଶୀଘ୍ର ସ୍ୱୀକାର କରାଯାଏ, ଦେଶର ସେତେ ଶୀଘ୍ର ମଙ୍ଗଳ ।

## ନୂଆ ଜାତିଆଣ ଓ ଗୋଷ୍ଠୀଗତ ଭାବନା

ସ୍ୱାଧୀନତା ପରେ ରାଷ୍ଟ୍ରର କର୍ମପରିସର ବଢ଼ିବା ସଙ୍ଗେ ସଙ୍ଗେ ଆମର ଉଚ୍ଚ ସରକାରୀ କର୍ମଚାରୀଙ୍କ ସଂଖ୍ୟା ବଢ଼ିବା ସ୍ୱାଭାବିକ । ଜନମଙ୍ଗଳ ରାଷ୍ଟ୍ରରେ ବାସ୍ତବ ପକ୍ଷେ ସେହିମାନେ ହେଉଛନ୍ତି ଜନତା ଓ ରାଷ୍ଟ୍ର ମଧ୍ୟରେ ଏକମାତ୍ର ସ୍ୱାଭାବିକ ଯୋଗସୂତ୍ର । ବିଦେଶୀ ଅମଳରେ କଣ ହେଉଥିଲା, ସେ କଥା ଯଦି ତୁଳନା କରାଯାଏ, ତାହାହେଲେ

ଲଜ୍ଜାରେ ମୁଣ୍ଡ ନୁଆଁଇବାକୁ ହୁଏ । ଶାସକର ଓ ଶୋଷଣର ମନୋଭାବ ନେଇ ଯେଉଁ ଗୋରା ଲୋକେ ଏ ଦେଶକୁ ଆସିଥିଲେ, ସେମାନଙ୍କ ମଧ୍ୟରେ ଅନେକ ସଂସ୍କୃତିଭାବାପନ୍ନ ଓ ପଣ୍ଡିତ ଲୋକ ଥିଲେ । ସେମାନଙ୍କର ରାଷ୍ଟ୍ରୀୟ ଆଭିଜାତ୍ୟ ଓ ପରଂପରା ସେମାନଙ୍କୁ ଏ ଦେଶରେ ପ୍ରତିଷ୍ଠା ଅର୍ଜନ କରିବାପାଇଁ ଯଥେଷ୍ଟ ସାହାଯ୍ୟ କରୁଥିଲା । ତେଣୁ ବିମ୍ସ, ହଣ୍ଟର, ଷ୍ଟାର୍ଲିଂ, ରେଭେନ୍ସା, ମାକଲେ, ସାର୍ ଉଇଲ୍ୟମ୍ ଜୋନ୍ସଙ୍କ ଭଳି ବିଦେଶୀଗଣ ଏ ଦେଶର କି ଉପକାର କରିଛନ୍ତି, ତାହାର ପ୍ରମାଣ ହେଉଛି ଇତିହାସ । ସେତେବେଳର ଶାସକମାନଙ୍କ ନଖଦର୍ପଣରେ ସମଗ୍ର ରାଜ୍ୟଟା ରହୁଥିଲା । ସେମାନଙ୍କ ସୁବିଧାପାଇଁ ଗେଜେଟିଅର ସଂକଳିତ ହୋଇଥିଲା । ସେମାନେ ସାତସମୁଦ୍ର ସେପାରିରୁ ଆସି ଏ ଦେଶର ଭାଷା ଓ ସାହିତ୍ୟ କେବଳ ଶିଖିନଥିଲେ, ସେ ସମ୍ପର୍କରେ ପାଣ୍ଡିତ୍ୟପୂର୍ଣ୍ଣ ବିବରଣୀ ମଧ୍ୟ ଲିପିବଦ୍ଧ କରି ଯାଇଛନ୍ତି ।

କିନ୍ତୁ ବର୍ତ୍ତମାନ ଅବସ୍ଥା ଓଲଟି ପଡ଼ିଛି । ଆମରି ଦେଶର ସନ୍ତାନ ଉଚ୍ଚ ଦପ୍ତରରେ ଅବସ୍ଥାପିତ ହେବା ସଙ୍ଗେ ସଙ୍ଗେ ସେ ନିଜ ଘରେ ବିଦେଶୀ ବୋଲି ଛଳନା କରୁଛି । ତାର ସ୍ୱତନ୍ତ୍ର ସଂସାରରେ ସେ ଆତ୍ମନିବିଷ୍ଟ । ଏହା ହେଉଛି ଏ ଯୁଗରେ ଏକ ମାରାତ୍ମକ ଜାତିଆଣ ପ୍ରଥା । ସେହି ବ୍ୟକ୍ତି ପୂଜାର ଦର୍ଶନରୁ ଏ ମାନସିକ ବ୍ୟାଧି ସମାଜରେ ସଞ୍ଚରି ଯାଇଛି । ସେଥି ପାଇଁ ଆଇ. ଏ. ଏସ., ନନ୍-ଆଇ. ଏ. ଏସ. ଗୋଷ୍ଠୀ ମଧ୍ୟରେ ଏ ଦେଶର ସାମାଜିକ ଜୀବନରେ ଆକାଶ ପାତାଳ ପ୍ରଭେଦ ଅନୁଭୂତ ହେଉଛି । ସରକାରୀ କଳର ଆଚରଣକୁ ସାମାଜିକ ଜୀବନର ଆଚରଣରେ ମିଳେଇ ଚାଲିବା ଅନ୍ୟ ଏକ ଉତ୍କଟ ସାମାଜିକ ସଙ୍କଟ । କୌଣସି ସଭ୍ୟ ଉନ୍ନତ ଦେଶରେ ଏ ଭେଦାଭେଦକୁ ପ୍ରଶ୍ରୟ ଦିଆଯାଏ ନାହିଁ । ମାତ୍ର ଏ ଦେଶରେ ତାହା ଅତି ବିପଜ୍ଜନକ ଭାବରେ ବଢ଼ିଚାଲିଛି । ଯେଉଁଠି ଆନ୍ତଃପ୍ରାଦେଶିକ ସ୍ତରରେ କର୍ମଚାରୀ ବିନିମୟ ଚାଲିଛି, ସେଠାରେ କେବଳ ଉର୍ଦ୍ଧ୍ୱତନ କର୍ମଚାରୀଙ୍କର ବ୍ୟକ୍ତିଗତ ସ୍ୱାର୍ଥ ଛାଡ଼ିଦେଲେ ରାଷ୍ଟ୍ରୀୟ ମର୍ଯ୍ୟାଦାବୋଧ କିମ୍ବା ସେ ଅବସ୍ଥାପିତ ହୋଇଥିବା ଅଞ୍ଚଳର ଭାଷା ଏବଂ ସମାଜ ପ୍ରତି ଆନ୍ତରିକତା ପ୍ରକାଶ ପାଉନାହିଁ । ଏପରି ମନୋଭାବ

ପ୍ରକାଶ ନ ପାଇ ପାରିଲେ ସେ କର୍ମଚାରୀମାନଙ୍କୁ ଦୋଷ ମଧ୍ୟ ଦିଆଯାଇ ପାରିବନାହିଁ ।

## ଜାତିଆଣ ଅନୁଷ୍ଠାନ

କାରଣ ଦେଶର ପ୍ରତ୍ୟେକ ଅଞ୍ଚଳରେ ଜାତିଆଣ ଅନୁଷ୍ଠାନ ଏଥିପାଇଁ ପ୍ରଧାନତଃ ଦାୟୀ । ଓଡ଼ିଶାର ସାଂସ୍କୃତିକ ପୀଠସ୍ଥଳୀ କଟକ ସହରରେ ଯଦି ଓଡ଼ିଶା ଆସୋସିଏସନ ଆଜି ପର୍ଯ୍ୟନ୍ତ ବଞ୍ଚିରହିଛି, ତାହାହେଲେ ଅନ୍ୟ କଥା ଅବା କଣ ବିଚାର କରାଯାଇପାରିବ ।

ଦେଶର ପ୍ରତ୍ୟେକ କେନ୍ଦ୍ରସ୍ଥଳୀରେ କେରଳ ସମାଜ, ତାମିଲ ମହାସଭା, ଗୁଜୁରାଟୀ ସମ୍ମିଳନୀ, ପ୍ରବାସୀ ବଙ୍ଗୀୟ ଅନୁଷ୍ଠାନ ଇତ୍ୟାଦି ନାମରେ ନାନା ଗୋଷ୍ଠୀଗତ ଅନୁଷ୍ଠାନ ଠିଆହୋଇଛନ୍ତି । ସେହିପରି କଲିକତାରେ, ମାନ୍ଦ୍ରାଜରେ, ବମ୍ବେ ନଗରୀରେ ପ୍ରବାସୀ ଓଡ଼ିଆ ଅନୁଷ୍ଠାନ ମଧ୍ୟ ଦେଖାଯାଏ । ଅବଶ୍ୟ ଏହି ଅନୁଷ୍ଠାନଗୁଡ଼ିକର ଉଦ୍ଦେଶ୍ୟ ହେଉଛି ପ୍ରବାସ ରହଣୀ କାଳରେ ନିଜ ନିଜ ଗୋଷ୍ଠୀ ମଧ୍ୟରେ ବୁଝାମଣା ପ୍ରତିଷ୍ଠା ଏବଂ ସାଂସ୍କୃତିକ ବିନୋଦନ । ମାତ୍ର ଫଳତଃ ଏହି ଅନୁଷ୍ଠାନଗୁଡ଼ିକ ହିଁ ବହୁ କ୍ଷେତ୍ରରେ ସଙ୍କୀର୍ଣ୍ଣ ଗୋଷ୍ଠୀଗତ ସ୍ୱାର୍ଥର ଚକ୍ରାନ୍ତ ଭୂମି ହୋଇ ସେହି ସେହି ଅଞ୍ଚଳର ସ୍ୱାର୍ଥହାନି କରିବା ପାଇଁ ସଙ୍ଘବଦ୍ଧ କାର୍ଯ୍ୟ କରିବାର ଆଶଙ୍କା ଥାଏ । ମନେହୁଏ ଧର୍ମଗତ ଭେଦ ଅପେକ୍ଷା ଆଧୁନିକ ସମାଜରେ ଭାଷାଗତ ଏବଂ ଗୋଷ୍ଠୀଗତ ଭେଦ ଏତେ ଉତ୍କଟ ଯେ, ତାର ସମାଧାନ ନ ହେଲେ ଜାତୀୟ ସଂହତି ସୁଦୂର ପରାହତ ହୋଇପଡ଼ିବ । ଆମର ଅଜାଣତରେ ଦେଶର ଚତୁର୍ଦ୍ଦିଗରେ ମାଡ୍ରାସି ହୋଟେଲ, ଆଦର୍ଶ ହିନ୍ଦୁ ହୋଟେଲ, ପଞ୍ଜାବୀ ହୋଟେଲ, ଅଥବା ମାରୁଆଡ଼ି ହୋଟେଲ ନାମରେ ଅନୁଷ୍ଠାନ ପ୍ରତିଷ୍ଠା ହୋଇଥିବାରୁ ଏହା ଦେଶର ବିଭିନ୍ନ ସ୍ଥଳରେ ଜାତୀୟ ସମନ୍ୱୟ ନ ଆଣି ସାଂସ୍କୃତିକ ବିଭେଦ ଅଥବା ଖାପଛଡ଼ା ଭାବ ସୃଷ୍ଟି କରିବା ପାଇଁ ସାହାଯ୍ୟ କରେ । ଦିଲ୍ଲୀ ସହରରେ ଜଣେ ସାଧାରଣ ବଙ୍ଗାଳୀ ଯେପରି ଖୋଜି ଖୋଜି ଲକ୍ଷ୍ମୀବାଡ଼ରେ ଆଶ୍ରୟ ନିଏ, ପଞ୍ଜାବର ଅମୃତ ସହରଠାରେ ଜଣେ ଦକ୍ଷିଣ ଭାରତୀୟ ଗୋଟିଏ ମାଡ୍ରାସୀ ହୋଟେଲର

ସଂଧାନରେ ଥାଏ । ଏହାଦ୍ୱାରା ସାଂସ୍କୃତିକ ବୁଝାମଣା କିପରି ହେବ ? "ଯେ ଦେଶେ ଯାଇ, ସେ ଫଳ ଖାଇ" ଏ ମତ କାହିଁକି ପ୍ରଚଳିତ ଥିଲା ? ଦୁଃଖର କଥା ଯେ, ବ୍ୟକ୍ତିକେନ୍ଦ୍ରିକ ଅନୁଚିନ୍ତା ହିଁ ଏହି ଅସ୍ୱାସ୍ଥ୍ୟକର ମନୋଭାବର କାରଣ । ଦେଶରେ ଧର୍ମ ଅନୁଷ୍ଠାନ ଭିତ୍ତିରେ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରାଯାଇଛି ଏବଂ ନିର୍ଦ୍ଦିଷ୍ଟ ଧର୍ମ ଓ ଗୋଷ୍ଠୀର ଲୋକେ ସେହି ଶିକ୍ଷାନୁଷ୍ଠାନରେ ସଂକୀର୍ଣ୍ଣ ଦଳୀୟ ସ୍ୱାର୍ଥରକ୍ଷା ପାଇଁ ବଦ୍ଧପରିକର ହେଉଛନ୍ତି । ଜାତିଭିତ୍ତିରେ ଶିକ୍ଷାନୁଷ୍ଠାନ କିପରି ସଂହମିତ ଏବଂ ଅହିତକର, ତାହା ମାନ୍ଦ୍ରାଜର ଶିକ୍ଷା ବ୍ୟବସ୍ଥା ଲକ୍ଷ୍ୟ କଲେ ବୁଝାପଡ଼ିବ । ମାତ୍ର ଅଳ୍ପ ବହୁତେ ଦେଶର ସର୍ବାଞ୍ଚଳରେ ଏପ୍ରକାର ବ୍ୟବସ୍ଥା ଅଛି । ଆହୁରି ମଜାର କଥା ଯେ, ଗୋଷ୍ଠୀଗତ ଉନ୍ନୟନ ନାମରେ ସରକାରୀ ସାହାଯ୍ୟରେ ହରିଜନ ହଷ୍ଟେଲ, ଆଦିବାସୀ ବୋର୍ଡ଼ିଂ ପ୍ରଭୃତି ଅନୁଷ୍ଠାନ ପ୍ରତିଷ୍ଠା ଚାଲିଛି । ଛାତ୍ର ସମାଜରେ ଏପରି ଗୋଷ୍ଠୀଗତ ବସବାସ ଅଧିକ ହୀନମନ୍ୟତା ଏବଂ ଦଳୀୟ ମନୋଭାବ ସଂଗ୍ରହ କରି ଜାତୀୟ ସଂହତିରେ ଯେ ଆଘାତ ଦେବ, ଏକଥାରେ ସନ୍ଦେହ କଣ ଅଛି ?

## ଜାତୀୟ ସଂହତିର ସମାଧାନ

ଏହା ଏକ ବିକଟ ସମସ୍ୟା । ଦେଶର ଚିନ୍ତାଶୀଳ ଲୋକେ ଏ ଦିଗରେ ଚିନ୍ତା କରୁଛନ୍ତି । ମାତ୍ର ପ୍ରଚାର, ବକ୍ତୃତା, ବିବରଣୀରେ ଏହି ସମସ୍ୟାର ସମାଧାନ ନିର୍ଭର କରେ ନାହିଁ ।

ଜାତୀୟ ଚରିତ୍ରର ପ୍ରତିଷ୍ଠା ପାଇଁ ଯେଉଁ ମନୋବଳ ଆବଶ୍ୟକ, ସେ ପରମ୍ପରା ଏ ଜାତିର ନଥିଲା । ତେଣୁ ଅସଲ ସମସ୍ୟା ହେଉଛି ଜାତିର ମନନଶୀଳତାକୁ ଜାତୀୟତା ଦିଗରେ ନିୟନ୍ତ୍ରିତ କରିବା ଏବଂ ଏ ଦିଗରେ ପ୍ରତିକୂଳ ଅବସ୍ଥା ସୃଷ୍ଟି କରୁଥିବା ଯାବତୀୟ ଅବସ୍ଥାକୁ ଅତି କଠୋର ଏବଂ ନିର୍ମମ ଭାବରେ ଆଘାତ କରିବା । ଏଥିପାଇଁ ଆଦର୍ଶ ଅପେକ୍ଷା ବାସ୍ତବ ଜୀବନର କ୍ରିୟାଶୀଳତା, ପ୍ରଚାର ଅପେକ୍ଷା ଫଳପ୍ରସୂ କାର୍ଯ୍ୟାନୁଷ୍ଠାନ ଅଧିକ ଆବଶ୍ୟକ । ଏହି ସମସ୍ୟାର ସମାଧାନ ପାଇଁ ଯଦି ସାମୟିକ ଭାବରେ ଗଣତାନ୍ତ୍ରିକ ସଂବିଧାନର କେତେକ ଧାରାକୁ ପରିବର୍ତ୍ତନ କରିବାକୁ

ପଡ଼େ, ତାହା ଅବଲମ୍ବନ କରିବା ଆବଶ୍ୟକ । ଯୁକ୍ତରାଷ୍ଟ୍ର ଆମେରିକାରେ ବହୁ ଭାଷାଭାଷୀ ଲୋକ ବସବାସ କରୁଥିଲେହେଁ ସେମାନେ ନିଜକୁ ଆମେରିକାର ନାଗରିକ ବୋଲି ପରିଚୟ ଦିଅନ୍ତି ଏବଂ ଗର୍ବ କରନ୍ତି । ସୋଭିଏଟ ରୁଷିଆରେ ନାନା ଧର୍ମ ଓ ଭାଷା ପ୍ରଚଳିତ ଥିଲେ ମଧ୍ୟ ତାଙ୍କର ଜାତୀୟ ଐକ୍ୟରେ ବାଧା ଆସି ନାହିଁ । ସୁଇଜରଲାଣ୍ଡ ଭଳି ଦେଶରେ ଚାରିଗୋଟି ପ୍ରଧାନ ଭାଷା ସ୍ୱୀକୃତ ହୋଇଥିଲେ ହେଁ ସେ ଦେଶର ଅଧିବାସୀ ନିଜକୁ କୌଣସି ନିର୍ଦ୍ଦିଷ୍ଟ ଭାଷାଗୋଷ୍ଠୀର ବୋଲି ପରିଚୟ ଦେବାକୁ ଅପମାନିତ ମନେ କରେ । ମାତ୍ର ଦୁଃଖର କଥା ଯେ, ଏ ଦେଶରେ ଆଞ୍ଚଳିକତା, ଧର୍ମାନ୍ଧତା, ସଂକୀର୍ଣ୍ଣ ଗୋଷ୍ଠୀଗତ ଚିନ୍ତା ଏବଂ ଦଳୀୟ ରାଜନୀତିର ଅପପ୍ରଚାରର ଏବଂ କ୍ଷମତା ରାଜନୀତିର ସ୍ୱାର୍ଥାନ୍ଧତା ଏକ ଭସ୍ମାସୁର ରୂପରେ ଦଣ୍ଡାୟମାନ ହୋଇ ଏ ଦେଶକୁ ଗ୍ରାସ କରିବାକୁ ବସିଅଛି ଏବଂ ସେହି ଭୟଙ୍କର ରାକ୍ଷସ ଏ ଦେଶର ବହୁ ମହାଦେବମାନଙ୍କ ଦ୍ୱାରା ହିଁ ବରପ୍ରାପ୍ତ ଏବଂ ପ୍ରତିପାଳିତ । ତେଣୁ ଦଳ, ମତ, ବ୍ୟକ୍ତି ଏବଂ ସାମୟିକ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଏହି ମହାଦେବ ଏବଂ ଭସ୍ମାସୁର ଉଭୟଙ୍କର ପ୍ରଗଲ୍‌ଭତାକୁ ଅଚିରେ ଧ୍ୱଂସ ନ କଲେ ଏ ଜାତିର ମଙ୍ଗଳ ନାହିଁ । ପରିଶେଷରେ ସେକାଳର ବିଖ୍ୟାତ ଜାତୀୟ ନେତା ସୁରେନ୍ଦ୍ରନାଥ ବାନାର୍ଜୀଙ୍କ ଉକ୍ତି ଏ କ୍ଷେତ୍ରରେ ସ୍ମରଣ କରି କାର୍ଯ୍ୟକାରୀ ହୋଇ ପାରିଲେ ଜାତୀୟ ସଂହତି ଅସମ୍ଭବ ହେବ ନାହିଁ ।

ଜଗନ୍ନାଥ

## ବିଶ୍ୱମୈତ୍ରୀର ପ୍ରତୀକ

ବ୍ୟକ୍ତିବିଶେଷରେ ଯେପରି ମତ ଏବଂ ଧର୍ମବିଶ୍ୱାସ ସମ୍ଭବ, ସ୍ୱତନ୍ତ୍ର ମତ ଏବଂ ଧର୍ମବିଶ୍ୱାସ ରହିଲେ ସଂଘର୍ଷ ଅଥବା ବିରୋଧ ମଧ୍ୟ ସେହିପରି ଅନିବାର୍ଯ୍ୟ । ପୃଥିବୀରେ ଏପରି କୌଣସି ଅଞ୍ଚଳ ଅଥବା ଧର୍ମର ପୀଠ ନାହିଁ, ଯେଉଁଠାରେ ଧର୍ମବିଶ୍ୱାସ ଭେଦରେ ନାନା ଉଗ୍ରମତର ପ୍ରଚାର ନାହିଁ ବୋଲି କହିବାକୁ ହେବ । ଯୁଗଯୁଗରୁ ଧର୍ମକୁ କେନ୍ଦ୍ର କରି କେତେ ସଂଘର୍ଷ ଓ ରକ୍ତପାତ ସଂଘଟିତ ହୋଇଯାଇଛି । ୟୁରୋପର "ଶତ ବର୍ଷର ଯୁଦ୍ଧ" ଏବଂ "ଗୋଲାପ ଯୁଦ୍ଧ" ଏହାର ଏକ ଉଦାହରଣ । ଭାରତରେ ଶୈବ, ବୌଦ୍ଧ, ଜୈନ, ଗାଣପତ୍ୟ, ବୈଷ୍ଣବ, ଶାକ୍ତ ପ୍ରଭୃତି ଧର୍ମାନ୍ଧମାନଙ୍କ ମଧ୍ୟରେ ଅଶାନ୍ତି ଏବଂ ଉପଦ୍ରବ ମଧ୍ୟ କିଛି କମ୍ ନ ଥିଲା । ଇଂଲଣ୍ଡରେ ଟିଉଡ଼ର ବଂଶର ରାଣୀ ମେରୀଙ୍କ ରାଜତ୍ୱ କାଳରେ ଅସହିଷ୍ଣୁ ଧର୍ମାନ୍ଧ ଶାସକ ବିରୋଧୀ ମତବାଦୀଙ୍କୁ ନିଆଁରେ ପୋଡ଼ିଦେବାର ଯେପରି ଦୃଷ୍ଟାନ୍ତ ରହିଛି, ଭାରତରେ ମଧ୍ୟ ଉଗ୍ର ବ୍ରାହ୍ମଣ୍ୟ ଧର୍ମର ଶାସକଗଣ ବୌଦ୍ଧମାନଙ୍କୁ ନିର୍ମୂଳ କରିବା ପାଇଁ ଅତ୍ୟାଚାର କରିଥିବାର ପ୍ରମାଣ ରହିଛି । ଏପରି କି ଏହି ବିଂଶ ଶତାବ୍ଦୀର ମଧ୍ୟଭାଗରେ ଦୁଇଜାତି ତତ୍ତ୍ୱରେ ପ୍ରତିଷ୍ଠିତ ମୁସଲମାନବହୁଳ ପାକିସ୍ତାନ ରାଷ୍ଟ୍ରରେ ଅହମ୍ମଦିଆ ଗୋଷ୍ଠୀଙ୍କ ବିରୁଦ୍ଧରେ ବିକ୍ଷୋଭ କିମ୍ବା ସିଆ ସୁନ୍ନୀଙ୍କ ମଧ୍ୟରେ ଅସହିଷ୍ଣୁତାଜନିତ ପାଶବିକ ପ୍ରତିହିଂସା ବିସ୍ମୃତ ହେବାର ନୁହେଁ ।

ଭାରତର ସର୍ବାଞ୍ଚଳରେ ଐତିହାସିକ କାଳରୁ ନାନା ଧର୍ମପୀଠ ବିଦ୍ୟମାନ । ପ୍ରତ୍ୟେକ ପୀଠରେ କୌଣସି ନା କୌଣସି ମତବାଦର ପ୍ରତିଷ୍ଠା ଏବଂ ପ୍ରଭାବ ଅନୁଭୂତ ହୁଏ । ମାତ୍ର ଭାରତୀୟ ମନୀଷା ଏବଂ ସାଂସ୍କୃତିକ ସାଗରର ଅସଂଖ୍ୟ ତରଙ୍ଗ ମଧ୍ୟରେ ଅନ୍ତତଃ ଗୋଟିଏ ସ୍ଥାନ ନିର୍ଦ୍ଦିଷ୍ଟ କରିଅଛି,

ଯେଉଁଠାରେ ନାନା ଧର୍ମ ଧାରଣାର ସ୍ରୋତ ପ୍ରବହମାନ ହୋଇ ଅପୂର୍ବ ସାଗରସଙ୍ଗମର ପ୍ରାଣ ପ୍ରତିଷ୍ଠା ଲାଭ କରି ସର୍ବଧର୍ମ ସମନ୍ୱୟ ପୀଠ ଭାବରେ ଯୁଗ ଯୁଗ ଧରି ସମ୍ମାନିତ ହୋଇ ଆସିଅଛି, ତାହା ହେଉଛି ଭାରତର ଦକ୍ଷିଣ ସମୁଦ୍ର ତୀରରେ ପୁରୁଷୋତ୍ତମ କ୍ଷେତ୍ର ବା ପୁରୀ । ଧର୍ମଜଗତରେ ମକ୍କା ଏବଂ ଜେରୁଜେଲମ୍‌ର ସ୍ଥାନ ଯାହା, ହିନ୍ଦୁ ଜଗତରେ ପୁରୀ କ୍ଷେତ୍ରର ମହିମା ତାଠାରୁ ବରଂ ଅଧିକ ବୋଲି କହିବାକୁ ହେବ । ଓଡ଼ିଶା ସମ୍ପର୍କରେ ଆଲୋଚନା କରି Amos Sutton ତାଙ୍କର 'Orissa and Its Evangelization' ପୁସ୍ତକର ମୁଖବନ୍ଧରେ ଲେଖିଥିଲେ—ସମଗ୍ର ଇସ୍ରାଏଲ ଅଧିବାସୀ ଜେରୁଜେଲମକୁ ଯେପରି ପବିତ୍ରକ୍ଷେତ୍ର ମନେକରନ୍ତି, ଓଡ଼ିଶା ମଧ୍ୟ ଭାରତୀୟଙ୍କ ଦୃଷ୍ଟିରେ ତହିଁରୁ ଅଧିକ ପବିତ୍ର ମନେ ହୋଇଥାଏ । ଇହୁଦୀଗଣ ମାଉଣ୍ଟ କର୍ତ୍ତନରେ ପୂଜା କରି ଯେପରି ନିଜକୁ ଧନ୍ୟ ମନେ କରନ୍ତି, ସେହିପରି ଭାରତର ସର୍ବାଞ୍ଚଳର ହିନ୍ଦୁଗଣ ପୁରୀ କ୍ଷେତ୍ରକୁ ତୀର୍ଥଯାତ୍ରା କରିବାକୁ ନିଜର ଚରମ ଅଭିଳାଷ ପୋଷଣ କରିଥାନ୍ତି । ରେଳ ମଟର ଯୁଗ ଆସିବାର ଶହ ଶହ ବର୍ଷ ପୂର୍ବରୁ ହଜାର ହଜାର ହିନ୍ଦୁ ନରନାରୀ ରାସ୍ତାଘାଟର ଦୁର୍ଗମତାକୁ ଅସ୍ୱୀକାର କରି ନୌକା ଓ ପଦବ୍ରଜରେ ପୁରୀ କ୍ଷେତ୍ରର ଏହି ବିଶାଳ ଆକାଶଚୁମ୍ବୀ ଶ୍ରୀମନ୍ଦିର ପାଦଦେଶରେ ଦଣ୍ଡାୟମାନ ହେବାର ସୁଯୋଗ ଲାଭ କଲେ, ସେମାନଙ୍କର ଜୀବନର ତୀର୍ଥଯାତ୍ରା ସଫଳ ହେଲା ବୋଲି ମନେ କରୁଥିଲେ । କେତେ ଜାତି, କେତେ ଧର୍ମ, କେତେ ସାମାଜିକ ଚଳଣି ଏବଂ ଆଗୃହ ଅନୁଷ୍ଠାନ—ଆକୁମାରୀହିମାଚଳ ପ୍ରବାହିତ ଜନସ୍ରୋତ ଏହି ସମସ୍ତ ବିଭବକୁ ବହନ କରି ଚାଲିଆସିଛନ୍ତି ଏବଂ କାଳସ୍ରୋତରେ ତାହା ଏକ ଅପୂର୍ବ ସାଂସ୍କୃତିକ ଚେତନା ସୃଷ୍ଟି କରିଅଛି—ତାହା ହେଉଛି ବହୁ ମତ ବିଶ୍ୱାସ ମଧ୍ୟରେ ଅପୂର୍ବ ସମନ୍ୱୟ ଏବଂ ସହନଶୀଳତା । ଏହାହିଁ ହେଉଛି ହିନ୍ଦୁ ସଂସ୍କୃତିର ସର୍ବଶ୍ରେଷ୍ଠ ବାର୍ତ୍ତା, ଯାହା ଯୁଗ ଯୁଗର ସାମାଜିକ ଘୂର୍ଣ୍ଣିବାତ୍ୟା ମଧ୍ୟରେ ଏହି ପୁରୁଷୋତ୍ତମ କ୍ଷେତ୍ରରେ ପ୍ରଚାରିତ ହୋଇ ଆସିଛି । ମନେହୁଏ, ବର୍ତ୍ତମାନର ଜାଗତିକ ଅଶାନ୍ତିର ସମାଧାନ ପାଇଁ ବିଶ୍ୱ ସମାଜକୁ ଭାରତୀୟ ସଂସ୍କୃତିର ଏହାହିଁ ମହାନ ବାଣୀ ।

## ରଥଯାତ୍ରାର ବାଣୀ

ଆଜି ଆଷାଢ଼ମାସ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ଏହି ମହାନ୍ ବାଣୀ ଅଧିକ ପ୍ରଣିଧାନଯୋଗ୍ୟ । କାରଣ ଏହି ତିଥି ଜଗନ୍ନାଥଙ୍କ ରଥଯାତ୍ରାପାଇଁ

ଭାରତପ୍ରସିଦ୍ଧ ଏବଂ ସମଗ୍ର ହିନ୍ଦୁ ଜଗତର ଏହା ସର୍ବଶ୍ରେଷ୍ଠ ମେଳା କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରତ୍ୟେକ ବର୍ଷ ଏତେ ସଂଖ୍ୟାରେ ଜନ-ସମାଗମ ରଥ ଯାତ୍ରାପରି ଅନ୍ୟ କୌଣସି ଧର୍ମପୀଠରେ ହୁଏନାହିଁ । ଭାରତୀୟ ହିନ୍ଦୁ ନରନାରୀଙ୍କୁ ସ୍ୱାଗତ ଜଣାଇ ଓଡ଼ିଶା ମହାସ୍ଥାନ ହୋଇଆସିଛି । ସେଥିପାଇଁ ପ୍ରତ୍ୟେକ ହିନ୍ଦୁ ଦୃଷ୍ଟିରେ ଓଡ଼ିଶାର ପ୍ରତି ରେଣୁକଣା ଅତି ପବିତ୍ର ।

## ସଂସ୍କୃତିର ମୂଳମନ୍ତ୍ର

ଦୁଇଜାତି ତତ୍ତ୍ୱରେ ବିଶ୍ୱାସ କରି ଅବିଶ୍ୱାସ ଏବଂ ଅସହଣୀୟତା ଯୋଗୁଁ ପୁରାଣପ୍ରସିଦ୍ଧ ଭାରତବର୍ଷ ଦୁଇ ଖଣ୍ଡରେ ବିଭକ୍ତ ହୋଇଯିବାର ଘଟଣା ବେଶି ଦିନର ନୁହେଁ । ତେଣୁ ଭାରତୀୟ ସଂସ୍କୃତିର ଏହି ମୌଳିକ ଧର୍ମସମନ୍ୱୟ ବାର୍ତ୍ତା କିଏ ବିଶ୍ୱାସ କରିବ !! ଇଂରେଜ ସାମ୍ରାଜ୍ୟବାଦୀଗଣ ଜଗତବାସୀଙ୍କ ଆଗରେ ପ୍ରଚାର କରୁଥିଲେ ଯେ, ଭାରତର ଐକ୍ୟ ପାଇଁ ସେମାନଙ୍କର ଅବସ୍ଥିତି ଏ ଦେଶରେ ଅନିବାର୍ଯ୍ୟ । ନଚେତ୍ ଭାରତୀୟଗଣ ବର୍ବରଭଳି ପରସ୍ପର ସଂଘର୍ଷରେ ରତ ରହି ଧ୍ୱଂସ ହୋଇଯିବେ । ଭାରତର ସାଂସ୍କୃତିକ ପରମ୍ପରାକୁ ଉପହାସ କରି ଏ ଦେଶ ବିଭକ୍ତ ହୋଇଗଲାପରି ମନେହୁଏ । ମାତ୍ର ଏଥିରେ ହତାଶ ହେବାର କୌଣସି କାରଣ ନାହିଁ । ସଂସ୍କୃତିର ସ୍ରୋତ ଯଦି ମନ୍ଥର ହୁଏ, ତେବେ କୁସଂସ୍କାରର ଚଡ଼ା ସୃଷ୍ଟି ହୋଇ ସେହି ସ୍ରୋତର ଗତିପଥକୁ ରୁଦ୍ଧ କରିଦିଏ । ସଂସ୍କୃତିର ପ୍ରବହମାନ ଧାରା ହୁଏ ପ୍ରଭାବହୀନ । ଇଂରେଜ ସାମ୍ରାଜ୍ୟବାଦୀଙ୍କ ଚକ୍ରାନ୍ତ ଏବଂ ପାଶ୍ଚାତ୍ୟ ବସ୍ତୁବାଦୀ ସଭ୍ୟତାର ଭେଳିକି ମଧ୍ୟରେ ଭାରତୀୟ ଜୀବନର ଧାରା ଓଲଟପାଲଟ ହୋଇଯିବା ଫଳରେ ଏବେ ହୁଏତ ଲୋକେ ବିଶ୍ୱାସ କରିପାରୁ ନାହାନ୍ତି ଯେ, କେଉଁ ଐତିହାସିକ କାଳରୁ କି ହିନ୍ଦୁ, କି ମୁସଲମାନ, ଜୈନ, ବୌଦ୍ଧ, ଶିଖ ସବୁ ସଂପ୍ରଦାୟ ଏବଂ ଧାର୍ମିକ ଗୋଷ୍ଠୀର ଲୋକେ ଏ ଦେଶରେ ମିଳିମିଶି ଚଳୁଥିଲେ । ପ୍ରତ୍ୟେକ ଜାତି ଓ ସମାଜର ସାଂସ୍କୃତିକ ଆଦାନ ପ୍ରଦାନ ଫଳରେ ଭାରତୀୟ ସଂସ୍କୃତି ଏକ ନୂତନ ଅଥଚ ସମୃଦ୍ଧ ରୂପ ପରିଗ୍ରହ କରୁଥାଏ । ଇତିହାସରେ ଏହାର ଭୂରି ଭୂରି ପ୍ରମାଣ ମିଳେ । ବେଳେ ବେଳେ ଧର୍ମାନ୍ଧ ନରପତି ଅତ୍ୟାଚାର, ଅବିଚାର କରିଥିଲେ

ହେଁ ଏ ଦେଶରେ ସାଂପ୍ରଦାୟିକତାର ବିଷ ଲୋକେ ଗୃହି ନ ଥିଲେ । ମାନ୍-କଗଜର ତାଙ୍କର 'The British case against India' ପୁସ୍ତକରେ ଏ ସମ୍ପର୍କରେ କେତେକ ଆଲୋଚନା କରିଥିବା ଜଣାଯାଏ । ସାଂପ୍ରଦାୟିକତାର ବୀଜ ଇଂରେଜମାନେ ହିଁ ଏ ଦେଶରେ ବୁଣିଦେଲେ । ବରଂ ଧର୍ମଗତ ସହନଶୀଳତାର ବହୁ ଉଦାହରଣ ଆମର ଥିଲା । ଏପରି କି ମୋଗଲ ରାଜତ୍ୱ କାଳରେ ଧର୍ମଗତ ସହନଶୀଳତା ଚରମ ସୀମାରେ ପହଞ୍ଚିଥିଲା । ସେତେ-ବେଳେ ଦକ୍ଷିଣ ଭାରତରେ ଆରବୀୟ ବଣିକଗଣ ଶାନ୍ତିରେ ବସବାସ କରୁଥିଲେ । ଦାକ୍ଷିଣାତ୍ୟର ପାଣ୍ଡ୍ୟ ରାଜାଙ୍କ ଦରବାର ପକ୍ଷରୁ ତ୍ରୟୋଦଶ ଶତାବ୍ଦୀରେ ଜଣେ ମୁସଲମାନ କୂଟନୀତିଜ୍ଞ ରାଜଦୂତ ଭାବରେ କୁବ୍ଲାଇଖାଁଙ୍କ ଦରବାରକୁ ପ୍ରେରିତ ହେବାର ପ୍ରମାଣ ରହିଅଛି । ଏହି ଅଞ୍ଚଳ ଉପରେ ଭାରତ ବାହାରୁ ମୁସଲମାନ ଅଭିଯାନକାରୀ ଆକ୍ରମଣ କଲାବେଳେ ଦାକ୍ଷିଣାତ୍ୟର ହିନ୍ଦୁ ମୁସଲମାନ ନିର୍ବିଶେଷରେ ସମସ୍ତେ ବହିଃଶତ୍ରୁ ବିରୁଦ୍ଧରେ ଲଢ଼େଇ କରିଥିଲେ । ଭାରତ ବର୍ଷ ମଧ୍ୟ-ଯୁଗରେ ବହୁବାର ମୁସଲମାନ ଅଭିଯାନକାରୀମାନଙ୍କ ଦ୍ୱାରା ଆକ୍ରାନ୍ତ ଓ ବିପନ୍ନ ହୋଇଅଛି । ମାତ୍ର ଏ ଆକ୍ରମଣ କେବେହେଲେ ଧର୍ମଭିତ୍ତିରେ ହୋଇ ନ ଥିଲା । ମହମ୍ମଦ ଗଜନୀ ଯେଉଁ ଉତ୍ସାହ ଏବଂ ଉଦ୍ଦୀପନାରେ ହିନ୍ଦୁ ଭାରତକୁ ଆକ୍ରମଣ କରିଥିଲେ, ସେହି ଉନ୍ମାଦନାରେ ମୁସଲମାନ ପାରସ୍ୟ ଏବଂ ଅନ୍ୟ ମୁସଲମାନ ଅଧ୍ୟୁଷିତ ଅଞ୍ଚଳକୁ ମଧ୍ୟ ବିପନ୍ନ କରିଥିଲେ । ରାଜ୍ୟ ଜୟ ଏବଂ ସମ୍ପତ୍ତି ଲୁଟି କରିବା ଥିଲା ଏ ଯୁଗର ଆକ୍ରମଣକାରୀମାନଙ୍କର ପ୍ରଧାନ ଉଦ୍ଦେଶ୍ୟ । ସେଥିପାଇଁ ସେମାନେ ହିନ୍ଦୁ-ମୁସଲମାନ ନିର୍ବିଶେଷରେ ଆଘାତ କରୁଥିଲେ । ମୋଗଲ ବଂଶର ପ୍ରତିଷ୍ଠାତା ବାବର ମୁସଲମାନ ଇବ୍ରାହିମ ଲୋଦୀଙ୍କୁ ଯୁଦ୍ଧରେ ପରାସ୍ତ କରି ଭାରତରେ ପ୍ରତିଷ୍ଠିତ ହୋଇଥିଲେ । ସେତେବେଳେ ହିନ୍ଦୁ ନରପତିଗଣ ବିଦେଶୀ ଶତ୍ରୁ ବିରୁଦ୍ଧରେ ମୁସଲମାନ ଇବ୍ରାହିମ ଲୋଦୀଙ୍କୁ ଯୁଦ୍ଧରେ ସାହାଯ୍ୟ କରିଥିବା ଜଣାଯାଏ । ଆକବରଙ୍କୁ ମଧ୍ୟ ସିଂହାସନ ଲାଭ କରିବା ପାଇଁ ମୁସଲମାନ ଶେରସାହଙ୍କ ସହିତ ଯୁଦ୍ଧ କରିବାକୁ ପଡ଼ିଥିଲା । ଶେରସାହଙ୍କର ହିନ୍ଦୁ ସେନାପତି ଆକବରଙ୍କ ବିରୁଦ୍ଧରେ ଏ ଯୁଦ୍ଧକୁ ପରିଚାଳନା କରିଥିଲେ । ମୋଗଲ ସମ୍ରାଟ ଧର୍ମାନ୍ଧ ଆଉରଙ୍ଗଜେବ ମଧ୍ୟ ଦାକ୍ଷିଣାତ୍ୟର ହିନ୍ଦୁନେତା ଶିବାଜୀ ଏବଂ

ବିଜାପୁର ଗୋଲକୁଣ୍ଡାର ମୁସଲମାନ ରାଜାଙ୍କ ବିରୁଦ୍ଧରେ ଲଢ଼େଇ କରିଥିଲେ । ମୋଗଲ ସମ୍ରାଟମାନଙ୍କ ରାଜଦରବାରରେ ହିନ୍ଦୁ ଓ ମୁସଲମାନ ଉଭୟେ ସମ୍ମାନିତ ଆସନ ଏବଂ ପଦବୀ ଗ୍ରହଣ କରିଥିବା ଜଣାଯାଏ । ଏପରି କି ଇଂରେଜମାନଙ୍କ ଭାରତ ଅଭିଯାନ କାଳରେ ହିନ୍ଦୁ ଏବଂ ମୁସଲମାନଙ୍କ ମଧ୍ୟରେ ପାରସ୍ପରିକ ପ୍ରେମ ଏବଂ ସୌହାର୍ଦ୍ଦ୍ୟ ବିଦ୍ୟମାନ ଥିଲା । ୧୮୨୫ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ "ଜାମ-ଇ-ଜହନ୍‌ନାମା" ନାମକ ପାର୍ଶି ସାପ୍ତାହିକରୁ ଜଣାଯାଏ ଯେ, ଦଶହରା ଉତ୍ସବକୁ ଦିଲ୍ଲୀର ମୁସଲମାନ ଶାସକ ଅତ୍ୟନ୍ତ ଆନ୍ତରିକତାର ସହିତ ପାଳନ କରୁଥିଲେ । ସେହିଦିନ ରାଷ୍ଟ୍ରର ସାମନ୍ତମାନଙ୍କୁ ଦେଓ୍ୱାନ ଖାସ୍‌କୁ ନିମନ୍ତ୍ରଣ କରି ଶାସକ ଆପ୍ୟାୟିତ କରୁଥିଲେ । ସମ୍ରାଟ ସାହ ଆଲମଙ୍କ ପୁତ୍ର ମହାମାନ୍ୟ ଆକବର ଦ୍ୱିତୀୟ ନିଜେ ଭେଟି ଗ୍ରହଣ କରୁଥିଲେ । ହିନ୍ଦୁ ମୁସଲମାନ ନିର୍ବିଶେଷରେ ସମସ୍ତଙ୍କୁ ପୁରସ୍କାର ପ୍ରଦାନ କରୁଥିଲେ । ଅନ୍ୟ ଏକ ସମ୍ବାଦରେ ଅଯୋଧ୍ୟାର ମୁସଲମାନ ରାଜା ନିଜେ ରାମଲୀଳା ଉତ୍ସବ ଉପଭୋଗ କରି ପୁରସ୍କାର ପ୍ରଦାନ କରିବା କଥା ଉଲ୍ଲେଖ ଅଛି ।

ବାସ୍ତବରେ ମୁସଲମାନ ଓ ହିନ୍ଦୁ ସାମ୍ପ୍ରଦାୟିକତା ଇଂରେଜ ସାମ୍ରାଜ୍ୟ-ବାଦର ଏକ ଚରମ କୌଶଳ । ନଚେତ୍ ଏ ଦେଶରେ ହିନ୍ଦୁ ଏବଂ ମୁସଲମାନ, ଜୈନ ଏବଂ ବୌଦ୍ଧ ପ୍ରତ୍ୟେକ ପ୍ରତ୍ୟେକଙ୍କର ଧର୍ମପୀଠକୁ ସମ୍ମାନିତ କରନ୍ତି ଏବଂ ପ୍ରତ୍ୟେକ ସମ୍ପ୍ରଦାୟର ସାଧୁସନ୍ନ୍ୟାସୀ, ସନ୍ଥସାଧକଗଣ ସମାଜରେ ପୂଜ୍ୟ ଏବଂ ସମ୍ମାନିତ ହୁଅନ୍ତି ।

## ମୈତ୍ରୀ ଦେବତା ଜଗନ୍ନାଥ

କାଳ ଅନୁକ୍ରମେ ଅନେକ ବଦ୍ଧମୂଳ ଧାରଣା ଓ କୁସଂସ୍କାର ବଳବତ୍ତର ହୋଇ ଜାତି ଜାତି ଓ ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ନାନା ଭେଦ ଓ ବାଡ଼ ସୃଷ୍ଟି ହୋଇଥିଲେ ହେଁ ଜଗତର ନାଥ ଜଗନ୍ନାଥଙ୍କ ନିକଟରେ ସମସ୍ତେ ସମାନ । ମଣିଷ ଜାତି ଏକ ଏବଂ ଅଭିନ୍ନ । ସ୍ୱାର୍ଥପାଇଁ ସମାଜ ଶ୍ରେଣୀ ସୃଷ୍ଟି କରିଥିଲା । ତେଣୁ ମୈତ୍ରୀଦେବତା ଜଗନ୍ନାଥ ନିଜର ପବିତ୍ର ପୀଠରେ ଜାତି ବର୍ଣ୍ଣ ଧର୍ମ

ନିର୍ବିଶେଷରେ ସମସ୍ତଙ୍କୁ ସମାନ ଅଧିକାର ପ୍ରଦାନ କରିଛନ୍ତି । ରଥ ଟାଣିବା-ବେଳେ କୌଣସି ନିର୍ଦ୍ଦିଷ୍ଟ ଜାତିର ବାଛ ବିଚାର ଆବଶ୍ୟକ ପଡ଼େ ନାହିଁ । ଜଗନ୍ନାଥଙ୍କ ମହାପ୍ରସାଦ ସେବା କଲାବେଳେ ସାନବଡ଼ ତଥାକଥିତ ଜାତିଆଣ ଧାରଣା ମୂଲ୍ୟହୀନ । ଛୁଆଁ ଅଛୁଆଁ ଏକ ସାମାଜିକ ବ୍ୟାଧି । ସାନବଡ଼ ବିଚାର ଏକ ଅଳୀକ କଳ୍ପନା । ପୁରୁଷୋତ୍ତମ କ୍ଷେତ୍ରରେ ଗଣାଧିପତି ମୈତ୍ରୀ ଦେବତା ଜଗନ୍ନାଥ ସତେ ଯେପରି ଏହାହିଁ ଯୁଗ ଯୁଗ ଧରି କାମନା କରି ଆସିଅଛନ୍ତି । ଜଗନ୍ନାଥ ହିଁ ଭାରତୀୟ ସଂସ୍କୃତିର ପ୍ରତୀକ । ଏ ସଂସ୍କୃତିର ପ୍ରାଣଧର୍ମ ହେଲା ମାନବିକତା ଏବଂ ମୈତ୍ରୀ ଧର୍ମର ପ୍ରେରଣା । ଅତୀତରେ ନାନା ସାଂସ୍କୃତିକ ସଙ୍କଟ କାଳରେ ଏହି ମୈତ୍ରୀଧର୍ମହିଁ ଭାରତର ଶାଶ୍ୱତ ମୂଲ୍ୟବୋଧକୁ ରକ୍ଷା କରିଆସିଛି । ବର୍ତ୍ତମାନ ଓ ଭବିଷ୍ୟତରେ ମଧ୍ୟ ସେ ପ୍ରେରଣାର ଅଭାବ ରହିବ ନାହିଁ ।

ଗ୍ରନ୍ଥାଗାର

# ଜାତୀୟ ସଂସ୍କୃତିର ଗନ୍ତାଘର

## ପ୍ରାଚୀନ ଓଡ଼ିଶାର ଗ୍ରନ୍ଥାଗାର

ଗାଁ ପରିମଳ ଧୋବାଖୁଣ୍ଟରୁ ଜଣାଗଲା ପରି ଗ୍ରନ୍ଥାଗାର ଆନ୍ଦୋଳନର ସଫଳତା ଉପରେହିଁ ଗୋଟିଏ ସମୃଦ୍ଧ ଜାତି ଓ ସମାଜର ସଂସ୍କୃତି ଏବଂ ଶିକ୍ଷାର ମାନ ନିର୍ଦ୍ଧାରଣ କରାଯାଇଥାଏ । ଭାରତର ଏକ କ୍ଷୁଦ୍ର ରାଜ୍ୟ କେରଳରେ ତୁଳନାତ୍ମକ ଭାବରେ ସର୍ବାଧିକ ଗ୍ରନ୍ଥାଗାର ଏବଂ ଆନୁପାତିକ ହାରରେ ଶିକ୍ଷିତଙ୍କ ସଂଖ୍ୟା ଅଧିକ ଥିବାର ଜଣାପଡ଼େ । କେବଳ ସେତିକି ନୁହେଁ, ଏହି କ୍ଷୁଦ୍ରରାଜ୍ୟରେ ଭାରତର ଯେ କୌଣସି ରାଜ୍ୟ ଅପେକ୍ଷା ଅଧିକ ସଂଖ୍ୟାରେ ଦୈନିକ, ସାପ୍ତାହିକ, ମାସିକ ଏବଂ ସାମୟିକ ପତ୍ରିକା ପ୍ରକାଶିତ ହୋଇଥାଏ ।

ଛାପାଯନ୍ତ୍ରର ଇତିହାସ ଅତ୍ୟନ୍ତ ଅଳ୍ପକାଳର ହୋଇଥିବାରୁ ଅନେକଙ୍କର ଧାରଣା ଯେ, ଅତି ପ୍ରାଚୀନ କାଳରେ ସାଧାରଣ ଗ୍ରନ୍ଥାଗାର ନଥିଲା । ପୁସ୍ତକ ପ୍ରକାଶନ ଏବଂ ପ୍ରଚାର ସହିତ ଗ୍ରନ୍ଥାଗାରର ଅଭ୍ୟୁଦୟ ହୋଇଛି ବୋଲି ସାଧାରଣ ଲୋକେ ଧାରଣା କରିବା ସ୍ୱାଭାବିକ । ତାହାର କାରଣ ବିଗତ ଦୁଇଶହ ବର୍ଷର ଇଂରେଜ ରାଜତ୍ୱ କାଳରେ ଉଭୟ ଶିକ୍ଷା ଏବଂ ସଂସ୍କୃତି କ୍ଷେତ୍ରରେ ଭାରତୀୟ ଜୀବନର ମୌଳିକତା ଅନେକ ପରିମାଣରେ ଆଘାତପ୍ରାପ୍ତ ହୋଇଅଛି । ଶିକ୍ଷା ଏବଂ ସଂସ୍କୃତିର ସେହି ପ୍ରାଚୀନ ସ୍ରୋତ ସଙ୍କୁଚିତ ହେବା ସଙ୍ଗେ ସଙ୍ଗେ ଏହି କାଳରେ ସୃଷ୍ଟି ଏକ ସ୍ୱତନ୍ତ୍ର ପାଠୁଆ ବାବୁସମାଜ ଏ ଜାତିର ମୌଳିକ ସଂସ୍କୃତି ଏବଂ ପରଂପରାର ପ୍ରଚଳିତ ରୀତିନୀତିକୁ ଅବହେଳା ପ୍ରଦର୍ଶନ କରି ଭୁଲିଯିବାକୁ ବସିଲେ ।

ଆଜକୁ ଶହେବର୍ଷ ପୂର୍ବେ ଏହି ଓଡ଼ିଶା ଭୂ-ଖଣ୍ଡରେ କେତେକ ଅଣଓଡ଼ିଆ ଭାରତୀୟ ପଣ୍ଡିତ ଓଡ଼ିଆ ଭାଷାରେ ଉପଯୁକ୍ତ ପୁସ୍ତକର ଅଭାବ ଏବଂ ଓଡ଼ିଆ ଭାଷାର ଦାରିଦ୍ର୍ୟର ଯୁକ୍ତି ପ୍ରଦର୍ଶନ କରି ବଙ୍ଗଳା ଭାଷାର ପ୍ରଚଳନ ପାଇଁ ଦାବୀ କରିଥିଲେ । ସେ କାଳର ବିଦେଶୀ ସରକାର ଏ ଦେଶର ପରଂପରା ସହିତ ଅବହିତ ହୋଇ ନ ଥିବାରୁ ଏହି ହୀନମନ୍ୟ ଅହଂକାରୀ ରାଜକର୍ମଚାରୀ ଏବଂ ପଣ୍ଡିତ ବ୍ୟକ୍ତିମାନଙ୍କ କଥାରେ ଆସ୍ଥା ସ୍ଥାପନ କରିଯାଇଥିଲେ । ସୌଭାଗ୍ୟବଶତଃ ସେହି ହୀନ ଚକ୍ରାନ୍ତରୁ ଓଡ଼ିଆ ଭାଷା କାଳକ୍ରମେ ରକ୍ଷାପାଇଯାଇଥିଲା । ତାର କାରଣ ଓଡ଼ିଶାର ବହୁ ଭୂସ୍ୱାମୀ ପରିବାରରେ ଅଥବା ବ୍ରାହ୍ମଣ ଶାସନରେ ଅସଂଖ୍ୟ ଗ୍ରନ୍ଥାଗାର ମଧ୍ୟରୁ ପ୍ରାଚୀନ ଓଡ଼ିଆ ସାହିତ୍ୟର ଅମୂଲ୍ୟ ଗ୍ରନ୍ଥଗୁଡ଼ିକ ଉଦ୍ଧାର କରାଯାଇ ପ୍ରକାଶିତ ଓ ପ୍ରଚାରିତ ହେଲା । ଏବେ ମଧ୍ୟ ଓଡ଼ିଶାର ପଲ୍ଲୀ ଅଞ୍ଚଳରେ ଅସଂଖ୍ୟ ତାଳପତ୍ର ପୋଥିର ସନ୍ଧାନ ମିଳୁଅଛି, ଯଦିଓ ପ୍ରତିବର୍ଷ ବନ୍ୟା, ଅଗ୍ନିଦାହ ଏବଂ କୀଟଦଷ୍ଟ ଅବସ୍ଥାରେ ଲକ୍ଷ ଲକ୍ଷ ଅମୂଲ୍ୟ ପୋଥି ନଷ୍ଟ ହୋଇ ଯାଉଅଛି; ଅଥବା କୁସଂସ୍କାରର ବଶବର୍ତ୍ତୀ ହୋଇ ଲୋକେ ନଦୀ ଅଥବା ପୁଷ୍କରିଣୀ ଗର୍ଭରେ ରାଶି ରାଶି ପୋଥି ବିସର୍ଜନ ଦେଉଅଛନ୍ତି । ଏଥିରୁ ପ୍ରମାଣିତ ହେଉଅଛି ଯେ, ଏ ଦେଶରେ ପୁରୁଷାନୁକ୍ରମେ ପୋଥିସଂଗ୍ରହ କରି ରଖିବା ଏବଂ ଚର୍ଚ୍ଚା କରିବା ଏକ ଗୌରବମୟ ପରଂପରା ଥିଲା । କେବଳ ପୋଥି ଲେଖି ଅନେକ ଲିଖନକାର ଜୀବିକା ନିର୍ବାହ କରୁଥିଲେ । ପୋଥି ଲେଖିବା ଅତ୍ୟନ୍ତ ଶ୍ରମ ଏବଂ ଅର୍ଥସାପେକ୍ଷ କାର୍ଯ୍ୟ ଥିବାରୁ ସାଧାରଣ ଲୋକେ ଗ୍ରନ୍ଥାଗାର ସ୍ଥାପନ କରି ପାରୁନଥିଲେ । ଧନୀ, ଜମିଦାର, ରାଜା ଏବଂ ପଣ୍ଡିତମାନଙ୍କର ବ୍ୟକ୍ତିଗତ ଗ୍ରନ୍ଥାଗାର ରହିଥିବାର ପ୍ରମାଣ ମିଳେ । ସେହିମାନଙ୍କ ଘରୁ ଆଜିକାଲି ରାଶି ରାଶି ସଂଖ୍ୟାରେ ତାଳପତ୍ର ପୋଥି ସଂଗୃହୀତ ହେଉଅଛି । ତେବେ ପ୍ରତ୍ୟେକ ଗାଁରେ ପୁରାଣ ପଣ୍ଡାମାନେ ମାତବ୍ବର ଲୋକମାନଙ୍କ ପୃଷ୍ଠପୋଷକତାରେ ପୁରାଣ ପାଠ ଅଥବା ଶାସ୍ତ୍ର ଚର୍ଚ୍ଚା କରୁଥିଲେ । ଏଥିଯୋଗୁ ଶିକ୍ଷିତ ଅଶିକ୍ଷିତ ନିର୍ବିଶେଷରେ ସମସ୍ତେ ଏକ ସାଂସ୍କୃତିକ ମୂଲ୍ୟବୋଧର ଅଧିକାରୀ ହେଉଥିଲେ । ଅବଶ୍ୟ ସେ କାଳରେ ସର୍ବସାଧାରଣଙ୍କ ପାଇଁ କୌଣସି ଗ୍ରନ୍ଥାଗାର ଥିବାର ପ୍ରମାଣ ନାହିଁ । ମାତ୍ର ପାଠୁଆ ପରିବାରରେ ବ୍ୟକ୍ତିଗତ ଭାବରେ ଗ୍ରନ୍ଥାଗାର ସ୍ଥାପନ କରିବା ଏକ ଆଭିଜାତ୍ୟର ଲକ୍ଷଣ ଥିଲା । ତା ଛଡ଼ା ପଲ୍ଲୀ ଗାଁରେ ଭାଗବତ

ଘର ଏବଂ ମନ୍ଦିରମାନଙ୍କରେ ଧର୍ମଗ୍ରନ୍ଥର ପୋଥିଗୁଡ଼ିକ ସଂଗୃହୀତ ହୋଇ ରଖିବାର ବ୍ୟବସ୍ଥା ଥିଲା । ରାଜା, ଜମିଦାରମାନେ ମଧ୍ୟ ପୋଥି ସଂଗ୍ରହ କରି ଗ୍ରନ୍ଥାଗାର ସ୍ଥାପନ କରୁଥିଲେ ଏବଂ ପଣ୍ଡିତମାନଙ୍କ ଗହଣରେ ଶାସ୍ତ୍ର ଚର୍ଚ୍ଚା କରି ଆନନ୍ଦ ଲାଭ କରୁଥିଲେ । ତାଳପତ୍ର ପୋଥି ଲେଖିବାପାଇଁ ସେ କାଳରେ ଲୌହ ଲେଖନୀର ଆଶ୍ରୟ ଗ୍ରହଣ କରାଯାଉଥିଲା । ତାଳପତ୍ର ବ୍ୟତୀତ ଭୂର୍ଜପତ୍ରରେ ମଧ୍ୟ ଲେଖିବାର ପ୍ରଚଳନ ଥିଲା । ଲିଖନକାରଗଣ ବେଳେବେଳେ କାବ୍ୟ କବିତାର ବିଷୟବସ୍ତୁକୁ ଅତ୍ୟନ୍ତ ମନୋରମ ଚିତ୍ର ସାହାଯ୍ୟରେ ଲିପିବଦ୍ଧ କରି ଯାଇଥିବାର ପ୍ରମାଣ ମିଳୁଅଛି । ବେଳେବେଳେ ଏହି ଚିତ୍ରଗୁଡ଼ିକ ନାନା ରଙ୍ଗରେ ରଞ୍ଜିତ ହେବା ଦେଖା ଯାଉଥିଲା । ପ୍ରାଚୀନ ମନ୍ଦିର ଗାତ୍ରର ଶିଳ୍ପ ଐଶ୍ୱର୍ଯ୍ୟ ଅନୁଧ୍ୟାନ କଲେ ଏ ଦେଶରେ ଗ୍ରନ୍ଥାଗାର ସଂଲଗ୍ନ ପଣ୍ଡିତମାନଙ୍କର ଶାସ୍ତ୍ରଚର୍ଚ୍ଚାର ପରିଚୟ ମିଳିଥାଏ ।

## ପ୍ରାଚୀନ ଭାରତର ଗ୍ରନ୍ଥାଗାର

ଭାରତ ଏକ ସମୃଦ୍ଧ ତଥା ସଂସ୍କୃତିସମ୍ପନ୍ନ ଦେଶ । ପ୍ରାଚୀନ ଭାରତରେ ଅନେକ ବିଶ୍ୱବିଦ୍ୟାଳୟ ଭାରତ ବାହାରେ ଖ୍ୟାତି ଅର୍ଜନ କରିଥିଲେ । ଏସିଆ ଭୂଖଣ୍ଡର ବିଭିନ୍ନ ଦେଶରୁ ପଣ୍ଡିତ, ପରିବ୍ରାଜକ, ଗବେଷକ ଏବଂ ଧର୍ମାତ୍ମାମାନେ ଏହି ବିଶ୍ୱବିଦ୍ୟାଳୟଗୁଡ଼ିକରେ ଅଧ୍ୟୟନ କରିବାପାଇଁ ଧାଇଁ ଆସୁଥିଲେ । ନାଳନ୍ଦା, ତକ୍ଷଶୀଳା, ଉଜ୍ଜୟିନୀ, ବିକ୍ରମଶୀଳା, ବାରାଣସୀ ପ୍ରଭୃତି ବିଶ୍ୱବିଦ୍ୟାଳୟ ଗୁଡ଼ିକର କାହାଣୀ ବିଶ୍ୱବିଖ୍ୟାତ ବହୁ ପରିବ୍ରାଜକ ନିଜ ନିଜର ଭ୍ରମଣ କାହାଣୀରେ ଲିପିବଦ୍ଧ କରିଯାଇ ଅଛନ୍ତି । ଓଡ଼ିଶାରେ ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ଏକଦା ଭାରତ-ପ୍ରସିଦ୍ଧ ଥିଲା ଏବଂ ସୁଦୂର ଆଫଗାନିସ୍ଥାନରୁ ପଣ୍ଡିତମାନେ ଏହି ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବାପାଇଁ ଆଗମନ କରୁଥିଲେ । ଏହି ବିଶ୍ୱବିଦ୍ୟାଳୟଗୁଡ଼ିକ ନିଜ ନିଜର ବିଶାଳ ତଥା ଉତ୍କୃଷ୍ଟ ଗ୍ରନ୍ଥାଗାର ପାଇଁ ଭାରତରେ ଖ୍ୟାତି ଅର୍ଜନ କରିଥିଲେ । ପ୍ରାଚୀନ ଭାରତର ତପୋବନ ମଧ୍ୟରେ ଋଷିମାନଙ୍କର ଆଶ୍ରମଗୁଡ଼ିକ ଜ୍ଞାନଚର୍ଚ୍ଚାର ପୀଠ ଥିଲା ।

ଏଠାରେ ବହୁ ଶିଷ୍ୟ ପରିବେଷ୍ଟିତ ହୋଇ ମୁନିଋଷିଗଣ ଶାସ୍ତ୍ରାଲୋଚନା କରୁଥିଲେ ଏବଂ ବହୁ ମୂଲ୍ୟବାନ ପୋଥିର ସଂଗ୍ରହାଳୟ ଭାବରେ ଆଶ୍ରମଗୁଡ଼ିକ ଖ୍ୟାତି ଅର୍ଜନ କରିଥିଲା ।

## ମଧ୍ୟଯୁଗରେ ଭାରତୀୟ ଗ୍ରନ୍ଥାଗାର

ମୁସଲମାନ ରାଜତ୍ୱକାଳରେ ଭାରତର ଧର୍ମାନୁଷ୍ଠାନ ଗୁଡ଼ିକ ନାନାଭାବରେ ଅତ୍ୟାଗୃହିତ, ଲୁଣ୍ଠିତ ଏବଂ ଉତ୍ପୀଡ଼ିତ ହେବାଯୋଗୁ ବହୁ ମୂଲ୍ୟବାନ ଗ୍ରନ୍ଥାଗାର ଧ୍ୱଂସପ୍ରାପ୍ତ ହେବା ସ୍ୱାଭାବିକ । ମୋଗଲ ଓ ମୁସଲମାନମାନଙ୍କର ପ୍ରଥମ ଅଭିଯାନ କାଳରେ ବହୁ ମୂଲ୍ୟବାନ ଗ୍ରନ୍ଥାଗାର ଧ୍ୱଂସ ହୋଇଥିଲେହେଁ ମୁସଲମାନ ନରପତିଗଣ ଅତ୍ୟନ୍ତ କଳାପ୍ରାଣ ଏବଂ ବିଦ୍ୟାନୁରାଗୀ ଥିବାରୁ ସେମାନେ ଅନେକ ଗ୍ରନ୍ଥାଗାର ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ବହୁ ପଣ୍ଡିତଙ୍କୁ ମଧ୍ୟ ପୃଷ୍ଠପୋଷକତା କରୁଥିଲେ । ଦିଲ୍ଲୀର ମୁସଲମାନ ଏବଂ ମୋଗଲ ଶାସକଗଣ ବଡ଼ ବଡ଼ ଗ୍ରନ୍ଥାଗାର ସ୍ଥାପନ କରି ସେଠାରେ ଗ୍ରନ୍ଥାଗାରିକ ଭାବରେ ପଣ୍ଡିତମାନଙ୍କୁ ନିଯୁକ୍ତ କରୁଥିବା ଜଣାଯାଇଛି । ଦିଲ୍ଲୀର ସମ୍ରାଟମାନଙ୍କୁ ଅନୁସରଣ କରି ପ୍ରାଦେଶିକ ଶାସକଗଣ ମଧ୍ୟ ନିଜ ନିଜର ଗ୍ରନ୍ଥାଗାର ପ୍ରତିଷ୍ଠା କରିଥିବାର ପ୍ରମାଣ ରହିଅଛି । ବାବରଙ୍କ ପୁତ୍ର ହୁମାୟୁନଙ୍କର ଏକ ବିଶାଳ ଗ୍ରନ୍ଥାଗାର ଥିଲା । ନିଜର ଗ୍ରନ୍ଥାଗାରରେ ଅଧ୍ୟୟନ କାଳରେ ଦୁର୍ଘଟଣା ହେତୁ ପତିତ ହୋଇ ତାଙ୍କର ମୃତ୍ୟୁ ହୋଇଥିଲା । ରାଜା ଏବଂ ସମ୍ରାଟଗଣ ଗ୍ରନ୍ଥାଗାରର ସମୃଦ୍ଧି ପାଇଁ ସ୍ୱତନ୍ତ୍ର ଭାବରେ ଅର୍ଥ ମଞ୍ଜୁର କରୁଥିଲେ ଏବଂ ମନୋରମ ପ୍ରାସାଦ ମଧ୍ୟରେ ଗ୍ରନ୍ଥାଗାର ସ୍ଥାପିତ ହେବାର ବ୍ୟବସ୍ଥା ଥିଲା । ମୋଗଲ ରାଜବଂଶର ରାଜପୁରୁଷମାନଙ୍କ ପରି ଅନେକ ରାଜକୁମାରୀ ବିଦୁଷୀ ଏବଂ କଳାପ୍ରାଣା ଥିଲେ । ସେମାନେ ନିଜ ନିଜର ଗ୍ରନ୍ଥାଗାରରେ ଅଧ୍ୟୟନ ରତ ରହୁଥିଲେ । ଏହି ଗ୍ରନ୍ଥାଗାରଗୁଡ଼ିକର ସଂରକ୍ଷଣ ପାଇଁ ବୈଜ୍ଞାନିକ ଉପାୟରେ ଗ୍ରନ୍ଥାଗାରିକମାନେ ବ୍ୟବସ୍ଥା କରୁଥିଲେ । ମୋଗଲ ରାଜପୁରୁଷମାନଙ୍କର ବିଦ୍ୟାନୁରାଗ ଯୋଗୁ ବହୁ ମୂଲ୍ୟବାନ ସଂସ୍କୃତ ଗ୍ରନ୍ଥ ପାର୍ସିଭାଷାରେ ଅନୂଦିତ ହୋଇଥିଲା । ଏହି ଗ୍ରନ୍ଥାଗାରଗୁଡ଼ିକରେ ଗବେଷକ ଏବଂ ଐତିହାସିକଗଣ ସର୍ବଦା ସାଧନାରତ ରହୁଥିଲେ । ଇଂରେଜ ରାଜତ୍ୱକାଳରେ

ଭାରତର ଦେଶୀୟ ରାଜ୍ୟର କେତେକ ନରପତି ଆଧୁନିକ ଯୁଗଧର୍ମରେ ଅନୁପ୍ରାଣିତ ହୋଇ ଅତି ଉଚ୍ଚକୋଟୀର ଗ୍ରନ୍ଥାଗାର ପ୍ରତିଷ୍ଠା କରିଯାଇ ଅଛନ୍ତି । କେତେକ ରାଜାଙ୍କର ବ୍ୟକ୍ତିଗତ ଗ୍ରନ୍ଥାଗାର ବ୍ୟତୀତ ରାଜ୍ୟରେ ସାଧାରଣଙ୍କ ପାଇଁ ଗ୍ରନ୍ଥାଗାର ସ୍ଥାପନ ହେବା ଫଳରେ ସାଧାରଣ ଲୋକେ ଯଥେଷ୍ଟ ଉପକୃତ ହେଉଅଛନ୍ତି ।

ପ୍ରାଚୀନ କାଳରେ ସାଧାରଣ ଗ୍ରନ୍ଥାଗାର ନଥିଲା କହିଲେ ଚଳେ । ମାତ୍ର ଆଧୁନିକ ସମାଜର ବିକାଶ ପାଇଁ ସାଧାରଣ ଗ୍ରନ୍ଥାଗାର ଅତ୍ୟନ୍ତ ଅପରିହାର୍ଯ୍ୟ । ଗଣଧର୍ମୀ ଯୁଗରେ ସମୂହ ଚେତନାର ବିକାଶ ପାଇଁ ସର୍ବସାଧାରଣଙ୍କ ଉପଯୋଗୀ ଗ୍ରନ୍ଥାଗାର ଛଡ଼ା ଆଉ କଣ ଉପାୟ ଅଛି ?

## ପ୍ରାଚୀନ ସଭ୍ୟ ସମାଜରେ ଗ୍ରନ୍ଥାଗାରର ସ୍ଥାନ

ପୃଥିବୀର ପ୍ରାଚୀନତମ ସଭ୍ୟ ଦେଶମାନଙ୍କ ମଧ୍ୟରେ ଇଜିପ୍ଟ, ଆସିରିୟା, ଚୀନ, ଭାରତ ପ୍ରଭୃତି ଅଗ୍ରଗଣ୍ୟ । ଏହି ପ୍ରାଚୀନ ସଭ୍ୟ ଦେଶ-ଗୁଡ଼ିକରେ ଶିକ୍ଷା, ବାଣିଜ୍ୟ, ସ୍ଥାପତ୍ୟ, କଳା ଏବଂ ଆଧ୍ୟାତ୍ମିକ ଭାବନାର ବିକାଶ ମୂଳରେ ଗ୍ରନ୍ଥାଗାର ଆନ୍ଦୋଳନ ପ୍ରଧାନ ସ୍ଥାନ ଗ୍ରହଣ କରିଥିଲା । ଖ୍ରୀ:ପୂ: ୬୬୮ ସାଲରେ ଆସିରିୟାର ନରପତି Ashur-bani-pal ଏକ ଗ୍ରନ୍ଥାଗାର ସ୍ଥାପନ କରିଥିଲେ । ଏହି ଗ୍ରନ୍ଥାଗାରରେ ତାଳପତ୍ର ବା ଭୂର୍ଜପତ୍ରର ଲିଖିତଗ୍ରନ୍ଥ ଦେଖିବାକୁ ମିଳୁ ନ ଥିଲା । ମାଟିର ଫଳକରେ ଖୋଦିତ ଗ୍ରନ୍ଥ-ଗୁଡ଼ିକହିଁ ଏଠାରେ ସଂଗ୍ରହ କରି ରଖାଯାଇଥିଲା । ଧ୍ୱଂସ ସ୍ତୂପରୁ ଆବିଷ୍କୃତ ହୋଇ ଏହି ମାଟି-ଫଳକ-ପୁସ୍ତକର କେତେଗୋଟି ବ୍ରିଟେନର ବିଖ୍ୟାତ ମିଉଜିୟମ ଗ୍ରନ୍ଥାଗାରରେ ସଂରକ୍ଷିତ ହୋଇଅଛି । ଏହି ଫଳକଗୁଡ଼ିକରେ ନାନା ଐତିହାସିକ ଘଟଣାବଳୀ, ସାହିତ୍ୟ, ସଙ୍ଗୀତ, ଆଧ୍ୟାତ୍ମିକ ଚିନ୍ତା, ଜ୍ୟୋତିଷ ବିଦ୍ୟା ଇତ୍ୟାଦି ଲିପିବଦ୍ଧ ହୋଇଅଛି । ଆସିରିୟାର ରାଜପ୍ରାସାଦ ସହିତ ଗ୍ରନ୍ଥାଗାରଟି ସନ୍ନିବିଷ୍ଟ ରହିଥିଲା । ମାତ୍ର ମିଶରୀୟ ସଭ୍ୟତାରେ ଏହା ଥିଲା ଭିନ୍ନ ଧରଣର । ଇଜିପ୍ଟରେ ପ୍ରତ୍ୟେକ ଧର୍ମମନ୍ଦିର ସହିତ ଗ୍ରନ୍ଥାଗାର ରଖିବା ଏକ ବିଧି ଥିଲା । ଏଠାରେ ଆସିରିୟା ସମାଜ ପରି

ମାଟିର ଫଳକ-ପୁସ୍ତକ ସଂଗ୍ରହ ଦେଖିବାକୁ ମିଳେ ନାହିଁ । ଏହି କାଳକୁ 'ପେପିରସ' ଦେହରେ ଲେଖି ଲିପିବଦ୍ଧ କରିବାର ଚଳଣୀ ଆରମ୍ଭ ହୋଇ ଗଲାଣି । ଗ୍ରୀକ୍ ଏବଂ ରୋମୀୟ ସଭ୍ୟତାର କାଳରେ ମଧ୍ୟ ଗ୍ରନ୍ଥାଗାର ଥିବାର ପ୍ରମାଣ ମିଳେ । ଏ କାଳରେ ଆଲେକଜାଣ୍ଡ୍ରିଆ ସହରରେ ଏକ ପୃଥିବୀବିଖ୍ୟାତ ଗ୍ରନ୍ଥାଗାର ଥିଲା । ମାତ୍ର ଜୁଲିୟସ ସିଜରଙ୍କ ଆକ୍ରମଣ ଫଳରେ ଏହି ବିଖ୍ୟାତ ଗ୍ରନ୍ଥାଗାରର ବହୁ ଅଂଶ ଧ୍ୱଂସ ପ୍ରାପ୍ତ ହୋଇଥିଲା । ଏହି ଗ୍ରନ୍ଥାଗାରରେ କ୍ୟାଟଲଗ ବ୍ୟବସ୍ଥା ଜଣାଥିଲା । ରୋମ ସାଧାରଣତନ୍ତ୍ରରେ ଖ୍ରୀ: ପୂ: ୧୦୯-୫୬ ସାଲରେ ଲୁ କୁଲସ୍ ନାମରେ ଏକ ବିଶାଳ ଗ୍ରନ୍ଥାଗାର ଥିବାର ପ୍ରମାଣ ମିଳୁଅଛି । ରୋମ ସାମ୍ରାଜ୍ୟର ସମ୍ରାଟଗଣ ଗ୍ରନ୍ଥାଗାରର ଉନ୍ନତିରେ ମନୋନିବେଶ କରିଥିଲେ । ଗ୍ରନ୍ଥାଗାର ଗୁଡ଼ିକର ଉପଯୁକ୍ତ ରକ୍ଷଣାବେକ୍ଷଣ ପାଇଁ ମାନ୍ୟଗଣ୍ୟ ପଣ୍ଡିତ ଏବଂ ଯୋଗ୍ୟ ବ୍ୟକ୍ତିଗଣ ନିଯୁକ୍ତ ହେଉଥିଲେ ଏବଂ ଶାସକଗଣଙ୍କ ପୃଷ୍ଠପୋଷକତା ଯୋଗୁ ଗ୍ରନ୍ଥାଗାର-ଗୁଡ଼ିକ ବିଶାଳ ପ୍ରାସାଦ ମଧ୍ୟରେ ଅଥବା ମନ୍ଦିର ବେଢ଼ାରେ ସ୍ଥାନ ଲାଭ କରୁଥିଲେ । 'ପେପିରସ'ର ଲିଖିତ ବିଡ଼ା ଗୁଡ଼ିକ ସ୍ୱତନ୍ତ୍ର ଖାଡ଼ କରି ରଖାଯାଉଥିଲା । ଗ୍ରୀକ୍ ଏବଂ ଲାଟିନ ପୁସ୍ତକପାଇଁ ସ୍ୱତନ୍ତ୍ର ଘରର ବ୍ୟବସ୍ଥା ରହୁଥିଲା । ଖ୍ରୀଷ୍ଟିୟାନ ଧର୍ମ ପ୍ରଚାର ପରେ ଇଉରୋପରେ ଚର୍ଚ୍ଚ ସହିତ ଆଧ୍ୟାତ୍ମିକ ପୁସ୍ତକ ସଂରକ୍ଷଣ ପାଇଁ ଆଗ୍ରହ ପ୍ରକାଶ ପାଇଲା । ବହୁ ଧର୍ମଯାଜକ ନିଜ ନିଜର ବ୍ୟକ୍ତିଗତ ଗ୍ରନ୍ଥାଗାର ପ୍ରତିଷ୍ଠା କରିଥିଲେ । ତେବେ ମଧ୍ୟଯୁଗରେ ଧର୍ମ ଆନ୍ଦୋଳନ, ଯୁଦ୍ଧ ଏବଂ ସାମାଜିକ ଉତ୍ପୀଡ଼ନ ଯୋଗୁ ବହୁ ପ୍ରସିଦ୍ଧ ଗ୍ରନ୍ଥାଗାର ଧ୍ୱଂସପ୍ରାପ୍ତ ହୋଇ ଯାଇଥିଲା ।

## ଏଯୁଗର ଗ୍ରନ୍ଥାଗାର

ଛାପା ଯନ୍ତ୍ରର ଉଦ୍ଭାବନ ପରେ ପୁସ୍ତକ ମୁଦ୍ରଣ ହେବା ଯୋଗୁ ଏହାର ସୁଲଭ ସଂଗ୍ରହ ସମ୍ଭବ ହେଲା । ତେଣୁ ଆଧୁନିକ ପୃଥିବୀରେ ରାଷ୍ଟ୍ରପୃଷ୍ଠ-ପୋଷକତା ଅଥବା ସର୍ବସାଧାରଣଙ୍କ ସହଯୋଗ ଯୋଗୁ ଅନେକ ବିଖ୍ୟାତ ଗ୍ରନ୍ଥାଗାର ଦେଖିବାକୁ ମିଳେ । ପୃଥିବୀର ବିଖ୍ୟାତ ଗ୍ରନ୍ଥାଗାରମାନଙ୍କ ମଧ୍ୟରେ ଅକ୍ସଫୋର୍ଡର ବଡ଼୍ଲିଆନ ଲାଇବ୍ରେରୀ ବ୍ରିଟିଶ୍ ମିଉଜିୟମ ଲାଇବ୍ରେରୀ, ମସ୍କୋର ଲେନିନ୍ ଲାଇବ୍ରେରୀ, ଯୁକ୍ତରାଷ୍ଟ୍ର ଆମେରିକାର କଂଗ୍ରେସ ଲାଇବ୍ରେରୀ

ଅନ୍ୟତମ । ଏହାଛଡ଼ା ଇଉରୋପର ବହୁତ ଉନ୍ନତ ରାଜ୍ୟରେ ଜାତୀୟ ଗ୍ରନ୍ଥାଗାର ଏବଂ ଇଂଲଣ୍ଡ ଆମେରିକାର ବିଶ୍ୱବିଦ୍ୟାଳୟମାନଙ୍କରେ ବିଶାଳ ଗ୍ରନ୍ଥାଗାରମାନ ପ୍ରତିଷ୍ଠିତ ହୋଇଅଛି । ଏ ଗୁଡ଼ିକରେ ପୃଥିବୀର ବିଭିନ୍ନ ଭାଷାର ପୁସ୍ତକାବଳୀ ଆଧୁନିକ ବୈଜ୍ଞାନିକ ପ୍ରଣାଳୀରେ ସୁରକ୍ଷିତ ହୋଇ ରହିଅଛି । ଏହି ଗ୍ରନ୍ଥାଗାରଗୁଡ଼ିକରେ ପୁସ୍ତକର ସଂଖ୍ୟା କଳ୍ପନାତୀତ । ଏଠାରେ ବହୁ ଲକ୍ଷ ସଂଖ୍ୟାର ପୁସ୍ତକ ସଂଗୃହୀତ ହୋଇ ସର୍ବସାଧାରଣଙ୍କ ମହୋପକାର ସାଧନ କରୁଅଛି । ପୃଥିବୀର ଜ୍ଞାନଭଣ୍ଡାର ଉନ୍ମୁକ୍ତ ହୋଇ ପଡ଼ୁଛି । ବିଭିନ୍ନ ଦେଶର ଗବେଷକ, ପଣ୍ଡିତ ଏବଂ ଅଧ୍ୟାପକଗଣ ଏହି ଗ୍ରନ୍ଥାଗାର ଗୁଡ଼ିକରେ ବର୍ଷ ବର୍ଷ ଅଧ୍ୟୟନ କରି ଅନେକ ମୂଲ୍ୟବାନ ତଥ୍ୟ ପରିବେଷଣ କରିବା ସଙ୍ଗେ ସଙ୍ଗେ ଜଗତର ଜ୍ଞାନଭଣ୍ଡାରକୁ ସମୃଦ୍ଧ କରୁଅଛନ୍ତି । ଏହି ଗ୍ରନ୍ଥାଗାରମାନଙ୍କ ଯୋଗୁ ସେହି ଦେଶଗୁଡ଼ିକ ବିଶ୍ୱର ସାଂସ୍କୃତିକ କେନ୍ଦ୍ରସ୍ଥଳୀ ରୂପେ ପରିଚିତ ହୋଇଅଛନ୍ତି ।

## ବିକାଶ ପାଇଁ ଗ୍ରନ୍ଥାଗାର ଆନ୍ଦୋଳନ ଲୋଡ଼ା

ଏକଦା ଓଡ଼ିଶା ଶିକ୍ଷା ଓ ସଂସ୍କୃତିର ଲୀଳାକ୍ଷେତ୍ର ଥିଲେହେଁ ତାହା ଆଜି ଇତିହାସର କଥାବସ୍ତୁ ହୋଇଅଛି । ଆଧୁନିକ ଭାରତବର୍ଷରେ ଶିକ୍ଷା କ୍ଷେତ୍ରରେ ଓଡ଼ିଶା ସମସ୍ତଙ୍କଠାରୁ ପଛରେ ପଡ଼ିଅଛି । ସର୍ବସାଧାରଣ ଗ୍ରନ୍ଥାଗାର ଅଭାବରେ ପଠନେଚ୍ଛୁ ଶିକ୍ଷିତ ବ୍ୟକ୍ତିଙ୍କର ସଂଖ୍ୟା ମଧ୍ୟ ଏ ଦେଶରେ ନଗଣ୍ୟ କହିଲେ ଚଳେ । ଓଡ଼ିଶାର ସହର ତଥା ପଲ୍ଲୀ ଅଞ୍ଚଳରେ ଆଧୁନିକ ପାଠାଗାର ନାହିଁ ବୋଲି ସ୍ୱୀକାର କରିବାକୁ ହେବ । ସ୍ୱାଧୀନତା ପରେ ଦେଶର ସର୍ବାଞ୍ଚଳରେ ବହୁ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠିତ ହୋଇଥିଲେହେଁ ସେଠାରେ ଉପଯୁକ୍ତ ଗ୍ରନ୍ଥାଗାର ଦେଖିବାକୁ ମିଳେ ନାହିଁ । ଆଜି ସାରା ଦେଶରେ ଗ୍ରନ୍ଥାଗାର ଆନ୍ଦୋଳନ ଅବିଳମ୍ବେ ଆରମ୍ଭ ହେବା ଆବଶ୍ୟକ । ତାହା ହେଲେ ଏ ଦେଶରେ ଶିକ୍ଷା ଓ ସଂସ୍କୃତିର ଧାରା ଉଲ୍ଲସିତ ହୋଇ ଜାତୀୟ ଜୀବନକୁ ରସାଣିତ କରିବ ।

# ନୂତନ ଯୁଗର ଗାଲମାଧବ

ଇଂରେଜଙ୍କ ଆଗମନ ପୂର୍ବରୁ ପ୍ରାୟ ଅଢ଼େଇଶହ ବର୍ଷ କାଳ ଓଡ଼ିଆ ସମାଜ ଓ ସଂସ୍କୃତିର କଣ୍ଠରୋଧ ପାଇଁ ଏପରି ଶତ୍ରୁ ଆସି ଆକ୍ରମଣ ଲାଗି ରହିଥିଲା ଯେ, ସାମାନ୍ୟ କେତୋଟି ତୋପର ଆବାଜ ଶୁଣାଇ ବିନା ପ୍ରତିରୋଧ ଓ ପ୍ରତିବାଦରେ ଇଂରେଜମାନେ ବାରବାଟୀ ଦୁର୍ଗ ଦଖଲ କରିପାଇଥିଲେ । ଇଂରେଜଙ୍କ ସହିତ ସେମାନଙ୍କର ଶାସନ,ସାହିତ୍ୟ, ସଭ୍ୟତା ଏବଂ ସଂସ୍କୃତିର ସ୍ରୋତ ଅପ୍ରତିହତଭାବରେ ପ୍ରବାହିତ ହେଲେହେଁ ତହିଁରେ ଅବଗାହନ କରିବାର ଉନ୍ମାଦନା ଏ ଜାତି ହରାଇ ବସିଥିଲା । ଏହି ରୁଗ୍ଣ ଏବଂ ଜଡ଼ ଜାତୀୟ ଜୀବନକୁ ଜୀବନ୍ୟାସ ଦେବା ପାଇଁ ବୋଧହୁଏ ଭଗବାନ ଏଠାରେ ଗତ ଶତାବ୍ଦୀର ଐତିହାସିକ ନ'ଅଙ୍କ ଦୁର୍ଭିକ୍ଷର କରାଳ ବିଭୀଷିକା ସୃଷ୍ଟି କରିଥିଲେ । ନ'ଅଙ୍କ ମହାଯଜ୍ଞରେ ହୀନବୀର୍ଯ୍ୟ ଜାତୀୟ ଜୀବନର ଚିର ସଂହାର ହୋଇ ଏକ ନୂତନ ଚେତନାବୋଧ ଜାଗ୍ରତ ହେଲା । ଏହି ଜାତୀୟ ଜାଗରଣ ଶିକ୍ଷା, ସାହିତ୍ୟ, ଧର୍ମ, ସମାଜ ସଂସ୍କାର, ଶାସନ ପ୍ରଭୃତି ବିଭିନ୍ନ କ୍ଷେତ୍ରରେ ପ୍ରତିଫଳିତ ହେଲା ।

୧୮୭୨ ମସିହା ପରେ ଓଡ଼ିଶାରେ ବ୍ରାହ୍ମ ଧର୍ମ ପ୍ରଚାରିତ ହୋଇଥିଲା । ବଙ୍ଗ ଦେଶରେ ବ୍ରାହ୍ମ ଧର୍ମ ପ୍ରଚାର ଥିଲା, ରେନେସାଁ ଆନ୍ଦୋଳନର ଅନ୍ୟତମ ଉପଲକ୍ଷ ମାତ୍ର । ଓଡ଼ିଶାର ସଂସ୍କାରପ୍ରେମୀ ଯୁବକଗଣ ବ୍ରାହ୍ମ-ଧର୍ମର ଉଗ୍ର ଚେତନାବୋଧକୁ ସ୍ୱାଗତ ଜଣାଇଥିଲେ । ସତୀ ଦାହ, ବିଧବା ବିବାହ, ବାଲ୍ୟ ବିବାହ ପ୍ରଥା ପ୍ରଭୃତି ଜାତୀୟ ସମସ୍ୟାଗୁଡ଼ିକରେ ବ୍ରାହ୍ମ-ମାନଙ୍କର ଆନ୍ଦୋଳନ ଅଭୂତ ପରିବର୍ତ୍ତନ ଆନୟନ କରିଥିଲା । ଏହା ଥିଲା ଜାତୀୟ ଉନ୍ମାଦନାର ଅପୂର୍ବ ପ୍ରଭାତ । ଦେଶ ଓ ଜାତିପାଇଁ ଏ ଯୁଗର

ବ୍ୟାକୁଳତା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଭାବରେ ପ୍ରକାଶିତ ହୋଇଥିଲା । ୧୮୬୩ ଖ୍ରୀଷ୍ଟାବ୍ଦରେ ଉତ୍କଳ ବ୍ରାହ୍ମସମାଜର ସମ୍ପାଦକ ଶ୍ରୀ ଦୀନନାଥ ବନ୍ଦୋପାଧ୍ୟାୟ ଘୋଷଣା କରିଥିଲେ ଯେ, କେହି ବ୍ୟଭିଚାର ଦୋଷାଶ୍ରିତ ବ୍ୟକ୍ତି, କୌଣସି ଅଶ୍ଳୀଳଭାଷୀ, କୌଣସି ଉତ୍କୋଚଗ୍ରାହୀ କିମ୍ବା ମଦ ଗଞ୍ଜାଇ ଅଫିମସେବୀ ଅଥବା କୌଣସି ମିଥ୍ୟାନୁଷ୍ଠାନକାରୀ ବ୍ୟକ୍ତି ବ୍ରାହ୍ମସମାଜର ସଭ୍ୟ ହୋଇ-ପାରିବେ ନାହିଁ ।

ତତ୍କାଳୀନ ଓଡ଼ିଆ ସମାଜରେ ଅମା ଅନ୍ଧକାର ରାଜପଣ କରୁଥିଲା । ୧୮୫୦ ମସିହାବେଳକୁ ଇଂରେଜ ସରକାରଙ୍କ ଦପ୍ତରରେ କୌଣସି ଓଡ଼ିଆ ଦଶଟଙ୍କାରୁ ଅଧିକ ବେତନ ପାଇବାପାଇଁ ଯୋଗ୍ୟ ହୋଇ ନ ଥିଲେ । ଏ ଦେଶରେ ଯେଉଁ କେତେକ ଶିକ୍ଷାନୁଷ୍ଠାନ ଥିଲା, ସେଠାରେ କଲକତା ଆଗତ ଅମଲାମାନଙ୍କ ପିଲାମାନେ ହିଁ ପାଠ ପଢ଼ୁଥିଲେ । ୧୮୬୦ ଖ୍ରୀଷ୍ଟାବ୍ଦରେ ପୁରୀ ଜିଲା ସ୍କୁଲରେ ପଣ୍ଡିତ ସଦାଶିବ ମିଶ୍ର ଶିକ୍ଷକତା କରୁଥିଲେ । ବ୍ରାହ୍ମଣ ହୋଇ ଇଂରେଜୀ ପଢ଼ୁଆ ସ୍କୁଲରେ ଶିକ୍ଷକତା କରୁଥିବା ଯୋଗୁ ତାଙ୍କୁ ସମାଜଚ୍ୟୁତ ହେବାକୁ ପଡ଼ିଥିଲା । ବ୍ରାହ୍ମଣେ ଭାବୁଥିଲେ ଯେ, ଇଂରେଜୀ ପାଠ ପଢ଼ିଲେ ସମାଜ ଧ୍ୱଂସ ହୋଇଯିବ । ଲୋକେ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ହେଲେ ସେମାନଙ୍କର ପ୍ରଭାବ କମିଯିବ, ପୂର୍ବପରି ଆୟ ମଧ୍ୟ ହେବ ନାହିଁ ।

ଜାତୀୟ ଜୀବନରେ ତାହା ଥିଲା ଏକ ଚରମ ସାଂସ୍କୃତିକ ସଙ୍କଟର ସମୟ । ଇଂରେଜ ଶିକ୍ଷା ଓ ସଭ୍ୟତା ପ୍ରତି ବିମୁଖତା ଯେପରି ଏକ ସମସ୍ୟା ହୋଇ ଠିଆ ହୋଇଥିଲା । ସେହିପରି ମୁଷ୍ଟିମେୟ ଇଂରେଜୀ ଶିକ୍ଷିତଙ୍କର ବିଜାତୀୟ ମନୋଭାବ ତଥା ମାତୃହୀନ ପ୍ରତିକ୍ରିୟାଶୀଳ କାର୍ଯ୍ୟ ଅତ୍ୟନ୍ତ ଆତଙ୍କର କାରଣ ହୋଇଥିଲା । ପାଶ୍ଚାତ୍ୟ ଧନବାଦୀ ସଭ୍ୟତାର ନୂତନ ମୂଲ୍ୟବୋଧ ଏ ଦେଶର ସରଳ ମାତୃମୟ ଜୀବନାଦର୍ଶ ଉପରେ ଦାରୁଣ କୁଠାରାଘାତ କରିଥିଲା । ସେଦିନ ଜଣେ ତରୁଣ କବିର ପ୍ରାଣରେ ଭିକାରୀର ଦହଗଞ୍ଜ ଜୀବନ ଅତ୍ୟନ୍ତ କରୁଣଭାବରେ ସ୍ପର୍ଶ କରିଥିଲା, ଏହିପରି—

"ଦୁଃଖୀପାଇଁ ହିନେ କାହାରି ଜଗତେ
ନ କାନ୍ଦେ ଅନ୍ତର ତଳେ
ଯାହାର ଯେତିକ ଧନ ମାନ ଶିରୀ
ପୂଜା ତାର ଏ ମହୀରେ"

ଭବିଷ୍ୟତରେ ତାଙ୍କର ଲେଖନୀରେ ଆତ୍ମପ୍ରକାଶ କରିଥିଲା 'କଙ୍କାଳର ଆର୍ତ୍ତନାଦ' । ଏ ଆର୍ତ୍ତନାଦର ବାଣୀ ସେଦିନ ଯୁବକ ଗୋଦାବରୀଶ ପ୍ରଥମେ ଶୁଣିଥିଲେ ବଙ୍ଗଳାର ବିପ୍ଳବୀ ଶଶୀଭୂଷଣ ରାୟ ଚୌଧୁରୀ ଓରଫ ଶଶୀଦାଙ୍କ ସମ୍ପର୍କରେ ଆସିବା ଫଳରେ । ୧୯୧୨ ଖ୍ରୀଷ୍ଟାବ୍ଦରେ ଏମ. ଏ. ପାଶ କରି ଗୋପବନ୍ଧୁଙ୍କ ପ୍ରେରଣାରେ ସତ୍ୟବାଦୀ ଗୋଷ୍ଠୀର ମଣିଷ ତିଆରି କାରଖାନାରେ କର୍ମୀ ଭାବରେ ଯୋଗଦେଲାପରେ ଗୋଦାବରୀଶଙ୍କ ବ୍ୟକ୍ତିତ୍ୱରେ ଅଦ୍ଭୁତ ପରିବର୍ତ୍ତନ ହୋଇଥିଲା । ବ୍ରାହ୍ମଣ ପରିବାରରେ ଜନ୍ମ ହୋଇଥିଲେହେଁ ପାରମ୍ପରିକ ସଂସ୍କାର ଅଥବା ଜାତିଗତ ମତାନ୍ଧତା ତାଙ୍କୁ ବାନ୍ଧିପାରି ନଥିଲା । ସେତେବେଳକୁ ୧୯୧୧ ମସିହାରେ ପଣ୍ଡିତ ନୀଳକଣ୍ଠଙ୍କ 'ମୋ ଜାତି' ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା । ପ୍ରାଚୀନପନ୍ଥୀ ସମାଜର ବଡ଼ପଣ୍ଡାମାନଙ୍କ ସମକ୍ଷରେ ଏହି ତରୁଣ ସତ୍ୟବାଦୀ ଗୋଷ୍ଠୀ ହୋଇଥିଲେ କଳାପାହାଡ଼ । ସେ ଦିନ ନାୟିକବି କୁନ୍ତଳାକୁମାରୀ ଉତ୍ତର ଆଶାବାଦର ସମ୍ମୋହନ ବାଣୀ ଶୁଣାଇ ଗାଇଥିଲେ—

'ଅନଙ୍ଗ ଯଯାତି ଆସିବେ ତ ଫେରି
ବାଜିବ ଓଡ଼ିଆ ଜୟ ତୁରୀ ଭେରୀ
ଜାଗିଅଛୁ ଆଜ ତରୁଣ କେଶରୀ
ନୀଳାଚଳ ପୁଣ୍ୟ ରଳେ
ବନ୍ଦନାଗୀତି ଗାଉଅଛୁ ଜଳ ତରଙ୍ଗ
ସାଗର କୂଳେ ।'

କିମ୍ବଦନ୍ତୀର ନୀଳମାଧବଙ୍କୁ ସେ ଦିନ କବି ପ୍ରାଣସ୍ପର୍ଶୀ ଭାଷାରେ ଅଭିନନ୍ଦନ ଜଣାଇଥିଲେ । କାରଣ ନୀଳମାଧବ ଜଣେ ଅସାଧାରଣ ଯୁଗ-ସ୍ରଷ୍ଟା ଥିଲେ । ତାଙ୍କ ପୂର୍ବରୁ ଅଧଃପତିତ ସମାଜରେ ଜନସାଧାରଣ ସ୍ତ୍ରୀ ଏବଂ ଧନ ଲୋଭରେ ହିତାହିତଜ୍ଞାନଶୂନ୍ୟ ହେଲେ । ନୀତିଭ୍ରଷ୍ଟ ହେବା ଯୋଗୁଁ ଦେବତାଙ୍କୁ ଚିହ୍ନିଲେ ନାହିଁ । ତେଣୁ ଏ ପାପପୂର୍ଣ୍ଣ ସମାଜରେ ମୁହଁ ନ ଦେଖାଇବା ପାଇଁ ଦେବତା ପାତାଳରେ ଆତ୍ମଗୋପନ କଲେ । ବିରାଟ ବଡ଼ ଦେଉଳ ବାଲୁକା ଗର୍ଭରେ ପୋତି ହୋଇପଡ଼ିଲା । ନୀଳମାଧବ ମନ୍ଦିର ସଂସ୍କାର ପାଇଁ ମନ ବଳାଇବାରୁ ଦେବତା କହିଲେ—

'ସ୍ତିରି ମୁହିଁ ଏଡ଼ ଜନେ ଯେବେ ପୁଣି
ଯଶେ ବଳାଇବେ ମନ
ସେତେବେଳେ ମୋରେ
ଉଠାଇଲେ ନୃପ
ଭୂଇଁରୁ ଉଠିବ ଜାଣ ।'

ଗାଲମାଧବ ଏହି ମହାନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବିସ୍ମୃତ ବାଲୁକା ଗର୍ଭରୁ ଶ୍ରୀମନ୍ଦିରର ଉନ୍ମୋଚନ କଲେ ।

ବଧିର ବିଧାନ ବଡ଼ ବିଚିତ୍ର । ସୁଦର୍ଶନ, ଉଚ୍ଚଶିକ୍ଷିତ ଯୁବକ ଗୋଦାବରୀଶ କୃଷିବିଦ୍ୟାରେ ଉଚ୍ଚ ଶିକ୍ଷା ଲଭିବାପାଇଁ ବିଲାତ ଯିବାକୁ ପ୍ରବର୍ତ୍ତିତ ହୋଇଥିଲେ । ଓକିଲ କିମ୍ବା ଡେପୁଟି ଭାବରେ ତାଙ୍କର ଜୀବନର ଗତି ନିର୍ଦ୍ଦିଷ୍ଟ ହୋଇଯାଇ ଥାଆନ୍ତା । ମାତ୍ର ଜଣକର ଆହ୍ୱାନରେ ଏସବୁ ପଛରେ ପଡ଼ିରହିଲା । ହୁଏତ ଏହି ମନ୍ତ୍ରରେ ଉଦ୍‌ବୁଦ୍ଧ ହେବାରେ ବିପ୍ଳବୀ ଶଚୀନ୍ଦ୍ର କିମ୍ବା ଲୋକସେବକ ଗୋପବନ୍ଧୁଙ୍କର ପ୍ରେରଣା ରହିଥିଲା । କିନ୍ତୁ ଦରିଦ୍ର କବିର ପ୍ରାଣରେ ସେଦିନ ଯେପରି ଜନ୍ମଭୂମି ଅମିୟ ସୁଧା ଢାଳି ଦେଇଥିଲା—

"ଜନମଭୂମି ଯେ ମାଟି ପଥରର
ଜନମୀକ ବଳି ବଡ଼
ସେ ଜନମଭୂମି ସେବା ଯେ କରଇ
ନରଜନ୍ମ ଧନ୍ୟ ତାର ।
× × ×
ଅଛୁ ସେହି ଭୂଇଁ କେଜାଣି କପାଇଁ
ହୃଦୟେ ନାହିଁ ସେ ଟାଣ
ଜନନୀ ଦଇନେ କପରି ସନ୍ତାନେ
ରହିଛନ୍ତି ଧରି ପ୍ରାଣ ।"

ଏ ଦେଶର ସ୍ମରଣୀୟ ଗୋଦାବରୀଶ ଆଧୁନିକ ସାହିତ୍ୟରେ ବହୁ ଚାଞ୍ଚଲ୍ୟକର ରଚନା କରି ଦେଶପ୍ରୀତିର ଯେଉଁ ଅପୂର୍ବ ଉଚ୍ଛ୍ୱାସ ପ୍ରଦର୍ଶନ

କରିଛନ୍ତି, ତାର ତୁଳନା ନାହିଁ । 'ଅଭିରାମ ସିଂହ' କବିତାରେ ଦେଶପାଇଁ ଆତ୍ମବଳୀ ଦେବାର ଆଦର୍ଶ ପ୍ରତିପାଦିତ ହୋଇଅଛି । କୋଟି କୋଟି ଲୋକ ଅଧ୍ୟୁଷିତ ଏହି ବିରାଟ ଦେଶରେ ମୁଷ୍ଟିମେୟ ଗୋରା ବିଦେଶୀଲୋକ ଶାସନ କରିବା ଅତ୍ୟନ୍ତ ପରିତାପର ବିଷୟ । ଏହି ହୀନମାନ୍ୟ ଜାତି ଉଦ୍ଦେଶ୍ୟରେ କବିଙ୍କର ଚେତାବନୀ ହେଉଛି—

"ଆମ ଘର ଏଇ ଓଡ଼ିଶା ରାଇଜେ
ଫିରିଙ୍ଗ ତହିଁରେ ରାଜା
ଗୋରା ଦଶଜଣେ ରାଇଜ ଚାଲେ ଲୋ
କୋଟିଏ ହେବେ ପରଜା ।"

ସେହିପରି ଅର୍ଜୁନ ସିଂହ, ଦୁଃଖିଧନ, ବିକ୍ରମ ସିଂହ, ଗାଲମାଧବ ପ୍ରଭୃତି ଗାଥାକବିତା ଗୁଡ଼ିକରେ ଜାତୀୟ ଜୀବନର ଗୌରବ ଗାଥା ବର୍ଣ୍ଣିତ ହୋଇଅଛି । ଏଗୁଡ଼ିକ କେବଳ ଅତୀତ ଇତିହାସର ଚର୍ବିତ ଚର୍ବଣ ଉପାଦାନ ନୁହେଁ, ସତେ ଯେପରି କବି ଏହି କାହାଣୀର ମର୍ମବାଣୀ ମାଧ୍ୟମରେ ଜାତିର ଆତ୍ମବିଶ୍ୱାସ ପାଇଁ ଜିଜ୍ଞାସା କରିଅଛନ୍ତି ।

ଆର୍ଯ୍ୟ ଆଦର୍ଶର ଅନୁରୋଧରେ ସତ୍ୟବାଦୀ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଗଭୀର ଦେଶପ୍ରୀତି, ମାନବପ୍ରେମ, ସମାଜସଂସ୍କାର ଏବଂ ସ୍ୱାଧୀନ ଜୀବନ ଗଠନ ଥିଲା ଏହି ଆନ୍ଦୋଳନର ପ୍ରଧାନ ଆଭିମୁଖ୍ୟ । ମଧ୍ୟଯୁଗୀୟ ସାମନ୍ତବାଦୀ ସମାଜର ବନ୍ଧନୀ ମଧ୍ୟରେ ସେ ଯୁଗରେ ଯେଉଁ କେତେଜଣ ଜାତୀୟ ବୀର ସମଗ୍ର ଦେଶକୁ ନିଜର ପରିବାର ପରି ମନେ କରିଥିଲେ, ନିଜ ସ୍ୱାର୍ଥ ଭୁଲି ଜନକଲ୍ୟାଣର ମହାନ ବ୍ରତ ଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରେ ଗୋଦାବରୀଶ ଥିଲେ ପରମ ଯୋଦ୍ଧା । ଶିକ୍ଷା ଜରିଆରେ ଜୀବନର ଚରମ ବିକାଶ କରିବାକୁ ହେବ, ଏହି ମହାନ ସତ୍ୟ ଗୋଦାବରୀଶ ଅନୁଭବ କରିଥିଲେ । ସ୍ୱାଧୀନତା ପରେ ପ୍ରାୟ ଦୁଇଟି ଯୁଗ ଅତୀତ ହେବାକୁ ବସିଲାଣି, ମାତ୍ର ସ୍ୱାଧୀନତାର ଯେଉଁ ପରିବର୍ତ୍ତନ ଆସିଲା, ହୁଏତ ତାହା ବହୁ ପରିମାଣରେ ଆତ୍ମିକ ନ ହୋଇ ବାହାରର ହୋଇଗଲା । ସମାଜର ଏବଂ ଜୀବନର ବହିଃରଙ୍ଗ ବଦଳି ଯାଇଛି ଖୁବ୍ ଦ୍ରୁତଗତିରେ, କିନ୍ତୁ ମନର

ପରିବର୍ତ୍ତନ ପାଇଁ ଯେଉଁ ଆନ୍ତରିକ ଅନୁପ୍ରେରଣା, ତାହାର ଅଭାବ ଆଜି ଅନୁଭୂତ ହେଉଛି । ଆଇନ ଜରିଆରେ ଆମେ ଛୁଆଁ ଅଛୁଆଁ ଭାବ ଉଠାଇ ଦେଇଛୁ ସତ ; ମାତ୍ର ସ୍ୱାର୍ଥର ଅଧୀନ ହୋଇ ଆମେ ଅନ୍ୟଠାରୁ ଅଛୁଆଁ ହୋଇ ରହିଯାଇଛୁ । ଦେଶସେବା ରୂପକ ପରମ ପବିତ୍ର ସାଧନାରେ ଅତ୍ୟନ୍ତ ହୀନ ସ୍ୱାର୍ଥରେ ଲିପ୍ତ ହୋଇପଡ଼ୁଛୁ । ଆଦର୍ଶର ପଞ୍ଝଆରି କରି ସମାଜବାଦୀ ଦେଶ ଗଢ଼ିବାପାଇଁ ଉଦ୍ୟମ ପିଟିଲୁ ସିନା, ସାଆନ୍ତିଆ ମନୋଭାବ ଛାଡ଼ିପାରିଲୁ ନାହିଁ । ଏହିପରି ବଖାଣି ବସିଲେ କେତେ ବ୍ୟତିକ୍ରମ ଆଖିରେ ନାଚିଉଠିବ । ଏହି ଅବସରରେ ହେ ଗୋଲମାଧବ ଗୋଦାବରୀଶ, ଦେଶ ତୁମଙ୍କୁ ଆଦରରେ ସ୍ମରଣ କରୁଅଛି ।